# ଶଶିରେଖା






ବାଙ୍କୀ ନରେଶ

ପଦ୍ମନାଭ ଶ୍ରୀଚନ୍ଦନ

# ଶଶିରେଖା

ପ୍ରାଚୀ ସମିତି ପକ୍ଷରୁ

ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏ. ଙ୍କ ଦ୍ୱାରା

ମୁଖବନ୍ଧ ଓ ରେଖାଦୀପିକା ଟୀକାସହ

ସମ୍ପାଦିତ

ପ୍ରକାଶକ

ପ୍ରାଚୀ ସମିତି

କଟକ

୧୯୩୩

ମୂଲ୍ୟ ପାଞ୍ଚସିକା ମାତ୍ର

# ମୁଖବନ୍ଧ

---

ପ୍ରାଚୀ ସମିତିର ମାନନୀୟ ପ୍ରତିଷ୍ଠାତା ରାୟସାହେବ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପୁଣ୍ୟପ୍ରେରଣାରେ ପ୍ରାଚୀନ ଉତ୍କଳସାହିତ୍ୟର ରୁଦ୍ଧ ଦ୍ୱାର ଉଦ୍‌ଘାଟନ କରି ଆମ୍ଭେମାନେ ଯେଉଁ ସବୁ ସମୁଜ୍ଜ୍ୱଳ କାବ୍ୟରତ୍ନ ଆବିଷ୍କାର କରିବାକୁ ସକ୍ଷମ ହୋଇଅଛୁଁ, କହିବା ବାହୁଲ୍ୟ, ଏହି ଶଶିରେଖା କାବ୍ୟ ତନ୍ମଧ୍ୟରେ ଅନ୍ୟତମ । ପ୍ରାଚୀ ସମିତି ଅବସ୍ଥାପିତ ହୋଇ କାର୍ଯ୍ୟାରମ୍ଭ କଲାପୂର୍ବେ ଓଡ଼ିଶା ଲୋକଙ୍କର ଓଡ଼ିଆ ସାହିତ୍ୟର ଅତୀତ ବିଷୟରେ ଧାରଣା ଆଦୌ ବିଷଦ ଥିଲା ନାହିଁ । ବିଦଗ୍ଧଚିନ୍ତାମଣି, ବୈଦେହୀଶବିଳାସ, ରସକଲ୍ଲୋଳ ପ୍ରଭୃତି କେତେକ ସୁବିଦିତ କାବ୍ୟ ଓ ଅଭିମନ୍ୟୁ, ଉପେନ୍ଦ୍ର ଭଞ୍ଜ ଓ ଦୀନକୃଷ୍ଣ ପ୍ରଭୃତି କେତେକ ପ୍ରଖ୍ୟାତଯଶା କବିଙ୍କ ନାମ ଛଡ଼ା ଉଚ୍ଚଶିକ୍ଷିତ ଓଡ଼ିଆ ଲୋକେ ସୁଦ୍ଧା ଅନ୍ୟ କୌଣସି ପ୍ରାଚୀନ କାବ୍ୟ ବା ପ୍ରାଚୀନ କବିଙ୍କ ନାମ ଜାଣି ନ ଥିଲେ । ଯେଉଁମାନେ ପ୍ରାଚୀ ସମିତି କାର୍ଯ୍ୟର ଖୋଜ ଖବର ନ ରଖନ୍ତି ସେମାନଙ୍କର ମଧ୍ୟ ଆଜି ସେହି ଦଶା । ପ୍ରାଚୀ ସମିତିର ପ୍ରତ୍ୟେକ ନୂଆ ଆବିଷ୍କାରଦ୍ୱାରା ପ୍ରାଚୀନ ସାହିତ୍ୟ ସମ୍ବନ୍ଧେ ପୋଷିତ ଦେଶବାସୀଙ୍କ ଧାରଣାର ପରିଧି କ୍ରମଶ ପରିବର୍ଦ୍ଧିତ ହେଉଅଛି ଏବଂ ଏହି ଶଶିରେଖା କାବ୍ୟ ଯାହା କି ଭଞ୍ଜବୀରଙ୍କ ଲାବଣ୍ୟବତୀ କାବ୍ୟ ସହ ତୁଳିତ ହେବାର ଯୋଗ୍ୟ, ଆଜିଯାଏଁ ବିସ୍ମୃତିର ସ୍ତବ୍ଧ ଅନ୍ଧକାର ମଧ୍ୟରେ ରହି ଅଛି ଯେ ଲୋକଲୋଚନ ଗୋଚରକୁ ଆସିଲା ଏତଦ୍ୱାରା ମଧ୍ୟ

**ଉପକ୍ରମ**

ଖଣ୍ଡିତ ଧାରଣାପରିଧି ଯେ ସମ୍ୟକ୍ ପ୍ରବର୍ଦ୍ଧିତ ହେବ କହିବା ବାହୁଲ୍ୟ ମାତ୍ର ।

**କାବ୍ୟର କବି ଓ ତାଙ୍କ ସମୟ**

ଅମ୍ଭମାନଙ୍କ ମହାପ୍ରସୂ ଜନ୍ମଭୂମି ଏହି କଳିଙ୍ଗ ଭୂଖଣ୍ଡର ଅଶେଷ ଗୌରବମୟ ଅତୀତର ଅନ୍ୟତମ ବିଶେଷତ୍ୱ ଏହି ଯେ, ଏ ଦେଶର ନରପତିମାନେ ବାଣୀ ଆରାଧନାର କେବଳ ପୃଷ୍ଠପୋଷକତା କରି ସନ୍ତୁଷ୍ଟ ନଥିଲେ । ରାଜଦଣ୍ଡ, ବିଜୟକଙ୍କଣ ଓ ଲେଖନୀ ଏ ତିନନେଁ ବକ୍ଷସ୍ଥଳରେ ରାଜ-କର ମଣ୍ଡନ କରିଥିବାର ପ୍ରମାଣ ମିଳିଅଛି । ଦିଗ୍‌ବିଜୟୀ କପିଳେନ୍ଦ୍ରଦେବ, ପୁରୁଷୋତ୍ତମଦେବ ଓ ପ୍ରତାପରୁଦ୍ରଦେବଙ୍କ କବିତାମୟୀ କୃତିମାନ ଅମ୍ଭମାନଙ୍କର ହସ୍ତଗତ ହୋଇ କେତେକ ପ୍ରାଚୀ ପତ୍ରିକାରେ ପ୍ରକାଶିତ ହେଲାଣି ଓ ଅନାନ୍ୟତକ ପ୍ରକାଶ ପାଇଁ ରକ୍ଷିତ ରହିଅଛି । ଗଜପତିମାନଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ତାଙ୍କର ସାମନ୍ତ ରାଜାମାନେ ବାଣୀ-ଆରାଧନାରେ ପ୍ରାଣ ଢାଳି ଦେଇଥିବାର ଭୂରି ଭୂରି ପ୍ରମାଣ ମିଳୁଅଛି । ଅମ୍ଭେମାନେ ମୟୂରଭଞ୍ଜ, ଦଶପଲ୍ଲା, ନୟାଗଡ଼, ସୁରଙ୍ଗୀ ପ୍ରଭୃତି ବିଖ୍ୟାତ ରାଜବଂଶର ପୂର୍ବପୁରୁଷଙ୍କ କାବ୍ୟ କବିତା ଦେଖିବାକୁ ପାଇଅଛୁଁ । ଆମ୍ଭମାନଙ୍କର ଆଶା ଅମ୍ଭମାନଙ୍କ ଅନ୍ୱେଷଣ କାର୍ଯ୍ୟର ପରିସର ବଢ଼ିବା ସଙ୍ଗେ ସଙ୍ଗେ ଅପରାପର ରାଜବଂଶର ପୁରାତନ ଅକ୍ଷର କୀର୍ତ୍ତିମାନ ମଧ୍ୟ ଆବିଷ୍କୃତ ହେବ ଓ ଏହି କଳିଙ୍ଗ ଭୂଖଣ୍ଡ ଦିନେ ଯେ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟଙ୍କର ଲୀଳାର ମହୋଦୋଳା ଥିଲା ତାହା ନିଃସନ୍ଦେହରୂପେ ପ୍ରମାଣିତ ହେବ । କାଳର କୁଟିଳଗତି ପ୍ରଭାବରେ ଓଡ଼ିଶାର ବହୁ ରାଜବଂଶ ଲୁପ୍ତ ହୋଇ ଯାଇଅଛି । ଅନୁଗୁଳ, ବାଙ୍କୀ, ବାଣପୁର ଏଠାରେ ସବୁ ଦିନେ ଦୋର୍ଦ୍ଦଣ୍ଡ ପ୍ରତାପ ରାଜାମାନେ ଥିଲେ । ସେମାନେ ଆଜି ଆଉ ନାହାନ୍ତି ।

ଖଞ୍ଜଧାମର ଭଙ୍ଗାଦୁର୍ଗ ଓ ରାଜବଂଶର ଓଡ଼ିଶାରେ ଇତସ୍ତତଃ ହୋଇ ପଡ଼ିଥିବା କାବ୍ୟକବିତା ମାତ୍ର ସେମାନଙ୍କ ଭୂତ ଅସ୍ତିତ୍ୱର ମୂକସାକ୍ଷୀରୂପେ ବିଦ୍ୟମାନ ରହିଅଛି । ବାଣପୁରରାଜ ରଘୁନାଥ ହରିଚନ୍ଦନ, ଅଦ୍ୟାପି ଅପ୍ରକାଶିତ 'ଲୀଳାବତୀ' ନାମକ ସୁମନୋହର କାବ୍ୟର କବି । ତାଙ୍କର ରଚିତ ଶକୁନ୍ତଳା-ବିଳାସ ପ୍ରଭୃତି କାବ୍ୟ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ । ତାଙ୍କ ରାଜସଭାର କବି ଓ ତାଙ୍କ କାବ୍ୟଗୁରୁ ବିଷ୍ଣୁଦାସଙ୍କ ଆସନ ପ୍ରାଚୀନମାନଙ୍କ ମଧ୍ୟରେ ଅତି ଉଚ୍ଚ । କହିବା ବାହୁଲ୍ୟ ଉପେନ୍ଦ୍ରଭଞ୍ଜ ଏହି ରାଜବଂଶରେ ବିବାହ କରିଥିଲେ ଓ ଲାବଣ୍ୟବତୀ କାବ୍ୟର ଆଦର୍ଶ ଲୀଳାବତୀରୁ ଗ୍ରହଣ କରିଥିଲେ । ଅନୁଗୁଳ ରାଜବଂଶର ସୋମନାଥ ଭୂପଙ୍କ ଗୀତାବଳି ପ୍ରାଚୀନ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ରାମ-ଲୀଳାମୃତ ନାମକ ପ୍ରକାଣ୍ଡ ଗ୍ରନ୍ଥ ଏହି ବଂଶୀୟ ଜଣେ ରାଜକବିଙ୍କ କୃତ ଏବଂ ତାହା ଏବେ ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ବାଙ୍କୀ ଖାସ ହେବା ଅଦୂର ଅତୀତର କଥା । ବାଙ୍କୀ ରାଜବଂଶର ବଂଶଧରମାନେ ଏବେ ମଧ୍ୟ ହୃତଗୌରବ ହୋଇ ବାଙ୍କୀରେ ଅଛନ୍ତି । ଏହି ଶଶିରେଖା କାବ୍ୟ ବାଙ୍କୀର ପୂର୍ବତନ ରାଜା ପଦ୍ମନାଭ ଶ୍ରୀଚନ୍ଦନଙ୍କ କୃତ । ଆମ୍ଭେମାନେ ତାଙ୍କ ସମ୍ବନ୍ଧରେ ତାଙ୍କର ବଂଶଧରଙ୍କୁ କେତେକ ପ୍ରଶ୍ନ ପଚାରି କୌଣସି ଉତ୍ତର ନ ପାଇଥିବାରୁ ତାଙ୍କର ଜୀବତକାଳ ସମ୍ବନ୍ଧେ ପ୍ରମାଣାଦି ତାଙ୍କ କାବ୍ୟ ମଧ୍ୟରୁ ଗ୍ରହଣ କରିବାକୁ ବାଧ୍ୟ ହୋଇଅଛୁଁ । ପୁରାତନ କାବ୍ୟ ଅନୁଶୀଳନ କରୁଥିବା ଯେ କେହି ଲୋକ ଶଶିରେଖା କାବ୍ୟ ପଢି କହିବ ଯେ ଏହା ଲାବଣ୍ୟବତୀ ପରେ ଓ ଲାବଣ୍ୟବତୀକୁ ଅନୁକରଣ କରି ଲେଖା ହୋଇଅଛି । ଭଞ୍ଜପ୍ରତିଭାର ସର୍ବବିଧ ରୀତି ଲାବଣ୍ୟବତୀରେ ପୁଞ୍ଜୀଭୂତ ହୋଇଥିବାରୁ ଲୋକସାଧାରଣରେ ତାହା ପ୍ରାୟଶଃ ଦୁର୍ବୋଧ ହୋଇଥାଏ । କବି ପଦ୍ମନାଭ ବୋଧହୁଏ ଖଣ୍ଡିଏ ସରଳତର କାବ୍ୟ

ଲେଖି ଲୋକସାଧାରଣଙ୍କ ପ୍ରୟୋଜନ ମେଣ୍ଟାଇବାକୁ ଚେଷ୍ଟିତ ହୋଇ ଏହି ଶଶିରେଖା କାବ୍ୟ ଲେଖିବାକୁ ପ୍ରୟାସୀ ହୋଇଥିଲେ । ରସାଳ ରସ ପରି ଅନାୟାସଭୋଗ୍ୟ ଏ କାବ୍ୟର ମୃଦୁମାଧୁରୀ ଯେ ଉପଭୋଗ କରିବ, ସେ ନିଶ୍ଚୟ ସ୍ୱୀକାର କରିବ ଯେ କବି ପଦ୍ମନାଭଙ୍କ ସାଧୁ ପ୍ରୟାସ ବାସ୍ତବିକ ଚରିତାର୍ଥ ହୋଇଅଛି ।

'ତେଜ ତନୁସ୍ୱ ଗୃହିଁଲ୍ନ ନିଶାନାଶେ ପାଶେ ନାହିଁ ଦିବ୍ୟ ତରୁଣ' ଲାବଣ୍ୟବତୀର ଏ ଛାନ୍ଦ ସହିତ ଶଶିରେଖାର 'ତେଜ ସଜନୀ ରଜନୀ ବିନାଶ ରହି' ଏହି ଛାନ୍ଦର ତୁଳନାତ୍ମକ ପାଠରୁ ଆମ୍ଭ ଉକ୍ତିର ସାରବତ୍ତା ପ୍ରମାଣିତ ହେବ ।

ଏ ସବୁରୁ ସ୍ପଷ୍ଟ ବୁଝାଯାଏ, ଯେ ରାଜକବି ପଦ୍ମନାଭ ନିଶ୍ଚୟ ୧୮ଶ ଶତାବ୍ଦୀର ଲୋକ ଓ ଭଞ୍ଜବୀରଙ୍କ ପଦାଙ୍କାନୁସାରୀ ଓ ପରବର୍ତ୍ତୀ କବି ।

ଯେଉଁସବୁ ରସର ମଧୁର ସମାବେଶରେ କାବ୍ୟର କଳେବର ଗଠିତ ହୁଏ ଶଶିରେଖା କାବ୍ୟରେ ସେ ସବୁ ସଫଳରୂପେ ବିଦ୍ୟମାନ ।

**କାବ୍ୟୋତ୍କର୍ଷ**

ବୀର କହ, ବୀଭତ୍ସ କହ, ଶୃଙ୍ଗାର କହ, କୌଣସି ରସ ଏ କାବ୍ୟରେ ତାର ପ୍ରାପ୍ୟ ସ୍ଥାନରୁ ବଞ୍ଚିତ ହୋଇ ନାହିଁ । ପୁନଶ୍ଚ ପଦଲାଳିତ୍ୟ ଓ ନାନାବିଧ କାବ୍ୟୋପଯୋଗୀ ଅଳଙ୍କାରର ନିଯୋଜନରେ କବି ଶଶିରେଖାକୁ ସୁନ୍ଦରରୂପେ ମଣ୍ଡନ କରି ଉଚ୍ଛଳୀଯୁଙ୍କ ଉପଭୋଗ ନିମନ୍ତେ ଗୋଟିଏ ମଧୁମୟ ରସଚକ୍ର ରଚି ଯାଇଅଛନ୍ତି । ଭାଷା ଉପରେ ତାଙ୍କର ଅଧିକାର ଅସାଧାରଣ । ପୁରାତନ କାବ୍ୟସମ୍ପଦର ଅନନୁଶୀଳନ ଯୋଗୁଁ ଆଜି ଯେଉଁମାନେ ଭାବପ୍ରକାଶ ପାଇଁ ବଙ୍ଗଳାର ଦ୍ୱାରସ୍ଥ ହେଉଅଛନ୍ତି, ସେମାନେ କେବଳ ଏହି ଶଶିରେଖା କାବ୍ୟ

ଖଣ୍ଡି ପଢ଼ି ଅଉ୍ ଯଦ ଲକ୍ଷ ନ ପଢନ୍ତି ତେବେ ସେମାନଙ୍କ ଭାଷା-ଦୈନ୍ୟ ନଷ୍ଟପ୍ରାୟ ଅଠପଣ ଦଶପଣ ସରଳ ଦୂର ହୋଇଯିବ; ଏଥିରେ ଅତ୍ୟୁକ୍ତି ଅତିରଞ୍ଜନ ନାହିଁ । ଯେଉଁ ଦେଶ ସ୍ୱାଧୀନ ସେ କୌଣସି କଥାରେ ପରାଧୀନ ହେବାକୁ ଚାହେଁ ନାହିଁ । ଶଶିରେଖା ଯେଉଁକାଳରେ ଲିଖିତ ହୋଇଥିଲା ସେକାଳରେ ବଙ୍ଗଳାର ଚିତ୍ତମୁଗ୍ଧ ପଦ୍ୟଭାଷା ଗୋଟାଏ ଥିଲା କି ? ଶଶିରେଖା ତୁଲ୍ୟ କାବ୍ୟ ବଙ୍ଗାଳୀ କିଏ କେବେ ଲେଖି ଅଛୁ କି ? ତେବେ ଓଡ଼ିଆ ଆଜ ଯେ ଭାଷା ପାଇଁ ବଙ୍ଗଳାର ଦ୍ୱାରସ୍ଥ ତାର କାରଣ ଓଡ଼ିଆ ପରାଧୀନ—ଏକା ଇଂରାଜୀଙ୍କର ନୁହେ ବଙ୍ଗାଳୀଙ୍କର ମଧ୍ୟ । ଅତୀତର ଅନୁଶୀଳନ ବିନା ଓଡ଼ିଆର ଦାସ-ମନୋ-ଭାବ ଦୂର ହେବା ଅସମ୍ଭବ । ଅମ୍ଭେ ନିମ୍ନରେ ଶଶିରେଖାରୁ କେତେକ ଉତ୍କୃଷ୍ଟାଂଶ ଉଦ୍ଧୃତ କରିଦେଇ ସାହିତ୍ୟକ୍ଷେତ୍ରରେ ଦାସତ୍ୱାବାପନ୍ନ ଓଡିଆଙ୍କୁ ପଚାରୁଅଛୁଁ, ଯେଉଁ ଦେଶରେ ଏପରି ମନୋହାରିଣୀ କବିତା-ଲତା ପୁଷ୍ପିତା ହୋଇ ସୁଷମା ଓ ସୁଗନ୍ଧରେ ଦିଗ୍ ବିଦିଗ ମୋହିତ କରେ, ସେ ଦେଶ ଲୋକେ ଯଦ ବଙ୍ଗୀୟ ସାହିତ୍ୟ ତୁଲ୍ୟ ଅର୍ବାଚୀନ ସାହିତ୍ୟକୁ ଅଣ୍ଡପୃକାର ନିଜର ଭବିଷ୍ୟତ୍ ଗଢିବାକୁ ଯାନ୍ତି, ତେବେ ଦାସ ମନୋଭାବ ଓ ପରମୁଖାପେକ୍ଷିତାର ଉଦାହରଣ ନିମନ୍ତେ ଆଉ ଦୂରକୁ ଯିବାକୁ ହେବ କାହିଁକି ? କହିବା ବାହୁଲ୍ୟ, ଶଶିରେଖାର ନିମ୍ନୋଦ୍ଧୃତ ଅଂଶସବୁ ଯେ କୌଣସି ସଭ୍ୟ ଦେଶର ଉଚ୍ଚ ସାହିତ୍ୟ ପକ୍ଷେ ଗର୍ବର କାରଣ ହୋଇପାରେ ।

## ନାରୀରୂପ

---

ପାବକଭୀ ଗମନ ପଥକୁ ଅନୁସରଣ କରି
ଭଲଇ ଚଞ୍ଚଳା ଅଚଲା ଭଳେ ଖେଳିଲା ପରି ।

## ଚାଟୁ

କରେ କର ଧରି କହଇ ପୁଣି ବନସ୍ପୃବାଣୀ
ଫୁରୁଣାହୃଦୟା କରୁଣାକର ନବ ତରୁଣି !
ଚରଣରେ ମୋର ଶରଣ ଗଲ୍ଲ କାମ ଦସ୍ୟୁରେ
ନିରାଶ ନ କରି ହରଷ ଚନ୍ଦ୍ରେ ଗୃହି ସହୁରେ ।
ଦେଖିଲ୍ଲ ମାତ୍ରକେ ଲକ୍ଷିଲ୍ଲ ହୃଦେ ତୋ ନେହଭର
ପ୍ରତିବାର ରୁଦ୍ଧ—ପ୍ରଶ୍ନକା ହେଲା ନ କରି ଡର ।
ଚଞ୍ଚଳନୟନ ! ଅଞ୍ଚଳ ପରି ହୁଅ ହୃଦରେ
ତ୍ମନ ବଲମ୍ବ ନ କରି ଦଅ କହୁଛୁ ଥରେ ।

ଦ୍ୱିତୀୟ ଛାନ୍ଦ ପୃ ୧୩

## ନଗର ବର୍ଣ୍ଣନ

ଶୁଣ ହେ ସୁଜନେ ପୂର୍ବଦେଶରେ ପଦ୍ମାକର ନାମେ ନଗର
ଅଚଳା-ଅବଲା-ବଦନମଣ୍ଡଳ ପରାୟେ ଅତି ମନୋହର
ସକଳ, ଲୋକ ନେତ୍ର-ଭୃଙ୍ଗ-ସାରସ
ବିଶ୍ୱକର୍ମା-କର-ଶିଳ୍ପ-କୁଶଳତା ପ୍ରତିବିମ୍ବିତ ଆଦରଶ

ତୃତୀୟଛାନ୍ଦ ପୃ ୧୪

## କୀର୍ତ୍ତି ବର୍ଣ୍ଣନ

ଅସ୍ମଦାନ୍ତ୍ର ଅବନୀମଣ୍ଡଳେ ସେ ଅଟନ୍ତି ଏକ ଚକ୍ରବର୍ତ୍ତୀ
ରସା-ଭୃତ-ଥଣ୍ଡା ପୂର୍ଣ୍ଣିବୋଉ ସୁବଳସ୍ପେ ମିଳଲ୍ଲ ଯହଁ କୀର୍ତ୍ତି

ତହିଁରେ । ସ୍ନାନ ଯେଣୁ ତାଙ୍କୁ ନୋହିଲା
ଏ ଯେନ ଯଶସ୍ୱିରୁ ଅଂଶମାନ ନାନାରୂପେ ଖ୍ୟାତ ହୋଇଲା ।
ଚନ୍ଦ୍ର ହୋଇ ସାନ୍ଦ୍ରତମ ନାଡି କେତେ ଆକାଶମଣ୍ଡଳ ମଣ୍ଡିଲା
ସ୍ୱର୍ଣ୍ଣଦୀ ଛଳେ ସକଳ ଲୋକ ପାପ ମହୀରେ ପ୍ରସର ଖଣ୍ଡିଲା
ଥୋକାଏ । କଇଲାସ ନାମେ ପ୍ରକାଶ
ବିଶେଷ ଶେଷ ଭାଗ ଶେଷ ରୂପରେ ପାତାଳରେ କଲା ନିବାସ ।

ତୃତୀୟ ଛାନ୍ଦ ପୃ ୮

## ନାୟକ ଶୈଶବ ଶୋଭା ବର୍ଣ୍ଣନା

---

ମହୀରେ ଅଦ୍ଭୁତ ଏ ଶୋଭା ଗଢି । ପୂର୍ଣ୍ଣଚନ୍ଦ୍ର ହୋଇ ପ୍ରକାଶେ ଅସି
ଦେଖ ଏ ମୁଖ ପୂର୍ଣ୍ଣ ହରିଣାଙ୍କ । ତହିଁ କଳଙ୍କ ଏହୁ ଅକଳଙ୍କ
ଅନ୍ତର ଥୋକାଏ । ଗ୍ରୀଷ୍ମ ଦିବସ ମଳିନତା ନୋହେ ।
ଅଧର ଅରୁଣ ହୋଇଛୁ ଆଭା । ନିଶି ଦିବସେ ସମାନ ତା ଶୋଭା
କର କୋକନଦ ଏହୁ ପ୍ରକାରେ । ସମତା ପ୍ରଫୁଲ୍ଲ ଅଛୁ ଅହରେ
ତା କେଶ ଶୃଙ୍ଖଳା । ହିଂସ୍ରକେଶ୍ୱ ଭୃଙ୍ଗ ସମ କେ କହ ।

ଚତୁର୍ଥ ଛାନ୍ଦ ପୃ ୧୮

## ନାୟିକା ରୂପ ବର୍ଣ୍ଣନ

---

ଯାହାକୁ ନୟନେ ଦେଖି ନ ରହିବ ମାନବର ଦାନବର
ତାହାକୁ ମହୀରେ ସମାନ ଅଛୁ କେ ବର ବର-ବରନାର ।
ସୁନ୍ଦରୀଗଣ ଗଣନାରେ ନ ଥିବ ପୁରନ୍ଦରପୁରେ ଜଣେ
ଶୋଭା-ଆଗମ୍ୟା ରମ୍ଭା ଯା ପାଦ ଲକ୍ଷ୍ୟ ରଚଇ ରଚକେ ଜଣେ ।
ଯହିଁରେ କୃଶ ସୁନ୍ଦର ତହିଁ କାହିଁ ଅପୂର୍ବର ଅବକାଶ
ମନ ଅମତ ଭାବକୁ ଭଜେ ଯହିଁ ଭୂତଳ ଶୋଭା ବିଶେଷ !

ହରଷ ରୂପ ସେ ବଳଷ ଚନ୍ଦ୍ର ପରଶ କଳ୍ପନ ଅସି
ଲଳିତ କେଶ ତା ଦଳ ତ ଦେଖନ୍ତ ଦଳନ୍ତ ଅଞ୍ଜନଗଣି ।
ଅଳକା ଅନ୍ଧକାରେ ଦେଖି ନ ଥିବା ଛଳେ କେ କରିବ ଲକ୍ଷ୍ୟ
ମାନସେ ଅଭାସେ କିନ୍ନର ଯୁବତୀ କିନ୍ନର ଗନ୍ଧର୍ବ ଯକ୍ଷ ।
ଭୁରୁକୁ ହୁରୁ କୁସୁମଧନୁ କହି ଯାହା ଏନ୍ତୁ ଅବିବେକ
ପ୍ରକଟ-କଣ୍ଟକ-ଶୋଭି ଲୋଚନୀର ଲପନ-ବଧୂ-କଳଙ୍କ ।
ବଦନ ମଦନ-କର-ଅଦରଣ ଆଦରଣ ହସେ ନୋହେ
ପ୍ରଭାବ ତାହାର ସ୍ୱଭାବ ନୁହଇ ଉପାଧିର୍ ଜ୍ୟୋତି ବହେ ।

ଇତ୍ୟାଦି ଇତ୍ୟାଦି, ପଞ୍ଚମ ଛନ୍ଦ ପୃ ୩୪

## ଯୌବନ ପ୍ରବେଶ ନାୟିକା ବର୍ଣ୍ଣନା

ଏହିରୂପେ ଗଲା କେତେ ବରଷ — ଅବିବେକ-ନରେଶ ଗଲା ନାଶ ।
ବିବେକ-ନରପତି ତନୁ ଦେଶ, ପାଇକରି କଲା ତହିଁ ନିବାସ ।
ଏହି ସମୟେ ଅଙ୍ଗେ ଅନ୍ୟୋନ୍ୟରେ । ଲୁଣ୍ଠିକଲେ କେ କେତେ ପରକାରେ ।
ରୋମରାଜି-ବଙ୍କ ନେଲା ନୟନ । କଟୀ-ପୃଥୁଲ ନେଲେ ବେଣୀସ୍ତନ ।
ଏବଦ୍ଭୂତ ସମୟେ ଶୁଣି ବାଣୀ । ମନସିଜ-ରାଜନ ଏହା ଜାଣି
ତନୁଭୂମି ଆସି ମାଡ଼ି ବସିଲା । ତହିଁ ରାଜ୍ୟାଭିଷେକ ବେଗେ ହେଲା;
ବନ୍ଦୀ କରି ବିବେକକୁ ରଖିଲା । ଏଣୁ ଅବିବେକ ଅପସରିଲା ।

ଇତ୍ୟାଦି ଇତ୍ୟାଦି ସପ୍ତମ ଛନ୍ଦ ପୃ ୪୪

## ନାୟିକାବେଶ ବର୍ଣ୍ଣନା

କଣ୍ଠ ସରସିରୁହ ନାଡ଼ ଦର । ଉପମା ଦେବାକୁ ମଣୁଛି ଦର ।
ସେ ଦେବାଳୟେ ସମ ହେବାପାଇଁ । ପ୍ରାତ ସନ୍ଧ୍ୟାରେ ନିରତେ ସେବଇ ଯେ

ଏ ସେବେ ଅପ ଅତପେ ଯେ
ଏ ଘେନ ଏହା ତୁଳନା ନ କଲାଇ
ଏ ତ ଅଟଇ ସଙ୍କ୍ଷେପେ ଯେ ।

× × ×

ତାରତର ମୋତିହାର ଯା ଦେଲେ । ଏମନ୍ତ ଦୃଷ୍ଟି ପ୍ରକଟନ୍ତ ଭଲେ
କମ୍ବୁରେ ଗଙ୍ଗାଜଳକୁ ପୂରେଇ । କୁଚ ଶମ୍ଭୁରେ ଢ଼ାଳୁଛନ୍ତି କି ନେଇ ଯେ
ବକ୍ଷର ଲଘବା ଅଗ୍ରେ ଯେ
ଅଭେଦ କଟାକ୍ଷ ଶଶୀହାସୀ
ଅଛି ହରଷ ମାନସେ ଯେ ।
ତନକ ମୃଣାଳ ଚମ୍ପକଦାମ । ସୁବାହୁକୁ ତାର ନୁହନ୍ତି ସମ ।
ଏ ଉପମାମେ ଅଟଇ ଦୂଷଣ । ଭ୍ରମର-ଦ୍ରୋହୀ ତାହା ଅବଗୁଣ ।
ଏହୁ ସକାଶେ ତାହାଙ୍କୁ ଯେ
ବରଣ ନ କର ହରିଣନୟନା
ବଳନ ବେନ ବାହାକୁ ଯେ ।
ଅଗ୍ର ତାହାର କୋକନଦ ତୁଲ । ଚମ୍ପକ-କଳରେ ଭୂଷିତ ହୋଇ ।
କୁସୁମେ କୁସୁମ ଉପୁଜୁ ନାହିଁ । ଏଣୁ ଏହା ଅଦଭୁତ ମଣଇଁ ଯେ
ଏହା ତ ଦେଖିଲା କାହିଁ ଯେ
ସକଳ ଶୋଭା ସୁନ୍ଦର ସାର ଗୁଣ
ଅଙ୍ଗେ କଲେ ଏହା ଦେହୁ ଯେ ।

## ନାୟିକା ଶୋଭା ଦର୍ଶନେ ନାୟକ

ଉଚିତ ଉତ୍ତର କରେ ଏସମ ନାୟକ ନାଗରେ
ନାହିଁ କ ଥିବ ମହୀରେ ଏହାଙ୍କୁ ବଳି

ତ ଏ ହୋଇ ମୂର୍ତ୍ତିବନ୍ତ ମୋହିବାକୁ ଯୁବା-ଚିତ୍ତ
ଅବନୀ ଅଗତ ତ କାଞ୍ଚନ ଶରୀର
ରଚି ରଚିକରେ ଅସମ
ଯେବେ ତ ଏହାଙ୍କୁ ହର ଜିଣିନ୍ନ ବାମ ?
ତୁମ୍ଭେ ବନ୍ଧୁ ତପ କର ମନାଇ ହର ଗଉରୀ
ଜାଗର ନିଶିରେ କର ଛନ କାଳରେ
ସେ ସୁକୃତଗଣି ଅସି ଅବନୀ-ତଳକୁ ଖସି
ମୂର୍ତ୍ତିବନ୍ତ ମୋହ ପାଇଁ ହେଲା ମହୀରେ
ଅନ ଏହା ବହନେ ନାହିଁ
ନୋହିଲେ ତ ଏହାଙ୍କୁ ମୁଁ ପାରନ୍ତି ଚାହିଁ ।

ଦଶମ ଛାନ୍ଦ ପୃ ୭୨—୭୩

## ସ୍ୱପ୍ନେ ମିଳନ

ମନେ ମନ ଜଡ଼ିଗଲା ରସେ ଜ୍ଞାନ ବୁଡ଼ିଗଲା
ଲଜ୍ଜା-ଘନ ଉଡ଼ିଗଲା ସ୍ନେହ-ବାତରେ
ଅନୁରାଗ ବଢ଼ିଗଲା ସଖୀ-ସଙ୍ଗ ଛାଡ଼ିଗଲା
ଚାହିଁ କାମ ପଶିଗଲା ଦୃଷ୍ଟିପାତରେ
ଭ୍ରୂ-ଭୂର କାମ-କମାଣ
ଯୋଖି ବଜାଇ ପୁଂସକୁ ନୟନ-ବାଣ ।

ଦଶମ ଛାନ୍ଦ ପୃ ୭୬

## ସ୍ୱପ୍ନଭଙ୍ଗେ ନାୟକୋଦ୍ଦେଶ୍ୟେ ନାୟିକା ବିଳାପ

ପୂର୍ବ-ଗଗନରେ ଘନ ପ୍ରାୟେ ଯୋଡ଼ିଲ
ମୋ ଚିତ୍ତ-ଚାତକୀ-ଆଶା ବଢ଼ାଇ ଦେଲ

ନ ବରଞ୍ଚ ବନ୍ଧୁ ମୋରେ ବାମ ହୋଇଲା
ନଦ୍ୟାବର୍ତ୍ତ-ବାତ ତାହା ଲୁଭାଇ ନେଲା ।
ଅନ୍ତର-କଳସ ପକାଇଣ ଶିରକୁ
ଚୂର୍ଣ୍ଣ କଲା ଗଲ ମୁଁ କହିବ କାହାକୁ ।
ଶୋଷ୍ମା-ସଂଶ୍ଳାପବନେ ମୋ ନେହ-ପିଉଳା
ଉଡ଼ାଇ ନେଲା ଯା ଏହୁ ମଙ୍ଗଳ ବେଳା ।
ସରସ ସନର୍ଭ ବାଣୀ-ପୀୟୂଷକର
ଉଦୟ ଜାଣି ମୋ ବେନ ଶ୍ରୁତି-ଚକୋର
ସୁଧାପାନ ପାଇଁ ଆଶା କରଣ ଥିଲେ
ଅନ୍ତର ଜାଣି ଅସାଧ୍ୟ ହୋଇ ରହିଲେ
ସତେ କ ସେ ସୁଧା ବାରେ କରିବେ ପାନ
ଏଣୁ ଏହାଙ୍କର ଉଡ଼ୁଅଛି ଜୀବନ ।

ଏକାଦଶ ଛାନ୍ଦ ପୃ ୭୯

## ସ୍ୱପ୍ନଭଙ୍ଗେ ନାୟକ ବିଳାପ

ସଭୟ ଉତ୍ତରେ ଶୁଣିଲୁ ଯାହା
ଅଭୟ ଦେଲୁ ମୋତେ ବିଶ୍ୱାସ-ଦେହା ରେ
ଭରସା କଲ ସେହି ପ୍ରତିଆଶାରେ
ସୁରସାମଣି ତାହା ହରାଇଲୁଁ ତରେ ରେ ।
ଗୁମର-କେଶି ! ତତେ ଦେଖି ନୟନେ
ଅମର-ପଦ ଅଧ ମଣିଲି ମନେ ରେ
ଭ୍ରମର ମାଳତୀର ବଶ ଯେମନ୍ତ
ଯମର ପଢ଼ ହେଲ ରଜନୀ ହତ ରେ ।

ରହିଲୁ ଧନ ! ଯାହା ହୋଇ ଅନ୍ତର
ଦହିଲୁ କାମଶରେ ମୋହ ଅନ୍ତର ରେ ।
ବହିଲୁ ହୃଦେ ଏତେ ନୈରାଶ କେହି
ସହିଲୁ ପ୍ରୀତି-ଭଙ୍ଗ ଚନ୍ଦ୍ରମାମୁହିଁ ରେ !
ଜାଗର କପିଳାସେ କର ମୁଁ ଥିଲି
ନାଗରମୋହି ! ଏଣୁ ତୋତେ ଛୁଇଁଲି ରେ
ସାଗର ପର ଥିଲା ପ୍ରତ୍ୟାଶା ମୋର
ଆଜ ରହିଲୁ ଛଡ଼ି ରମଣୀବର ରେ ।

ତ୍ରୟୋଦଶ ଛନ୍ଦ ପୃ ୯୩

## ନାୟକ ଚିଟାଉ

---

ଭୃଙ୍ଗ-ଉରଜା ରେ ! ଭୃଙ୍ଗ କି ବଞ୍ଚିବ କୁସୁମ-ରସ ବିହୀନେ
ଜଳକୁ ଛଡ଼ିଣ କୂଳକୁ ଅଇଲେ ମୀନ କି ରହେ ଜୀବନେ ?
ରସବତି ! ସେହିମତି ନ ବଞ୍ଚିବି ତୋ ସଙ୍ଗ ହୋଇଲେ ଦୂର
ବୀଣା ବଚନା ରେ ! କ୍ଷୀଣା କଲୁ ମୋତେ ଅନୁରାଗେ ଦେଇ ହାର ।

× ×

ନବୀନ ବୟସି ! ମତ୍ତପିକଭାଷି ! ତୁ ମୋର ଲଲାଟ-ଛଟା
କୁରଙ୍ଗନୟନା ! ମୁଁ ତୋର ଅଟଇ ସୁରଙ୍ଗ ପାଦେ ଅଲତା ।
ଭ୍ରମର-ସୁକେଶି ! ତାମରସବାସି ! ତୁ ମୋର ଅଟୁ ଦୋସଡ଼ା
ତୋ ଚିତ୍ତେ କି ଅଛୁ ଉଚିତ କହୁଛି ମୁଁ ତୋର ପାହାଡ଼ାପଡ଼ା ।
କି ଯେବେ ମନରେ ଜୀବନ-ଧନ ରେ ! ଦେହ ତୁ, ମୁଁ ତୋର ଛାଇ
ପିନ୍ଧିଲା ବସନ ପରାଏ ମୋ ମନ କ୍ଷଣେ ଅନ୍ତର ନୁହଇ ।

କ୍ରମେ ଲୀନ ହନନ୍ତ ଶୋଭା ହୋଇବାରୁ କମ ପ୍ରଚ୍ଛଦପଟେ ବ୍ୟାପିଲା
ଗଚ୍ଛନେ ଚଢ଼ଳ ଉଦ୍ଧତ ହୋଇ ନ ଅଞ୍ଚନେ ଅଗ ଲକ୍ଷ୍ୟ ଦେଲା
ନେଷଗୁ, ବନ୍ଧୁହଁ ନୋହିଲା ବୋଇଲ
ଥାଉଁ ପାଶେ ନ ଝଡ଼ିଲା କୁମୁଦ, ନ ଯାଉ କ୍ରମିଲେ ଭ୍ରମର ।

ଷୋଡ଼ଶ ଛାନ୍ଦ ପୃ ୧୧୮–୧୧୯

## ସୈନ୍ୟବର୍ଣ୍ଣନ

---

ଜଗଦାଳ ଗଣ ସଗଦାମରେ । ଚିଲରେ କ୍ଷୋପର ସାଗ ବେଷରେ
ଅନେଣ ଛନେଣ ଶାଙ୍ଗିକ ବଢ଼ । ଲମ୍ଫିଣ କମରେ ଦକ୍ଷିଣେ ଦଢ଼
କନରେ ଧନ୍ ଧର । ଥଟରେ ଧାମନ୍ତି ଗୁଣ ଘୋଷ କର ।
ନଳ ଧର କେତେ ଜଳ ପଦାନ୍ତି । ଛଳ ଅଗକୁ ପଛକୁ ଅସନ୍ତି
ଫଟକାରଏ ଧରିଣ ଫଳକ । ସର ଧୂପନ୍ତି ହୋଇଣ ଉସ୍ତୁକ
ଦକ୍ଷ କରେ ଅଦି । ପଥରେ ଗମନ୍ତେ ନ ଥଟରେ ଖପି ।
କେ ଭାଲ ଧର ଅଗକୁ ବାହାର । କେ ଢାଲ ତଲୁଆର କରେ ଧର
କେ ମଲ୍ଲ ତହିଁ ଡେଇଁଣ ଧପଟେ । କେ ବଳୀ ଶାବଳୀ ଧରି ରଡ଼ଟେ
ଏ ବିଧିରେ ସଜ । ଭୁଣ୍ଡ ହୋଇଲେ ସମସ୍ତ ଫଉଜ ।

୧୭ଶ ଛାନ୍ଦ ପୃ ୨୬୩

## ଶୀକାର ବର୍ଣ୍ଣନ

---

ହୁରକାରେ କେହୁ ଘୋର ବା ଭୁଣ୍ଡ । ମୋଡ଼ି ପକାଇଲା କେ କାହା ମୁଣ୍ଡ
ଧରି କେ କାହାକୁ କଣ୍ଠୁଡ଼ି ବଳେ । ଫନ୍ଦ ଠୋଏଟେ ବନାଇଲେ ହେଲେ
ହଉ ଥଦ୍ଧ ଜୀବ । ବଶ୍ୟ ସନ୍ଧୁରେ ବନ୍ଦୀ କଲେ ସର୍ବ ।

ଭୋଡ଼ଙ୍ଗ ଶବଦେ ଘୋଡ଼ଙ୍ଗ ଝାସି । ଖଡ଼ଗରେ କେନ୍ଦୁ ଖଡ଼ଗ ନାଶି
ଚଲକୁ ଧରି କେ ପଲକୁ ଖେଦ । ପିଶିଲ ସହରେ ଭୂଷିଲ ବାନ୍ଧ
କେ ବଡ଼ାଇ କରି । ଗୋଡ଼ାଇ ଜୀବଙ୍କ କରରେ ଧରି ।

୧୭ଶ ଛନ୍ଦ ପୃ ୮୭

## ଅନ୍ତର୍ଲିପି

ଗଣ୍ଡି ପ୍ରତି ଅଶ୍ରୁ କରି ଝରନ୍ତେ । ଅମ୍ଭ ନୟନ-ଯୁଗଳ୍କ ନ ରହନ୍ତେ
ରଙ୍କିଣୀ-ନେତ୍ରୀ ସୁଖୀ ନୋହେ ନିମିଷେ । ଜୀବ ରହଲ ଭ୍ରମ ପ୍ରତିଅଶେଷେ
କରିଗଡ଼ ଜାଣ ହେଲ ଭ୍ରମର । ଭାବି ଯେନ କହୁଛ ସ୍ୱାମୀବର ।

ଊନବିଂଶ ଛାନ୍ଦ ପୃ ୧୩୭

## ଗାଟ୍

ଚଞ୍ଚଳନେତ୍ରି ! ତୋ ବିନୁ          ଘଞ୍ଚାଳ କରେ ଅତନୁ
ଅଞ୍ଚଳ ଘୋଡ଼ାଇ ବାରେ ରଣ
ଚତୁରି ! ନବନାଗରି !          ଚତୁରେ ଚ ଚ ବର୍ଣ୍ଣରି
ତଳକୁ କରିଛୁ ଷଣ୍ମୁଖ ରେ
ପ୍ରାଣେଶ୍ୱରି !
ଚରଣ-ସେବକ ତୋର ମୁହିଁ
ଶ୍ୟାମର-ଭୃଜ୍ଞଲା ଦାସକୁ ନ ଦହ ରେ ।

୨୧ଶ ଛାନ୍ଦ ପୃ ୧୭୧

## ଅଭଙ୍ଗ ପ୍ରେମ ବର୍ଣ୍ଣନ

ଦୂରହେଁ ମୁଁ ଥିଲେହେଁ ପାଶରେ ଥିଲ ପରି ।
ଯେନଥିବ ପ୍ରାଣନାଥ ବାସର ଶର୍ବରୀ ।

ଯହିଁ ତହିଁ ଫୁଟିଲେହେଁ ମାଳତୀ କୁସୁମ ।
ଅବଶ୍ୟ ହୁଅଇ ସେହୁ ଭୃଙ୍ଗ-ମନୋରମ ଯେ ।
ଭ୍ରମର ବଳ୍ଗାନେ ତାକୁ ଅନ କ ଲଭଇ ।
ମାଳତୀର ମଧୁପ ବଳ୍ଗାନେ ଟଳ ନାହିଁ ଯେ ।
ଚୂତ ମୁକୁଳ ଥଇଲେ ଭୃଙ୍ଗ କରେ ପାନ ।
ପକ୍ୱ ଫଳ ହେଲେ କରେ କୋକିଳ ଅଦନ ଯେ ।
ଯାହାର ଯେ ଯୋଗ୍ୟ ଭୋଗ୍ୟ ତାକୁ ହୁଏ ବଳେ ।
ଯୋଡ଼ିଲେ ପାଏ ନ ଲେଶ ଅନ ଛାର ବେଳେ ଯେ ।
ସୃତକର ଘନ ଷର୍ନ ନାହିଁ ପ୍ରତିକାର ।
ଚନ୍ଦ୍ରବର୍ନ ଅନ ଗତି ନାହିଁ ଚକୋରର ଯେ ।
ମୀନ ବନ ପୀରତ ଯେ ଅତ୍ୟନ୍ତ ନନ୍ଦନ ।
ତେଜିଲେ କମଳ ଦୂର କରଇ ଜୀବନ ଯେ ।

୨୬ଶ ଛାନ୍ଦ ପୃ ୧୮୪-୧୮୫

## ନାୟକ ହେମନ୍ତାନୁଚିନ୍ତା

ମହିଳା ତୋ ସଙ୍ଗ ନୋହିଲା ଗେ ଦେଖ ବହିଲା ଉତ୍ତର ବାତ
ସହିଲା ■ ଦେହ ଦହିଲା ସଜୀବେ ରହିଲା ଦୂରେ ମୋ ମିତ ।
କ୍ଷୀନ ଦନ ଦେଖି କ୍ଷୀନଉଦଶ୍ୱ ମୋ କ୍ଷୀନ ଦନୁ ଦନୁ ହେବ
କ୍ଷଣଦା ମୋ ବନା କଲପ ପରିଛେଦ୍ୟ କ୍ଷଣଦାୟିନୀ ମଣିବ ।
■ରସ ଅଧିକ ହେଉଥିବ ବନ୍ଧୁ ସାରସ ନୀରସ ଦେଖି
ତାତର ହୋଇଣ ମାତର ବୂଜିବ ଉତ୍ତର ବାତକୁ ଅଖି ।
କୁନ୍ଦନ କେତକୀ ନନ୍ଦନ ଚନ୍ଦ୍ରରେ ଚନ୍ଦନ ସେନମ ନାହିଁ
ତରଣି-ତାପକୁ ବରହ ତାପରେ ତରୁଣୀ ଅସିବ କେହି ।

୧୮ଶ ଛାନ୍ଦ ପୃ ୨୦୪

## ନାୟକ ଶିଶିରାନ୍ତଚିନ୍ତା

ଏ ଶୀତରେ ନୋହୁ ଈଷିତ ଅନ୍ତର ଏବେ ତ କରିବ ବନ୍ଧବେ
ମକର ଦୁଃସହ ମକର ପରାୟେ ଗ୍ରାସ କରୁଅଛୁ ଦେହ ରେ
ରସିକା ! କାମ କୋପ ପୁଣି ବଢ଼ରେ
ଦଣ୍ଡରୁ ଦଣ୍ଡ ଲୁବଣ୍ଡେ ଦଣ୍ଡିଅଛୁ ନ:ଥିବାରୁ ତୋହ କୋଡ଼ରେ ।

\+ \+ \+

ସ୍ୱପ୍ନେ ସପନେ ଦେଖିଲି ଦନରୁ ନୟନରେ ଧଡ କଲୁ ରେ
ଅନୁଗତ ହୋଇ ଅନୁସରବାରେ ସାକ୍ଷାତେ ପ୍ରସନ୍ନ ହେଲୁ ରେ
ରହିକା ! ସୀରଛି ରଛ ବରାଛ ରେ
ତ ପାପବଶୁଁ ଅନ୍ତର ହୋଇଗଲୁଁ ଶୋକ ସରିତେ ବୁଡ଼ାଇ ରେ ।

୨୯ ଛାନ୍ଦ ପୃ ୧୯

## ଗ୍ରୀଷ୍ମ ବର୍ଣ୍ଣନା

ଜ୍ୟେଷ୍ଠ ହେଲା କଷ୍ଟଦାୟୀ ବସନ୍ତ ଅନ୍ତରେ
ତପତ ପବନ ସବୁ ଦଗରେ ପ୍ରସରେ
ଫୁଟି ପାଟଳୀ ଶିରୀଷ
ଗନ୍ଧ ଗନ୍ଧବହ ଦୂରଇଲା ଦନ୍ଦହଶ ।
ଅପାର ଅଭାବୁ ନଦୀ କାହାର ଶୁଖିଲେ
ନାଗର ଭାବକୁ ତନ୍ତୁ ଶସାର ..ଛିଲେ
ପଦ୍ମବନ ଗଲା ଭାଜି
ମରନ୍ଦ ଅଭାବୁ କ୍ଷୀଣ ମଧୁକର-ରାଜି ।
ହେଲେ ଅଚଞ୍ଚଳେର ପ୍ରଚଣ୍ଡ ଚଣ୍ଡକର
ଅସ୍ଥିର କଲେ ବିଳାସୀ ଜଳଯନ୍ତ୍ର ପୁର

ବନଅନ୍ତ ରମ୍ୟ ହେଲା
କାମୀ କାମିନୀଙ୍କ ଚନ୍ଦ୍ରକରେ ସୁଖଇଲା ।
୩୧ଶ ଛନ୍ଦ ପୃ ୨୨୪

## ବର୍ଷା ବର୍ଣ୍ଣନା

ବରଷା ପ୍ରବେଶ ହୋଇଲା ଆସି । କାଳକା ବଶେ ବଶେ ପରକାଶି
ନବେ ନଚିଲା ଧୂନାଶିର ଗୃପ । ଚଞ୍ଚଳା ଚମକ ହେଲା ଅମାପ
ଘନ ଘଡ଼ଘଡ଼ । ଘଡ଼ିକ ଘଡ଼ି ପଡ଼ୁ ଅଛୁ ମାଡ଼ ।
ଜରକା ପ୍ରକଳ ମହୀରେ ପଡ଼ି । କୁଳଶଧାରେ ଶେଗଶୃଙ୍ଗ ଝଡ଼
ବୟୋଗୀ ଅଙ୍ଗ ଅସାର ପାଭରେ । ବିନାଶ କଲା କେବଳ ସବୁରେ
ବକାଳ ବହାର । ଉଡ଼େ ବ ଜମ୍ବୁ ଚରାଳ-କାମର ।
୩୬ଶ ଛନ୍ଦ ପୃ ୨୩୧

## ପ୍ରେମିକା ବର୍ଣ୍ଣନା

ଦର୍ପଣର ଦର୍ପଦଳପନାକୁ—ସୁନୀରଜ-କରକ-ବଦନାକୁ
ମଞ୍ଜୁ-ମୃଦୁଳ ମଧୁରଭାଷୀଙ୍କ—କୁନ୍ଦରନ୍ଦ୍ର ଭଦ୍ରମନ୍ଦହାସୀଙ୍କ
ପୀନ କଠିନ ଶ୍ରୀଫଳସ୍ତନାକୁ—ବରକରମ୍ଭବର୍ତ୍ତ ଅଙ୍ଗନାକୁ
କଣ୍ଠ-ଭୂଷଣ ପୃଚମଣୀଙ୍କ—ସୁରଦରକଣ୍ଠୀ ଗୁଣମଣୀଙ୍କ
ଝଳ ଦନକ ହେମବରନାକୁ—ନବନୀତ-ପ୍ରତିମା ଲଳନାକୁ
ଖଞ୍ଜୁ ଡମରୁ ସନ୍ନ ମଧ୍ୟମାକୁ—ପ୍ରୀତ ଭୁଜନା ମୋ ସୁଖଧାମାକୁ
୩୮ଶ ଛନ୍ଦ ପୃ ୨୪୦

ଅଉ ବିଶେଷ ଉଦ୍ଧାର ଅନାବଶ୍ୟକ । କାବ୍ୟର ପ୍ରତ୍ୟେକ ଛନ୍ଦ ଅସାମାନ୍ୟ ଲାବଣ୍ୟରେ ଉଦ୍ଭାସିତ ହୋଇଥିଲା ପରି ବୋଧହୁଏ । ବୁଢ଼ୀଆ ଅଙ୍କ ଜଳ ଘରର ଲୁକ୍କାୟିତ ଧନର ସନ୍ଧାନ ନ ନେଇ

ନିଜକୁ ଅଯଥା ହୀନ ଦରିଦ୍ର ଭାବି ସାହିତ୍ୟରାଜ୍ୟରେ ଯେ ଭିକାରୀ ବେଶ ଧରିଅଛୁ ଏହା ଓଡ଼ିଶାର ବର୍ତ୍ତମାନ ଯୁଗର ଅପେକ୍ଷାକୃତ ଅଯୋଗିତ ମଧ୍ୟରୁ ଅନ୍ୟତମ ଭାବିବାକୁ ହେବ ।

**ଶୃଙ୍ଗାର ରସର ପ୍ରାଧାନ୍ୟ ଓ ତଥାକଥିତ ଅଶ୍ଳୀଳତା**

ଗୋଟିଏ ସଭ୍ୟତାର ଲୋକେ ଅନ୍ୟ ଗୋଟିଏ ସଭ୍ୟତାକୁ ଅନ୍ଧ ଭାବେ ଅନୁକରଣ କରୁ କରୁ ସେମାନଙ୍କ ମନ ଦାସମନୋଭାବରେ ଜଡ଼ୀଭୂତ ହୋଇପଡ଼େ ଓ କାଳକ୍ରମେ ସେମାନେ ନିଜର ଅସ୍ତିତ୍ୱ ହରାଇ ନିଜର ଅତୀତ ଓ ନିଜର ଐତିହ୍ୟ ପ୍ରତି ଆସ୍ଥାଶୂନ୍ୟ ହୋଇପଡନ୍ତି ଏବଂ ଅନୁକୃତ ସଭ୍ୟତାର ଆଦର୍ଶକୁ ସର୍ବତୋଭାବେ ବଡ଼ ବୋଲି ଭାବନ୍ତି । ବିଂଶ ଶତାବ୍ଦୀରେ ଆମ୍ଭମାନଙ୍କର ପାଶ୍ଚାତ୍ୟାନୁକରଣ ପ୍ରବୃତ୍ତି, ଆମ୍ଭମାନଙ୍କ ନିଜ ଅତୀତକୁ ସ୍ୱଦେଶ-ପ୍ରୀତିଚକ୍ଷୁ ଦେଇ ଦେଖିବାକୁ ବାଧା କରୁଅଛି ଓ ଦାସମନୋଭାବ ଦ୍ୱାରା ଆମ୍ଭେମାନେ ଏତେ ଦୂରକୁ ଗ୍ରସ୍ତ ହେଲୁଣି ଯେ, ଆମ୍ଭ ଦେଶର ସ୍ୱାଧୀନତା-ଜଳ-ବାୟୁରେ ପରିପୁଷ୍ଟ ଅତୀତ ଆଦର୍ଶ ସବୁ ଆମ୍ଭମାନଙ୍କୁ ନିତାନ୍ତ ହେୟ ଓ ସ୍ଥଳବିଶେଷରେ ଘୃଣ୍ୟ ବୋଧ ହେଉଅଛି । ଲାବଣ୍ୟବତୀ ଓ ଏହି ଶଶିରେଖା ପ୍ରଭୃତି କାବ୍ୟ ଆମ୍ଭମାନଙ୍କ ବୀରପ୍ରସୂ ଦେଶର ରସିକ ଯୁବା ଯୁବତୀଙ୍କ ଉପଭୋଗ ନିମନ୍ତେ ଲିଖିତ ହୋଇଥିଲା ଓ ଏ ସବୁଥିରେ ଯେଉଁ ପରିମାଣର ଶୃଙ୍ଗାର ରସର ପ୍ରାଧାନ୍ୟ ଦେଖାଯାଏ ତାହା ସେ କାଳର ଯୁବା ଯୁବତୀଙ୍କ ମନୋପଯୋଗୀ କାମ୍ୟ ବସ୍ତୁ ଥିଲା । ପ୍ରତିଭାଶାଳୀ କବି-ମାନେ ଯୁବପ୍ରାଣକୁ ଏହି କାମ୍ୟ ଖାଦ୍ୟ ଯୋଗାଇ ପାରି ନିଜର ଲେଖନୀ

ଧାରଣାକୁ ସାର୍ଥ କରିଥିଲେ । ଆଜି ଏହି ଶୃଙ୍ଗାର-ରସ-ପ୍ରଧାନ କାବ୍ୟ ମାନଙ୍କ ପ୍ରତି ଏହି ହତଭାଗ୍ୟ ଦେଶର ଶିକ୍ଷିତ ଯୁବକସମାଜରେ ଯେଉଁ ନାସାକୁଞ୍ଚନ ଦେଖାଯାଉଅଛି, କହିବା ବାହୁଲ୍ୟ, ତାହା ସେମାନଙ୍କ ଦାସମନୋଭାବର ଫଳ ଓ ଆମ୍ଭ ଚକ୍ଷୁରେ ନିତାନ୍ତ ଅସ୍ୱାଭାବିକ । କଳିଙ୍ଗ ଭୂଖଣ୍ଡ ଚିରକାଳ ଭାରଦେଶ ଏବଂ କଳିଙ୍ଗୀ ସାହସିକାଃ ଏହା ଏକ ପ୍ରସିଦ୍ଧ ପୁରାଣ ବାକ୍ୟ । ଭାରତଦେଶର ଯୁବପ୍ରାଣ ଯେଉଁ ଶୃଙ୍ଗାରରେ ମଜ୍ଜମାନ ହେବାକୁ ଗୃହେ ତାହା ଯେ କେତେ ପ୍ରାଣବନ୍ତ ହେବା ପ୍ରୟୋଜନ ତାହା ସେହି ଭାରତ-ଦେଶର ନୀତିକାରମାନେ ଓ ନୀତିକାରରୂପୀ କବିମାନେ (Poets are the unacknowledged legislators of the world—Shelley) ବେଶ୍ ଜାଣିଥିଲେ । ତେଣୁ ପ୍ରେମମୟୀ ରମଣୀର ଜୀବ-ତୋଷଣରେ ଭାରତଦେଶର ଯୁବକ ତୋଷ ଲଭ ଜନନ ଉଲ୍ଲାସ ଯେ ଦେଖିଥିଲା ତହିଁରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ, ଲଜ୍ଜା ନିମନ୍ତେ ଅବକାଶ ତ ଦୂରର କଥା । ଶଶିରେଖା କାବ୍ୟ ଶୃଙ୍ଗାରରସପ୍ରଧାନ । ଏହାର ସମ୍ୟକ୍ ଉପଭୋଗ ନିମନ୍ତେ ଏ ଦେଶ ଯୁବକଙ୍କ ଦାସମନୋଭାବଗ୍ରସ୍ତ ହୃଦୟର ବିପ୍ଳବ ଓ ପରିବର୍ତ୍ତନ ଯେ ପ୍ରୟୋଜନ କହିବା ଅନାବଶ୍ୟକ ।

ଉତ୍କଳର ଶୃଙ୍ଗାର-ରସ-ପ୍ରଧାନ କାବ୍ୟ କବିତା ଓ ଉତ୍କଳ ଶିଳ୍ପୀର ଶୃଙ୍ଗାର ଭାବପ୍ରକାଶିତ ମୂର୍ତ୍ତି ସବୁକୁ ଅଶ୍ଳୀଳ କହିବା ଏ ଦେଶ ଶିକ୍ଷିତଙ୍କର ଗୋଟାଏ ରୀତି ବା fashion ହୋଇ ଗଲାଣି । ଏ ଦେଶର ଐତିହ୍ୟାଦି ବିଷୟରେ ନିତାନ୍ତ ଅଜ୍ଞ ଯମୁନାଲାଲ ବାଜାଜଙ୍କ ପରି କୌଣସି ବିଦେଶୀ ନେତାଙ୍କ ପ୍ରରୋଚନାରେ ଦେବାଳୟ ଦେହରେ ଥିବା ତଥାକଥିତ ଅଶ୍ଳୀଳ ମୂର୍ତ୍ତି ସବୁକୁ ଗୁପ୍ତ ବା ଲୁପ୍ତ କରିଦେବା ନିମନ୍ତେ ମଧ୍ୟ ଏ ଯୁଗରେ କମ ପ୍ରଚେଷ୍ଟା ହୋଇନାହିଁ । ଏହି ପ୍ରଚେଷ୍ଟାର ମୂଳରେ ଯେ ଏହି

ଦେଶର ଲୋକେ, ଏହା ଭାବଲେ ଦାସମନୋଭାବରେ ଅମ୍ଭେମାନେ ଯେ କ ଶୋଚନୀୟ ଭାବେ ଗ୍ରସ୍ତ ତାହା ବେଶ୍ ଉପଲବ୍ଧ ହୁଏ । କଳାପ୍ରାଣ ଉତ୍କଳୀୟ କଳାର ପ୍ରକୃଷ୍ଟ ପୂଜାରୀ ରୂପେ ଜୀବନର କୌଣସି ବଭାବକୁ ବାଦ୍ ଦେଇ ପାରିନାହିଁ । ବଶେଷତଃ ଶୃଙ୍ଗାରୀ ରେତ୍ କବକାବ୍ୟ, ଜାତଂ ରସମୟଂ ଜଗତ୍ ଏହି ପ୍ରାଚୀନ ଅଦର୍ଶକୁ ଓଡ଼ିଆ ବେଶ୍ ଚହ୍ନିଥିଲା ଏବଂ ଶୃଙ୍ଗାର ରସର ଅତଶୟ ବଶ୍ଳେଷଣ ଯୋଗୁଁ ଅଜ ଓଡ଼ିଆ କବକ୍ ଯେ ଦୋଷଭାଗୀ କରାଯାଉ ଅଛି, ତ୍ରୁଟଏ ଚଲ୍ଲାକଲେ ଦେଖାଯିବ ତାହା ନତାନ୍ତ ଅଯୌକ୍ତିକ । ବୀରତ୍ୱ ବା Heroism ସହତ ନାରୀପୂଜା ବା Chivalry ଅବଚ୍ଛେଦ୍ୟ ଭାବେ ସଂଯୁକ୍ତ । ପାଶ୍ଚାତ୍ୟଦେଶ ମାନଙ୍କରେ ମଧ୍ୟ ନାରୀପୂଜା ବୀରତ୍ୱର ମାପକାଠି ରୂପେ ବବେଚତ ହୋଇ ଅସିଅଛି । କଳାପ୍ରାଣ, ବୀର ଓଡ଼ିଆ, ନାରୀର ରୂପରେ ଚର ବଭୋର । ନାରୀ ଉଦ୍ଦେଶ୍ୟରେ ଓଡ଼ିଆ ସାହତ୍ୟରେ ଯେଉଁସବୁ ପ୍ରେମକବତା ବିଦ୍ୟମାନ ସେ ସବୁ ପୃଥିବୀର ଯେ କୌଣସି ସଭ୍ୟ ସାହତ୍ୟ ପକ୍ଷେ ଶ୍ଳାଘାର ବଷୟ, କନ୍ତୁ ଅଧୁନକ ଶିକ୍ଷାଲୋକପ୍ରାପ୍ତ ଲୋକେ କହୁବେ ସେ ସବୁ ଅଶ୍ଳୀଳ । ଏ ଲୋକଙ୍କ ଶ୍ଳୀଳାଶ୍ଳୀଳ ମାପକାଠି ବଦେଶରୁ ଅନୀତ । ଓଡ଼ିଆଲୋକେ ଯେତେବେଳେ ସ୍ୱାଧୀନ ଥିଲେ ତେତେବେଳେ ସେମାନେ ଯାହା କରୁଥିଲେ ତାହା ବଦେଶୀଙ୍କ ଅକ୍ଷିର ଉପର ଦଶୁଛ ସେଥିପ୍ରତ ସେମାନେ ଭ୍ରୂକ୍ଷେପ କରୁ ନଥିଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରଚଳତ Ball-dancing ବା ସ୍ତ୍ରୀ ପୁରୁଷଙ୍କ ସମ୍ମିଳିତ ନୃତ୍ୟ ନଶ୍ଚୟ ଓଡ଼ିଆ ଅକ୍ଷିରେ ନତାନ୍ତ ଅଶ୍ଳୀଳ, କନ୍ତୁ ଓଡ଼ିଆ ଆକ୍ଷିର ଅଶ୍ଳୀଳ ଦଶୁଥିବାରୁ ସ୍ୱାଧୀନ ପାଶ୍ଚାତ୍ୟ ଜାତ ଯେ Ball-dancing କ ଛାଡ଼ଦେବେ ବା ତାହା ଅଶ୍ଳୀଳ ବୋଲ ମାନଯିବେ ଏହା ଏକାବେଳକେ ଅସମ୍ଭବ ।

ଢଙ୍ଗ ଅନୁକରଣପ୍ରିୟ ଜାତି ପକ୍ଷେ ଅସ୍ମନଦା ନିତାନ୍ତ ସ୍ୱାଭାବିକ କଥା। ଆଜି ଓଡ଼ିଆ ଯେ ବିଦେଶୀଙ୍କ ସହିତ ସ୍ୱର ମିଶାଇ ନିଜର ଅତୀତ ଆଦର୍ଶକୁ ହେୟ ଓ ତୁଚ୍ଛ ମନେକରୁଅଛି ତହିଁରୁ ଏତିକିମାତ୍ର ପ୍ରମାଣିତ ହେଉଅଛି ଯେ ଓଡ଼ିଆ ଆଜି ପରାଧୀନ ଓ ପତିତ। କାବ୍ୟକଳାରେ ନାରୀର ଶରୀର ଓ ନାରୀର ମନକୁ ଛିନ୍ନ ଭିନ୍ନ କରି ବିଶ୍ଳେଷଣ କରି ତହିଁରୁ ଲାବଣ୍ୟମୟ ସୌନ୍ଦର୍ଯ୍ୟ କାଢ଼ି ଉପଭୋଗ କରିବା କଳାପ୍ରାଣ ବୀର ଜାତିର ଧର୍ମ ବୋଲି ଆମ୍ଭର ମତ। କଳାପ୍ରାଣ ସ୍ୱାଧୀନ ଓଡ଼ିଆ ଜାତି ଯଦି ତାହା ମାତ୍ର କରୁଥାଏ ତେବେ ତନ୍ନିମନ୍ତେ ତାକୁ କାହାରିଠାରେ କୈଫିୟତ ଦେବାକୁ ହେବ ନାହିଁ। ଓଡ଼ିଶାର ସ୍ଥାପତ୍ୟକଳାପରି ଓଡ଼ିଶାର ସାହିତ୍ୟ ଯେତେବେଳେ ପ୍ରକୃଷ୍ଟ ଭାବେ ଜଗତ ଆଗକୁ ଆସିବ ସେତେବେଳେ ଜଗତ ଜାଣିବ ଓଡ଼ିଆ କିପରି ରସିକ ଓ ପ୍ରେମିକ ଜାତି; ଏବଂ ବାସ୍ତବିକ, ଓଡ଼ିଆ ମନରେ ପ୍ରେମର ମାଦକତା ପ୍ରଚୁରାଦପିପ୍ରଚୁର ପରିମାଣରେ ନ ଥିଲେ ଓଡ଼ିଶାର କଳା ଆଜି ଜଗତର ନମସ୍ୟ ଜିନିଷ ହୋଇ ନ ଥାନ୍ତା। ପ୍ରେମହିଁ କଳାର ସ୍ରଷ୍ଟା ଓ ସୌନ୍ଦର୍ଯ୍ୟର ଜନକ। ଯାହାକୁ ଅଶ୍ଳୀଳ କୁହାଯାଉଅଛି ତହିଁରେ ଯେଉଁ ସୌନ୍ଦର୍ଯ୍ୟ ଅଛି ତାହାର ବିଜ୍ଞାନସମ୍ମତ ଆସ୍ୱାଦନ ଓ ଉପଭୋଗ ନିମନ୍ତେ ଓଡ଼ିଆଙ୍କ ପରି ବୀର ଓ କଳାବିତ୍ ହେବା ପ୍ରୟୋଜନ। ବୀର ଓଡ଼ିଆର ପ୍ରେମ ଯାହାକି ଜଗତର ଶ୍ରେଷ୍ଠ କଳାର ଜନକ, ଆଜି ଆମ୍ଭ ମନରେ କବିବର Byron ସାହେବଙ୍କ ନିମ୍ନୋଦ୍ଧୃତ ପଂକ୍ତିସବୁ ଜାଗରୂକ କରିଦିଏ।

"The cold in clime are cold in blood
Their love doth scarce deserve the name;
But mine is like the lava-flood
That flows in Etna's breast of flame."

ବନ୍ଧୁ ଓଡ଼ିଆ ଅଙ୍କ ଆଉ ବୀର ନୁହେଁ ବା ତାର ଅନ୍ତରେ ସେ ଉଷ୍ଣ ରକ୍ତ ନାହିଁ। ଦୁର୍ବଳ ଓ ପରମୁଖାପେକ୍ଷୀ ଯେ, ତାର ପ୍ରେମ ନ ଥାଏ ବା ପ୍ରେମ ଥିଲେ ପ୍ରେମର ମାଦକତା ନ ଥାଏ। ଶୃଙ୍ଖଳିତ ହୋଇଥିବା ତାଙ୍କୁ ଦଶେ ବସ୍ତୁଷିକା। କହିବା ବାହୁଲ୍ୟ ଅଶ୍ଳୀଳତା ସେହି ବସ୍ତୁଷିକା ମଧ୍ୟରୁ ଅନ୍ୟତମ।

ଆମ୍ଭର ଆଶା ଅତୀତର ଉଦ୍‌ବୋଧନ ସହିତ ଓଡ଼ିଆ ପ୍ରାଣର ପୂର୍ବ ତେଜଃ ଫେରି ଆସିବ ଓ ଅଶ୍ଳୀଳତା ରୂପକ ବସ୍ତୁଷିକାରୁ ମୁକ୍ତ ହୋଇ ଓଡ଼ିଆ ପୁଣି ପ୍ରେମର କଣ୍ଠ-ଭରା ଗୀତ ପ୍ରାଣପୂର୍ଣ୍ଣ ଉଲ୍ଲାସରେ ଗାଇବ। ଅଧୁନା ପ୍ରକାଶିତ ଶଶିରେଖା କାବ୍ୟ ଉକ୍ତ ଶିକ୍ଷିତଙ୍କ ଠାରୁ ନିଜର ପ୍ରାପ୍ୟ ଆଦରଟି ପୂର୍ଣ୍ଣ ପ୍ରାପ୍ତି ନିମନ୍ତେ ସେହି ସୁଧିଜନଙ୍କୁ ଅପେକ୍ଷା କରିବ। ଇତି।

ପ୍ରାଚୀ ବର୍ଦ୍ଧନ ଭବନ
୨୪-୫-୩୩

ଶ୍ରୀ ବୈକୁଣ୍ଠଚରଣ ପଟ୍ଟନାୟକ

# ଶଶିରେଖା

## ପ୍ରଥମ ଛାନ୍ଦ

୨

ରାଗ—ମଙ୍ଗଳଗୁଜ୍ଜରୀ

ଜୟ ଜୟ ଜଗନ୍ନାଥ ଜଗତକରତା
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଦାତା ହେ । ୧ ।

ଦାରୁ ରୂପେ ବ୍ରହ୍ମ ବିଜେ କରି ନୀଳାଚଳେ
ଶ୍ରୀପୁରୁଷୋତ୍ତମ ଯାହା କହନ୍ତି ଭୂତଳେ ହେ । ୨ ।

ତହିଁ ଥାଇ ନାନା ଯାତ୍ରା କରନ୍ତି ରଥାଣି
ଦରଶନେ ମାନବଙ୍କୁ ଦିଅନ୍ତି ନିର୍ବାଣ ହେ । ୩ ।

ସକଳ ମାସରେ ସବୁ ରୂପରେ ଉତ୍ସବ
ଦେଖନ୍ତେ ଜନମ ହୋଇ୍ୟ ନେହମହୋତ୍ସବ ହେ ।୪।

ତହିଁ ପୁଣ ଦ୍ୱାଦଶ ପ୍ରସିଦ୍ଧ ରତ୍ନପୁରେ
କହିବା ସେ ନାମ ନରେ ଶୁଣ ସଂକ୍ଷେପରେ ହେ । ୫ ।

ସ୍ନାନ ସ୍ୟନ୍ଦନାରୋହଣ ନବଢ଼ ଶୟନ
ଯାମ୍ୟାୟନ ଉଦ୍ବର୍ତ୍ତନ ଦେବ ଉତ୍ଥାପନ ହେ । ୬ ।

୬—୨—ଯାମ୍ୟାୟନ ଉଦ୍ବର୍ତ୍ତନ (ଖ) ।

ଓଢ଼ଣ ପୁଷ୍ୟାଭିଷେକ ମକର ନାକର
ଦୋଳ ଦମନକ ଗ୍ରେଭ ଚନ୍ଦନ ପ୍ରକାର ହେ । ୭ ।

ଏ ବିଧିରେ ବେନଦଶ ଯାତ୍ରାମାନ କରି
ପତିତପାବନ ପଣ୍ଡିତଙ୍କୁ ଭବୁଁ ଢାଉ ହେ । ୮ ।

ତହିଁମଧ୍ୟେ ଅଛି ଶ୍ରେଷ୍ଠ ଗୁଣ୍ଡିଚା ଉତ୍ସବ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଅଟେ ଯେ ଦୁର୍ଲ୍ଲଭ ହେ । ୯ ।

ଆଷାଢ଼ ଶୁକ୍ଳ ପ୍ରତିପଦା ନିଶି ଶେଷ
ଭବଗ୍ରାହୀ ହରି ନିଦ୍ରାବୋଧ ଅବକାଶ ହେ । ୧୦ ।

ବନ୍ଦିତ ସମ୍ଭାର ଭାର ମୁଣ୍ଡୋହୁ ବଢ଼ାଇ
ପହଣ୍ଡି ବିଜେ ବିଧାନେ ଅବଧାନ ହୋଇ ଯେ । ୧୧ ।

ଧରି ଡୋର ଖଟଣି ସାମନ୍ତମାନେ ଟେକି
ଅବନୀ ଉପରେ ବିଛାଇଲେ ଦିବ୍ୟ ତୁଳ ଯେ । ୧୨ ।

ଝୁଲାଇ ବେନ ପାଣିକୁ କରିବନ୍ତି ବିଜେ
ପାଦ ଲାଗିବାରୁ ମଞ୍ଚ ଉତ୍ଫୁଲ୍ଲକୁ ଭଜେ ହେ । ୧୩ ।

ଆଗେ ବିଜେ କରିଗଲେ ଭଦ୍ରା ବଳଦେବ
ତହିଁ ପଛେ ବିଜେ କଲେ ଦେବଙ୍କର ଦେବ ହେ । ୧୪ ।

ସିଂହାସନ ତେଜି ଜଗମୋହନେ ପ୍ରବେଶ
ଘଣ୍ଟ ପଟହ ବାଦ୍ୟରେ ପୂରେ ଦଶାଦିଶ ଯେ । ୧୫ ।

ଚଳବାରୁ ଚରଣଶବଦ କର୍ଣ୍ଣେ ବାଜି
ଯାତକ କେତେକ ଗଳା ଇଷିତରେ ଭାଜି ହେ । ୧୬ ।

୮-୧୧—ସମ୍ଭାରେ ଭାର (ଗ)

ପ୍ରାସାଦୁଁ ବାହାର ବେଳେ ହୋଇସେ ଏ ପ୍ରତୀତ
ନୀଳଗିରି ଦଶ ଦେଖ କସ୍ତ କି ଅଗତ ହେ । ୧୭ ।

ସ୍ୟନ୍ଦନ ପାଶରେ ଜଗବନ୍ଧନ ପ୍ରବେଶ
ଗହଣେ ଅଛନ୍ତି ନାଗ ମାନବ ତ୍ରିଦଶ ହେ । ୧୮ ।

ସୁବର୍ଣ୍ଣ ମୂର୍ତ୍ତି ନନ୍ଦୀଘୋଷ ରଥବର
ଆରୋହଣ କଲେ ଯେହ୍ନେ ହର ଗିରିଶିର ହେ । ୧୯ ।

ଚଳବାରେ ରଥଧ୍ୱନି ବ୍ରହ୍ମାଣ୍ଡେ ପୂରିତ
ପ୍ରଳୟ କାଳେ କି ଗର୍ଜେ ଆଷାଢ଼-ଜୀମୂତ ହେ । ୨୦ ।

ମଧ୍ୟରେ ପ୍ରବେଶ ଯଜ୍ଞବେଦୀରେ ହୋଇଲେ
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ସାତ ଦିବସ ରହିଲେ ହେ । ୨୧ ।

ବାହୁଡ଼ା ବିଜୟରେ ଦୁର୍ଜୟ ଗଡ଼ ଲଙ୍କା—
ନୃପଙ୍କୁ ଦର୍ଶନ ଦେଇ ହରିଲେ ତା ଶଙ୍କା ହେ । ୨୨ ।

ପ୍ରବେଶ ସ୍ୟନ୍ଦନବର ଆସି ସିଂହଦ୍ୱାରେ
ଲକ୍ଷ୍ମୀ ଦାସୀ ଆସି ଦ୍ୱାରେ ନିରୋଧେ ସତ୍ୱରେ ହେ । ୨୩ ।

ପ୍ରଭୁ ତହିଁ ସାରଣୀ ବନ୍ଦିତ ଧନ କଲେ
ଉତ୍ତର ବିନୟ କହି ଭିତରକୁ ଗଲେ ହେ । ୨୪ ।

ସିଂହାସନ ପ୍ରବେଶରେ ଶୋଭନ୍ତି ପ୍ରାସାଦ
ଦେଖିଲେ ନାଶନ୍ତି ଭକ୍ତଜନର ବିଷାଦ ହେ । ୨୫ ।

ଚକା ଅପସରେ ଅବସରେ ବିଜେ କରି
ବନ୍ଦାପନା ବିଧାନକୁ ସତ୍ୱର ବର୍ଣ୍ଣିର ହେ । ୨୬ ।

ଠାକୁରାଣୀଙ୍କି ପ୍ରବେଶ କରାଇ ସେଠାରେ
ଶଙ୍ଖ ସିନ୍ଧୁ ମନ୍ଥନ କାଳେ ଯେହ୍ନେ ସୁରେ ହେ । ୨୭ ।

ଅଖଣ୍ଡ ଜ୍ୱଳନେ ହେଲା ପ୍ରାସାଦ ଉଜ୍ଜ୍ୱଳ
ତ୍ରିଦଶ ଦେବତା ଝାଙ୍କ ଥାନ୍ତି ଯଉଁ କାଳ ହେ । ୨୮ ।

ଠାକୁର ଠାକୁରାଣୀଙ୍କ ବନ୍ଦାପନା ବିଧି
ଦେଖି ଶିରେ କର ଦେଇ ଉଭା ଇନ୍ଦ୍ର ବନ୍ଧୁ ହେ ।୨୯।

ପଦ୍ମନାଭ ଶ୍ରୀଚନ୍ଦନ ଦେଖି ଏ ସମସ୍ତ
ନାଶକଲି ପୂର୍ବାର୍ଜିତ ପାତକ ସମସ୍ତ ହେ । ୩୦ ।

ଶିରେ କର ଦେଇ ପୁଣ ଏମନ୍ତ ଜଣାଇ
ଆହେ ପ୍ରଭୁ ଜଗନ୍ନାଥ ବ୍ରହ୍ମାଣ୍ଡ-ଗୋସାଇଁ ହେ । ୩୧ ।

ମନୋରଥ କରୁଛି ମୁଁ ପ୍ରବନ୍ଧ ରଚନା
ନୋହଇ ସେ ସିଦ୍ଧ ତବ ଅନୁଗ୍ରହ ବିନା ହେ । ୩୨ ।

ଜଣାଉଛି କର ଯୋଡ଼ି ଏହି ଆଜ୍ଞା ଦେବ
ଶଶିରେଖା ପ୍ରବନ୍ଧ କରିବ ନିର୍ଭା ହେବ ହେ । ୩୩ ।

ଯେତେ କହି ସ୍ତୁତି ଭଣି ଧାଏଁ ପଡ଼ି ଶୋଇ
ପୁନଃପୁନଃ କର ଯୋଡ଼ି ଅଗ୍ରେ ଉଭା ହୋଇ ହେ ୩୪

ପ୍ରଭୁ ପ୍ରସନ୍ନରୁ ବ୍ୟକ୍ତ ହେଲା ସୀତ୍କାର
କହୁଅଛି ଜନେ ଏବେ ଶୁଣ ରସସାର ହେ । ୩୫ ।

ସହଜେ ମନୁଷ୍ୟତସ୍ତୁ ଅତି ମନ୍ଦ ବୁଦ୍ଧି
ପ୍ରବନ୍ଧ ରଚନା ତହିଁ ଅଗାଧ ଜଳଧି ହେ । ୩୬ ।

ତଥାପି ସୁଜନ ଜନ ସୁଦୟା କରିବ
ଅସମର୍ଥ ଅର୍ଥ ହେଲେ ବ୍ୟର୍ଥ ନ ଦୂଷିବ ହେ । ୩୭ ।

ପ୍ରବନ୍ଧ କ୍ରମରେ ପୂର୍ବାପରକୁ ବିଗୃହ
ଦୋଷଥିଲେ ରସ ବଶୁଁ ନେବ ତା' ଆଦର ହେ ।୩୮

ସନ୍ଦକେତ ଅନନ୍ଦତ ସ୍ୱଭାବ ଭ୍ରମର
ଗୁଣ ଘେନ ଦୋଷ ଥିଲେ ମନେ ତା' ନକର ହେ ୩୯
ଯେହ୍ନେ ସୂର୍ଯ୍ୟ ଭୂଷ ତେଜ ରସ ଗ୍ରହ କରେ
ଏହୁ ମତ ସାଧୁଜନ ପ୍ରତିଦ୍ୱ ଲୋକରେ ହେ । ୪୦ ।
ଖଳକୁଳ ଦୂଷଣଙ୍କୁ ନାହିଁ ମୋ ବଗୃର
ଉତ୍ତମ କଥା ନିନ୍ଦିବା ସ୍ୱଭାବ ତାଙ୍କର ହେ । ୪୧ ।
ସରସ ନାରିକେଳକୁ ମର୍କଟ ନିନ୍ଦଇ
ଏତେକେ କି ତାର ଦ୍ରବ୍ୟ ସ୍ୱାଦୁ ନାଶ ଯାଇ ହେ ୪୨
ସେ ହୋଇବ ରସିକ ପଣ୍ଡିତ ଅନୁଭବୀ
ଯେନାମ ସ୍ତୃ ଗୀତ ଅର୍ଥ ହୋଇଥିଲେ କବି ହେ ୪୩
ଅନ କଣ ଶୁଣି ସ୍ତୁଥି ଗର୍ବ ନ ଗାଇବ
ଦୂଷଣ ଦେଲେ ସେ ଅପେ ଦୂଷିତ ହୋଇବ ହେ ୪୪
ଚକ୍ରଧର ଚନ୍ତ୍ର ବନ୍ଧ-ନତ୍ର-ନର-ଇଷ୍ଟ
କଲେ ଗପେ ମଙ୍ଗଳାଚରଣ ଛନ୍ଦ ଶେଷ ହେ ୫୪

---

# ଦ୍ୱିତୀୟ ଛାନ୍ଦ

ରାଗ—ରାମକେରୀ

ଚିତ୍ତରେ ଘେନ ଏ ଅନ୍ତରେ      ଜନେ ପ୍ରବନ୍ଧ ସାର
ଶ୍ରବଣରେ ହେଲେ ଶ୍ରବଣ      ଯେହ୍ନୁ ସୁଧା ପ୍ରକାର । ୧ ।

ଏକ ଦିନେ ହର ଗଉରୀ      କେଳି-କାନନ-ସରେ
ସଜଳ-ଲୀଳା ଆରମ୍ଭିଲେ      କଉତୁକ ବଶରେ । ୨ ।

ଗିରି-ରାଜସୁତା ଉରଜ—      ଚତୁଃସମ ସଙ୍ଗତ
ଲିପ୍ତ କର୍ଦ୍ଦମ ପ୍ରାୟେ ହୋଇ      ଶିବ ଅଙ୍ଗ-ବିଭୂତି । ୩ ।

ଦେଖି ତାହା ଖଣ୍ଡ ପରଶୁ      ରୁଣ୍ଡ କରି ସନ୍ଧିରେ
କୃତ୍ରିମ ପୁତ୍ତଳିକ ରଚନା—      କଲେ ସେନେହଭରେ । ୪ ।

ହେମନ୍ତ ଅନାଇ ଅମ୍ବିକା      ଚିତ୍ତେ କରି କଳନା
ସେହି ଅନୁରୂପେ ନିର୍ମାଣ—      କଲେ ଏକ ଲଳନା । ୫ ।

ଗିରୀଶ ହରଷ ମାନସେ      ତାହା ଧଇଲେ କରେ
ଜୀବନ୍ୟାସ କରି ଦୁହିଙ୍କି      ଉଭା କଲେ ଥମ୍ଭରେ । ୬ ।

କୋଟି-କନ୍ଦର୍ପ-ଜିତ ଶୋଭା      ପୁରୁଷର ହୋଇଲା ।
ସୁନ୍ଦରୀ ସୁଷମା ସମାନ      ଛନପୁରେ ନୋହିଲା । ୭ ।

ଜୀବନ ଲଭିଣ ସେ ବେନି      ଶିବ ଶିବା ପାଦରେ ।
ଦଣ୍ଡ ପ୍ରଣାମ କରି ବନ୍ଦୁ      ସ୍ତୁତି କଲେ ମୁଦରେ । ୮ ।

ଦେଖି ତାଙ୍କୁ ହର ଗଉରୀ      ଅତି ହରଷ ଚିତ୍ତେ ।
ନିଜ ନିଳୟକୁ ବିଜୟ      କଲେ ଘେନି ସଙ୍ଗତେ ।୯।

ଷଡ଼ାନନ କର କୁମର    ନାମ ଦେଲେ ଈଶ୍ୱର
ଚନ୍ଦ୍ରକାନ୍ତ ନାମ ଗିରିଜା    ଦେଲେ ସେ କୁମାରୀର ।୧୦।

ହର ହକାରି କୁମରଙ୍କୁ    ଏମନ୍ତ ଆଜ୍ଞା ଦେଲେ
ଉପବନ ମଧ୍ୟ ମଣ୍ଡପେ    ଯାଇଁ ରହ ବୋଇଲେ ।୧୧।

ଶିବପ୍ରଦ ଶିବ ପୁରାଣ    ଅଭ୍ୟାସ କରୁଥିବ
ଯଥାକାଳେ ଆସି ଆମ୍ଭଙ୍କୁ    ଦରଶନ କରିବ । ୧୨ ।

ଶିରେ କର ବେନି ନିବେଶି    ଏହା ଶୁଣି ଚଳିଲା
ଅଛି ରମଣୀୟ ଆଶ୍ରମ—    ପୁରେ ସୁଖେ ରହିଲା । ୧୩ ।

ଚନ୍ଦ୍ରକାନ୍ତ ମତି ଗରିଷ୍ଠ    ଜାଣି ପ୍ରସନ୍ନ ହେଲେ
ନିରନ୍ତର ଆମ୍ଭ ପାଶରେ    ତୁମ୍ଭେ ଥିବ ବୋଇଲେ । ୧୪ ।

ବିତଥି ମୁନି ସ୍ୱର୍ଣ୍ଣ ଝଷି    ତାଙ୍କ ହସ୍ତରେ ଦେଲେ
ସବୁ ସହଚରୀ ତୁମ୍ଭର    ବୋଲେ ଥିବେ ବୋଇଲେ ।୧୫।

ସେହା ଶୁଣି ଏଣୀ-ଈକ୍ଷଣୀ    ମନେ ଲଭି ହରଷ
ସେହି ଅନୁରୂପେ ରହିଲା    ନିତ୍ୟେ ଅମ୍ବିକା ପାଶ । ୧୬ ।

ସେ ଅନ୍ତରେ ତହିଁ ସେମନ୍ତେ ଗଲା କେତେ ଦିବସ
ଶିଶିର ଶେଷରେ ବସନ୍ତ    ଋତୁ ହେଲା ପ୍ରବେଶ । ୧୭ ।

ଶିବ ଭବାନୀ ଏକଦିନେ    ହୋଇ ମନେ ଉଲ୍ଲାସ
ପୁଷ୍ପାବଚୟେ ମତି ଦେଇ    ଉପବନେ ପ୍ରବେଶ । ୧୮ ।

ଦେଖିଲେ ଅଭିରାମ ହୋଇଛି    ନାନା କୁସୁମେ ରମ
ଷ ସେ ରତି-ପତି-ସାଯୂକ—    ତହୁଁ ସତେଯୁ ଧାମ । ୧୯ ।

୧୯—୨—ରତିପତି ସାଯୂକ ସେ ସେ ସତେଯୁ ଧାମ ( ଷ )

ମକରନ୍ଦେ ମିଳି ମିଳନ୍ଦେ କରୁଛନ୍ତି ଝଙ୍କାର
ଶୁଣି ପ୍ରତେ ହୋଏ୍ୟ ଅତନୁ—ଧନୁ ଗୁଣ ଟଙ୍କାର । ୧୦ ।

ଯେମନ୍ତେ ବିହାର କରନ୍ତେ ଅତି ପ୍ରମୋଦ ମନେ
ଢୋଳନ୍ତି ସୁବାସ ପ୍ରସୂନ ବୁଲି ବିବିଧ ସ୍ଥାନେ । ୧୧ ।

ଯେ ସମୟରେ ଚନ୍ଦ୍ରକାନ୍ତ ଯେହ୍ନ ବଡଅ ମୁଣି
ସୁବର୍ଣ୍ଣ ଝରରେ ପୂରେଇ ଚନ୍ଦ୍ର ସୁବାସ ପାଣି । ୧୨ ।

ପାର୍ବତୀ ଗମନ ପଥକୁ ଅନୁସରଣ କରି
ଚଳଇ ଚଞ୍ଚଳା ଅଚଳା— ଚଳେ ଖେଳନ୍ତି ପରି । ୧୩ ।

ନଳିନୀ ଦଳେ କଳ ହଂସୀ ପ୍ରାପ୍ତେ କରଇ ଗଢ
ପ୍ରମଦା ପ୍ରପଦ ସ୍ଖଳନ୍ତେ ମୋଦ କରଇ ମଢ । ୧୪ ।

ଝଟକ ଶୋଭା ସମ୍ପୁଟକ— ମୁନି ଆଶ୍ରମ ପାଶେ
ପ୍ରବେଶ ମାତ୍ରକେ ଅତନୁ ପୀଡ଼ିଲା ତନୁ ଦେଶେ । ୧୫ ।

ଦେଖିଲା ଆଶ୍ରମ ଅନ୍ତରେ ମଣିମୟ ମଣ୍ଡପେ
ମଧ୍ୟେ ଏକ ଯୁବା ବସିଛି ନେତ୍ରାନନ୍ଦ ସ୍ୱରୂପେ । ୧୬ ।

ଶିବ ମାହାତ୍ମ୍ୟ ପଦାବଳି କରୁ ଅଛି ଗାୟନ
ମାଳବ ରାଗରେ ସରାଗେ ଧୀରେ ନିବେଶି ମନ । ୧୭ ।

ଯେମନ୍ତ ମନୋରମ ବାଣୀ ଶୁଣି ରମଣୀମଣି
ଚକିତ ହୋଇଣ ରହିଲା ଲତା ଅନ୍ତରେ ପୁଣି । ୧୮ ।

ତାଙ୍କୁ ଲଭି ଅନୁରାଗ ଲଜ୍ଜା ସଙ୍ଗତେ ମନ
ନିବେଶି ତରୁଣୀ ଯେ ହେନ ନ କରଇ ଗମନ । ୧୯ ।

୧୧—୧—ଢୋଳନ୍ତି ବିବିଧ କୁସୁମ (୨)

ବଣ୍ଟରଇ ଶୃଙ୍ଗୁ ଲୋଚନା ଦେଖି କୁମାର ରୂପ
ସେ ବନେ ପ୍ରବେଶ ଅଭୁତ କାହିଁ ଶୋଭା କଳାପ ।୩୦।

ଜବା ପଞ୍ଚଶର ଅମର— ପଦ୍ମ ରଜନୀକର
ସେ ସ୍ଥଳେ ପ୍ରବେଶ ହୋଇଲେ ଦେଖି ସୁମନୋହର । ୩୧।

ସେ ମାନେ କେହୁ ସେ ନୁହନ୍ତ ସିଦ୍ଧ ଏ ଅନୁମାନ
ଶିବ ଦୁର୍ଗା ବନ୍ଦୁ ଦୁର୍ଲଭ ଯହିଁ ବନ ଲୋଚନ । ୩୨ ।

ସେଥିରେ ସଦା ସଦାଶିବ କରୁଛନ୍ତି ବହାର
ଶିବ-ଅଂଶ ବନ୍ଦୁ ସେ ଶୋଭା ଲବ ହେବ କାହାର । ୩୩ ।

କେଶର ମୂଳ ମରକତ— ଶୃଙ୍ଗୁ ବେଦୀ ଉପରେ
ବଢ଼ୁଅ ମୁଣି ସ୍ୱର୍ଣ୍ଣ ତୁଷ୍ଟ ରଷି ଶୃଙ୍ଗେ ସଧୀରେ । ୩୪।

ସେମନ୍ତେ ମନ-ଗନ୍ଧବନ୍ଧ— ସ୍ମରଣରେ ଲଭକା
ହୋଲାସ୍ୱମାନଙ୍କୁ ଭଜନ୍ତେ ବୃଶ ହେଲେ ବାଳକା ।୩୫।

କଞ୍ଜାନନ ନେତ୍ର ପଡ଼ିଲେ ଚନ୍ଦ୍ରକାନ୍ତି ବଦନେ
ଦରଶନ ମାତ୍ରେ ମାନସ ବଶ ହେଲେ ମଦନେ ।୩୬।

ବଣ୍ଟରେ ଲଭକା-ଗଗନେ ଉଦେ ସମ୍ପୂର୍ଣ୍ଣ ଶଶୀ
ମୋ ନୟନଦ୍ୱନ୍ଦ ଚକୋର— ନନ୍ଦ ପୀୟୂଷରାଶି । ୩୭ ।

ଶୃଙ୍ଗୁ ହରଷ-କ୍ଷୀରନିଧି ସମ୍ମୁଖିକୁ ଭଜଇ
ହୃଦୟ-ଚନ୍ଦ୍ରକାନ୍ତ ମଣି ଦ୍ରବୀଭୂତ ହୋଇଲା ।୩୮।

ସନ୍ତାପ-ଚକ୍ରକୁ ସନ୍ତାପ ଅତିଶୟରେ ଦେଲା
ଧୈର୍ଯ୍ୟ-ନଳିନକୁ ମଳିନ ବହୁ ପ୍ରକାରେ କଲା । ୩୯ ।

୩୨—୨—ଶିବ କୃପା ବନ୍ଦୁ ସଦ୍ଧନ ସେବନ ( କ ) ।
୩୯—୨—ଧର୍ମ ନଳିନକୁ ମଳିନ ( ଗ ) ।

ଜ୍ଞାନ ତମ ନାଶ ହୋଇଲା ହାସ-ଚନ୍ଦ୍ରିକା ଛଳେ
ଯୋଗାସନ ତେଜି ଉଠିଲା ମନହିଜ ବହ୍ନିଲେ । ୪୦ ।

ପାଶେ ମିଳି ତାଙ୍କୁ କହଇ ସ୍ନେହ ମଧୁର ବାଣୀ
ଶୁଣ ରେ ଶୋଭନା-ରମଣୀ— ଗଣୀ-ମସ୍ତକମଣି । ୪୧ ।

କଳଙ୍କ-ରହିତ ଶରଦ— ପୂର୍ଣ୍ଣ ଚନ୍ଦ୍ରବଦନା
କି କାର୍ଯ୍ୟେ ଯେଉଁଥିକୁ ଅଗତ କହ କୁନ୍ଦ-ରଦନା । ୪୨ ।

ହର ଅନୁକମ୍ପା ଅନୁଜ୍ଞା ମୋହୋ ତପସ୍ୟା ଫଳ
ମଣୁଛି ତୋହ ଦରଶନେ ଆଜ ହେଲା ସୁଫଳ । ୪୩ ।

ଯେହା ଶୁଣି ସେ ଲଜ୍ଜାବଶେ ମଉନରେ ରହିଲା
ସଖିଗ କାତରେ ସଲୀଳା— ଖେଳ ନେତ୍ରେ ଗୁହିଁଲା । ୪୪ ।

କୁମାର ବଦନ-ପାଶରେ ନେତ୍ର-ଖଞ୍ଜନ ବେନି
ଅନାୟତ୍ତେ ପଡ଼ି ରହିଲେ ଚଞ୍ଚଳତା ନ ଘେନି । ୪୫ ।

ମନ ଅନୁରାଗ ପ୍ରେମ ବେନି ନେତ୍ର ପ୍ରୀତିବଶରେ
କେହି କାହାକୁ ନ ଛାଡ଼ନ୍ତି ଯେନାଯେନ ଭାବରେ । ୪୬ ।

ଇଙ୍ଗିତ ଭଙ୍ଗୀରୁ ହୃଦୟ ତାର ଜାଣି କୁମର
ଆଲିଙ୍ଗନ କରି ଭୂରତେ ପାନ କଲା ଅଧର । ୪୭ ।

କରେ କର ଧରି କହଇ ପୁଣି ବିନୟ ବାଣୀ
ଘୃଣା-ହୃଦୟା କରୁଣା କର ନବ ତରୁଣୀ । ୪୮ ।

ଚରଣରେ ତୋର ଶରଣ ଗଲି କାମ ଭୟରେ
ନିରାଶ ନ କର ହରଷ— ଚିତ୍ତେ ଗୁହିଁ ସତ୍ୱରେ । ୪୯ ।

୪୪—୨—ସଖିଗ କାନ୍ତ ରସଲୀଳା ଖେଳନେତ୍ରେ ଗୁହିଁଲ ( ଖ )।
୪୯-୨—ନିରାଶ ନ କର ( ଖ )।

ଦେଖିଲା ମାତ୍ରକେ ଲକ୍ଷିଲା ହୃଦେ ତୋ ନେତ୍ର-ଶର
ପ୍ରଭାକର ରୂଚ-ପ୍ରତୀକା ହେଲା ନ କର କର ।୫୦।

ଚଞ୍ଚଳ ନୟନ ! ଅଞ୍ଚଳ ପର ହୃଅ ହୃଦରେ
ଚୂମ୍ବନ ଦିଅ ବିଳମ୍ବ ନ କର କହୁଛି ଥରେ । ୫୧ ।

ଦେଖ ରେ ବନ୍ଧୁ, ତୋ ପାଖରେ ଥାଉ୍ ପୀଡ଼େ ଅନଙ୍ଗ
ରଖରେ ସୁତୀକ୍ଷ୍ଣ ନଖରେ କ୍ଷତ କର ମୋ ଅଙ୍ଗ । ୫୨ ।

ରୁଚିର ବଦନା ଅଚିର କର ସୁରତି ଦିଅ
ନଧର ନବୀନ ଅଧର— ମଧୁପାନ କରିଅ । ୫୩ ।

ଯେମନ୍ତ ପ୍ରକାରେ କହନ୍ତେ ନା ନା ସ୍ନେହ ଉତ୍ତର
ଶିବ ଭବାନୀ କଣ୍ଠ ଦୂରେ ହେଲେ ନେତ୍ର ଗୋଚର ॥

ଦେଖି ସଭୟେ ଚନ୍ଦ୍ରକାନ୍ତ ଝର ସ୍ୱବାସ ପାଣି
କେଶର ମୂଳରୁ ଘେନଲା କରେ ବଢ଼ିଆ ମୂର୍ତ୍ତି । ୫୫ ।

କଣ୍ଠାନନ ନିଜ ଆଶ୍ରମେ ଯାଇ ହେଲା ପ୍ରବେଶ
ଯେ ସମୟେ ହର ଗଉରୀ ଆହି ମିଳିଲେ ପାଶ । ୫୬ ।

ପାର୍ବତୀ ପଛ ପାର୍ବତୀଙ୍କି ପାଶେ ଦେଖି କୁମର
ଆସନରୁ ଉଠି ପ୍ରଣାମ କର ଯୋଡ଼ିଲା କର । ୫୭ ।

ଚନ୍ଦ୍ରକାନ୍ତ ଶିବା ପାଦରେ ବନ୍ଦୁ ପ୍ରଣାମ କଲା
ଲଜ୍ଜାଭୟରେ ସୁମୁଖୀ ଅଧୋମୁଖେ ରହିଲା । ୫୮ ।

ଯେ ଭାବ ଦେଖି ଶିବ ଶିବା ବଦନକୁ ଚାହିଁଲେ
ଦର ହାସରେ ଇଙ୍ଗିତରେ ନେତ୍ରଠାରେ କହିଲେ । ୫୯ ।

କୁମର କୁମାରୀ ଉଭୟେ ହେଲେ ଅତି ଅଧୀର
ତା' ଦେଖି ଶିବ ଅଜ୍ଞାଦେଲେ କହୁ ନୁହ କାତର । ୬୦ ।

ବଧିରେ ତୁମ୍ଭେ ଆମ୍ଭ ଅଙ୍ଗୁ ହୋଇଅଛ ସମ୍ଭବ
ଯେ ଦେବେ ତୁମ୍ଭ ମନୋରଥ ହେଉଛି ସିଦ୍ଧ ନୋହିବ । ୬୧ ।

ତଥାପି ହିଁ ତୁମ୍ଭ ବାଞ୍ଛିତ ଆମ୍ଭେ ସାର୍ଥ କରିବା
ଯେଉଁ ପ୍ରକାରେ ସିଦ୍ଧ ହେବ ତହିଁ ହେତୁ କହିବା । ୬୨ ।

ଆମ୍ଭ ଆଜ୍ଞା ଘେନି ଜନମ ତୁମ୍ଭେ ଲଭ ଅବନୀ
ସେ କାଳେ ତୁହେଁ ପରସ୍ପରେ ହେବ କାନ୍ତ କାମିନୀ । ୬୩ ।

ପୁଷ୍କର ଦେଶେ ପଦ୍ମ କର ନାମେ ଏକ ନଗର
ଦୟାସାଗର ନାମେ ତହିଁ ଖ୍ୟାତ ନୃପଶେଖର । ୬୪ ।

ଧାର୍ମିକ ବିବେକ ଗୁଣରେ ସେହି ସମ ତାହାକୁ
ଉପମା ସୃଷ୍ଟିରେ ଦୃଷ୍ଟିରେ ଲକ୍ଷ ଦେବା କାହାକୁ । ୬୫ ।

ପୁତ୍ରାର୍ଥୀ ହୋଇ ଆମ୍ଭ ପାଦେ ନିତ୍ୟେ ସେବି ସେ ଥାଇ
ତାହାଙ୍କ କୁଳେ ସୁତ ହୋଇ ଜନ୍ମ ହୁଅ ତୁ ଯାଇଁ । ୬୬ ।

ଯେମନ୍ତ ହର ଆଜ୍ଞା ଶୁଣି ଗିରିସୁତା ହରଷ
ଚନ୍ଦ୍ରକାନ୍ତ ମୁଖ ଚାହିଁଣ ଦେଲେ ଯେତେ ଆଦେଶ ॥

କୁମୁଦାକର ନାମେ ଦେଶ ଇନ୍ଦ୍ରବତୀ ନଗରେ
ଭଦ୍ରସେନ ପଟ୍ଟ ମହିଷୀ ସୁକୋମଳା ନାମରେ । ୬୮ ।

ସୁତା ଲଭ୍ୟ ଅଣେ ସେବଛି ବନ୍ଦି ଆମ୍ଭ ପାଦରେ
କୁମାରୀ ହୋଇ ତୁ ଜନମ ଯାଇଁ ତାର ଉଦରେ । ୬୯ ।

କଞ୍ଜାନନକୁ ପତି ରୂପେ ଯଥାକାଳେ ପାଇବୁ
ଯେ ଯିବାନ୍ତ ସିଦ୍ଧ ବଟୁଙ୍କ କହିବାରୁ ଜାଣିବୁ । ୭୦ ।

୬୨-୧—ବାଞ୍ଛିତ କରି ସାର୍ଥ କରିବା ( ଖ ) ।

ଯେତେ ଆଜ୍ଞା ଦେଇ ଶଙ୍କର  ଉମାପୁରେ ପ୍ରବେଶ
ଅନୁକ୍ରମଣୀ ନାମେ ଯେହ୍ନୁ  ସ୍କନ୍ଧ ହୋଇଲା ଶେଷ । ୭୧ ।
ଶରଣ କରି ଶ୍ରୀଚରଣ  ବେନି ଜଗନ୍ନାଥର
ଭଣେ ଯେରସ ପଦ୍ମନାଭ  ବକ୍ରଦୁର୍ଗ ଈଶ୍ୱର । ୭୨ ।

---

# ତୃତୀୟ ଛାନ୍ଦ

ରାଗ—କଲ୍ୟାଣ ଆହାରୀ

ଶୁଣ ହେ ସୁଜନେ ପୁଷ୍କର ଦେଶରେ ପଦ୍ମାକର ନାମେ ନଗର
ଅଚଳା-ଅବଳା-ବଦନ-ମଣ୍ଡଳ ପରାୟେ ଅତି ମନୋହର
ସକଳ, ଲୋକ-ନେତ୍ର ଭୃଙ୍ଗ-ସାରସ
ବିଶ୍ୱକର୍ମା-କର-ଶିଳ୍ପ-କୁଶଳମା ପ୍ରତିବିମ୍ବିତ ଆଦରଶ । ୧ ।

ପରିଖା-ଜଳଧି ମଧ୍ୟରେ ଉନ୍ନତ କନକ ପ୍ରାକାର ସୁଷମା
ଶତଧନୁ ଯୁତ ବଳ ନିଳୟରୁ ଦ୍ୱାରାବତୀ ପୁର ଉପମା
ଅଥବା, ପ୍ରାକାର ପରିଧି ପ୍ରକାର
କଳଙ୍କ-ରହିତ ପୂର୍ଣ୍ଣଚନ୍ଦ୍ର ବତ ଦ୍ୟୋତିତ ଦିଶେ ପୁରବରଂ । ୨ ।

ଦୂର୍ବାଦି ଗୃହଦ୍ୱାରେ ଗୃହ ତୋରଣ ଶକ୍ରଧନୁ-ଶୋଭା-ଖଣ୍ଡିତ
ରଥ୍ୟା ପାଦପ ଶାଖାବନ୍ତ ଉଭୟ ପାଶେ ପତନ ଶତ ଶତ
ଯତନ, ରଚନ ବଢ଼ାଇ ଲୋକନେ
ଅଳକା ସମ୍ପତ୍ତି ଅଳକର ମନେ ମଣନ୍ତି ତହିଁ ପୁର ଜନେ । ୩ ।

ନୃପ-ଅବରୋଧ ମଧ୍ୟରେ ବିବୁଧ-ପଥ ରୁନ୍ଧି ଦିବ୍ୟ ଜଗତୀ
ଆଲୋଚନା କଲେ ଉପମା ତାହାକୁ ନ ଦିଶଇ ତିନି ଜଗତ
ସଂଖ୍ୟାରେ, ସାତପୁର ଯାହା ହୋଇଛି
ସେ ଯେମନ ମିହିପଣେ କି ସପ୍ତଋଷି ପଦରେ ଶିର ଲଗାଇଛି । ୪ ।

ହୀରକ ମାଣିକ୍ୟ ସମଭାଗେ କରି ପ୍ରାସାଦ ନିର୍ମାଣ ହୋଇଛି
ପ୍ରଭାରେ ନିଶି ଦିବସ ପୁଷ୍ପବନ୍ତ ଉଦୟ ଭ୍ରମ କରାଉଛି

୨-୪—ଦ୍ୟୋତିତ ଦିଶେ ପୁର ବର (ବ) ।
୫-୧—କେହିଁ ପ୍ରାସାଦ (ବ) ।

କଳସ, ନୀଳମଣି ପୀତ କେତନ—
କେତନେ ଆଭାସେ ଘନକୋଳେ କସେ ଚଗପ୍ରଭା ଶମ୍ପା କମ୍ପନ ॥
ସ୍ୱଚ୍ଛସନ୍ଧ୍ୟା ଶୋଭା ବହନ୍ତି ଯେଣୁ ସେ ଗନ୍ଧର୍ବ ସ୍ୱନାଶିର ଯୁତ
ସର୍ବଙ୍କ ରାଜା ସେନାନୀ ଗଣାଧିପ ଗୁରୁ କବି ବନ୍ଦ୍ୟ ସତତ
ମାନସେ, ଯେମନ୍ତ ପୁଣି ଅଭାସନ୍ତି
ବଳି ନାଗଗଣ ନିବାସ କାରଣୁଁ ପାତାଳ ପରାୟେ ଦିଶୁଛି । ୬ ।

ଦେଖ ମଥୁରାପୁର ପ୍ରାୟେ ଯେ ପୁର ମନକୁ ମୋର ଆଭାସୁଛି
ଅକ୍ରୂର ଉଦ୍ଧବ ସୁରଥ କଂସାରି ବସୁଦେବ ଶୋଭା ପାଉଛି
ଯେଣୁ ଯେ, ରତ୍ନମାନଙ୍କର ବସତି
ପୋତମାନେ ଗତାଗତ ହୋଇବାରୁ ହୋଇଛି ସାଗର ପ୍ରତୀତି ।୭।

ପୁଣି ଯେ ପୁର ବୃନ୍ଦାବନ ପରାୟେ ହେଉଛି ନେତ୍ରସୁଖୋଦୟ
ହରି ସୁବଳ ବଳ ମଧୁମଙ୍ଗଳ କୋକିଳ ଉତ୍କୁଜ ଆଶ୍ରୟ
ପ୍ରକଟ, ହୋଇଛି ଯହିଁ ଗୋବର୍ଦ୍ଧନ
ଅଶୋକବନ୍ତ ହେବାରୁ ତତ୍ର ଏଥି ହୋଇଛି ସତତ ମଙ୍ଗଳ । ୮ ।

ଯହିଁ ପଦ୍ମାକର ଅତି ମନୋହର ସ୍ୱଚ୍ଛତର ନୀର ପୂରିତ
ପଦ୍ମ କଇରବ ପରାଗେ ପିଶଙ୍ଗ ବର୍ଣ୍ଣ ଦିଶନ୍ତି ମଧୁବ୍ରତ
ଯେମନ୍ତ, ସରସୀ ସଲିଳେ ମିଳିତ
ହଂସୀହଂସ କାମ ଡାହୁକ ଛତ୍ରସୀ କେଳି କରନ୍ତି ଅବିରତ । ୯ ।

ଦିବ୍ୟ ମରକତ ଶିଳାରେ ସୋପାନମାନ ଘଟନା ହୋଇଅଛି
ଛାୟା ଲୋକନରେ ପଥିକଙ୍କୁ ସ୍ଥଳେ ଜଳ ଭ୍ରମ ସେ କରାଉଛି

୪-୫—ନୀଳମଣି ନୀଳ କେତନ (ଖ) ।
୭-୧—ମନକୁ ମୋର ଅପୂର୍ବ (କ) ।
୯-୨—ପଦ୍ମ କଇରବ ପରାଗ ପିଶଙ୍ଗ (କ) ।

ତଟରେ, ପ୍ରକଟ ଉତ୍ତମ ଆଶ୍ରମ
ନାନା ସ୍ୱାଦୁ ଫଳ ଫୁଲଭରେ ତରୁ ହୋଇଅଛନ୍ତି ଅଭିରାମ । ୧୦ ।

କେଉଁ ପ୍ରଦେଶରେ ପ୍ରପାମାନଙ୍କରେ ଜଳଯନ୍ତ୍ରମାନ ବିଧାନ
ହାଟମାନଙ୍କେ ବିପଣୀଶ୍ରେଣୀ କାହିଁ କେତେରୂପେ ଦିଶେ ଶୋଭନ
ବିଚିତ୍ର, ବସନ ରତ୍ନ ଆଭରଣ
ଚନ୍ଦ୍ର ଚନ୍ଦନ ବିବିଧ ଦ୍ରବ୍ୟମାନ ନେତ୍ରମନ ବଶୀକରଣ । ୧୧ ।

ମେଘ ପରିଯେ କେ ଦିଶୁଛି ମାନସ ନେତ୍ରକୁ ବଶ କରୁଅଛି
ସିତ ପୀତ ନୀଳ ଲୋହିତ ଯେ ଆଦି ବର୍ଣ୍ଣକୁ ଅମ୍ବରେ ଧରିଛି
ପୁଣି କେ' ଅବଳା ସ୍ୱରୂପ ବହିଛି
କୁଚ-ସମ୍ପୁଟକ ତାରତର ମୋତି ହାରରେ ମଣ୍ଡିତ ହୋଇଛି । ୧୨ ।

କେବଣ ବିପଣୀ ଶିବ ପ୍ରାୟେ ମଣି ଅଙ୍କରେ ଥିବାରୁ ଗଉରୀ
ଚନ୍ଦ୍ର କି ବିଭାବସୁ ନେତ୍ରସୁଖଦ ଶ୍ରୀ ଶଙ୍ଖ କମଳକୁ ଧରି
ନକ୍ଷତ୍ର, ମାଳା ଥିବାରୁ କେ ଅକାଶ
ରାମ ସୀତା ବିଳାସରୁ କେ ହୋଇଛି ଅଯୋଧ୍ୟା ନଗରୀ ସଦୃଶ ।୧୩।

ଦେଖ ଯେ ବିପଣୀ ବହୁରୂପ ପୁଣି ବହିଛି ସୁଚିର ବର୍ଣ୍ଣିକେ
ଭୁବ ସ୍ୱର୍ଗ ଶୋଭା ଅଟବୀ ସୁପ୍ରଭା ସାକ୍ଷାତ ଜାତ ଯେମନ୍ତରେ
ପୁଣି ସେ, ହୋଇଅଛି କାବ୍ୟ ପ୍ରକାର
ଉଜ୍ଜ୍ୱଳ ସୁବର୍ଣ୍ଣ ପଦାର୍ଥ ସଙ୍କୀର୍ଣ୍ଣ ଶୋଭିତ ନାନା ଅଳଙ୍କାର । ୧୪ ।

—(ବିରୋଧାଭାସ)—

ଯହିଁ ପୁରଜନେ ପ୍ରତିଦିନେ ଦାନେ କରୁଛନ୍ତି ଧନ ବର୍ଜନ
ଦିନେହେଁ ସେମାନେ ପ୍ରାଣୀମାନଙ୍କରେ ମନେ ନ କରନ୍ତି ବର୍ଜନ

୧୧-୧—କେଉଁ ପ୍ରଦେଶରେ (କ) । ୧୩-୨ – ଚନ୍ଦ୍ରା କି ବିଭାବସୁ (କ) ।
୧୩-୪—ଅଯୋଧ୍ୟା ନଗର (ଖ) । ୧୪—୧ ସୁରଚିବର୍ଣ୍ଣିରେ (କ) ।
୧୪-୨—ଭୁବ ସ୍ୱର୍ଗ ବଭା···ଖ୍ୟାତ ଯେମନ୍ତରେ (କ) ।
୧୫-୧—ଯେଉଁ ପୁରଜନେ (କ) । ୧୫-୨—ପ୍ରାଣୀମାନଙ୍କରେ ମନେ (କ)

ତାହାଙ୍କ ହୃଦୟ ମାନସ ତରଳ
ହେଲେହେଁ କେବେହେଁ ବଶରୁ ଯେମାନେ ନହନ୍ତି ମାନସ ତରଳ ।୧୬
ଯହିଁ ନଗରେ ପ୍ରତି ନିକେତନରେ ପୂର୍ଣ୍ଣ ହୋଇଛନ୍ତି ବାଳକ
ଯତ୍ନପୂର୍ବ କରି ଖୋଜିଲେହେଁ ତହିଁ ନ ଦେଖିବା ଯେତିକ ବାଳକ
ମାର୍ଗଣ, ଶତସହସ୍ର ହୋଇଛନ୍ତି
ଯହିଁ ପୁରଜନେ ପୁର ଦ୍ୱାରେ ଧନେ ମାର୍ଗଣଙ୍କୁ ଦେଖି ନାହାନ୍ତି ।୧୭।
ପିଶୁନ ବୋଲି ବୋଲନ୍ତେ ସେ ନଗରେ କୁଙ୍କୁମକୁ ମାତ୍ର ଜାଣନ୍ତି
ନୈନ ପରଭୃତ ବୋଇଲେ ଯେ ଗର୍ବ କୋକିଳକୁ ମନେ ମଣନ୍ତି
ଅଙ୍ଗକୁ, ବୋଲନ୍ତି କେବଳ ପ୍ରତୀକ
ଯେ ବିନା ତହିଁରେ କାହାରି ବିଷୟେ କୋହନ୍ତି ଯେ କେହି ପ୍ରତୀକ।୧୭
ବକ୍ର ସେ ପୁରେ ସୁନ୍ଦରୀମାନଙ୍କର ଅଳକା ଭ୍ରୂବଲ୍ଲୀ କଟାକ୍ଷ
କୁଟିଳ ଉନ୍ନତ ଚଞ୍ଚଳ ତାହାଙ୍କ ଚିକୁର ପୟୋଧର ଅକ୍ଷ
ଅତ୍ୟନ୍ତ, କୃଶତର କଟୀ ଉଦର
ମନ୍ଦ ଗତି ହାସେ ପ୍ରକାଶ ହୋଇଛି କମ୍ପ କେବଳ ତହିଁ ଦର।୧୮।
ମାର ଧର ବୋଲି ବୋଲନ୍ତି ତହିଁରେ ମନସିଜ ମହୀଧରକୁ
କଳ ବୋଲି ତହିଁ କୁସୁମ କୋରକ ବିଗ୍ରହ ବୋଲି ଶରୀରକୁ
ପୁଲକ,-କୁଳକୁ ବୋଲନ୍ତି କଣ୍ଟକ
ଯେ ବାହାରେ ତହିଁ ନ ଜାଣନ୍ତି କେହି ସ୍ୱପରଚକ୍ରଜ କଣ୍ଟକ ।୧୯

୧୭-୪—ନହନ୍ତି ଯେ କେହି ପ୍ରତୀକ ( କ ) ।
୧୮-୧—ଅଳପ ଭ୍ରୂବଲ୍ଲୀ ( ଖ )
୧୮-୨—କୁଟିଳ ଉନ୍ନତ ଚଞ୍ଚଳ ( ଖ )
୧୮-୪—ମନ୍ଦଗତି ହାସେ କଂପୁ କେବଳ ତହୁଁ ଦର ( କ )
୧୯-୧—ବୋଲନ୍ତି ଯହିଁରେ ( କ )

ଅବନୀଦେବ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚତୁର୍ବର୍ଣ୍ଣ ଯଥାଧର୍ମରେ
ଅଛନ୍ତି ଅଷ୍ଟାଦଶ ସଂଖ୍ୟା ଜାତିକ ଯଥୋଚିତ ସ୍ଥାନ କ୍ରମରେ
ସକଳେ, ଯେ ଯାହା ବୃତ୍ତିରେ କୁଶଳ,
ନ ଥିଲା ହୋଇ ସେ ପୁରେ ଦ୍ରବ୍ୟ ନାହିଁ ଯେ ଅଛି ଅବନୀମଣ୍ଡଳ ।୨୦
ଦୟାସାଗର ନାମେ ତହିଁ ନରେଶ ସକଳ ଗୁଣେ ନିରୁପମ
ରିପୁ-ନୃପ-ଦ୍ୱିପ-ଦର୍ପ-ବିଧ୍ୱଂସନେ ପଞ୍ଚାସ୍ୟ କଳ୍ପ ପରାକ୍ରମ
ଯାହାଙ୍କ, ପ୍ରତାପ-ତପନ-ଉଦୟ
ଦେଖି ଦ୍ୱିଷ-ବଣ ତମିସ୍ର ପର୍ବତେ ଗିରି ଗୁହା କଲେ ଅଶ୍ରୟ । ୨୧
ଆସମୁଦ୍ରାନ୍ତ ଅବନୀମଣ୍ଡଳେ ସେ ଅଟନ୍ତି ଏକ ଚକ୍ରବର୍ତ୍ତୀ
ଦଶ ପ୍ରତିଆଶା ପୂର୍ଣ୍ଣ ହୋଇ ସୁରାଳୟେ ମିଳିଲା ଯାଙ୍କ କୀର୍ତ୍ତି
ତହିଁରେ, ସ୍ଥାନ ହେଣୁ ତାକୁ ନୋହିଲା
ଯେ ହେନ ଯଶ ସ୍ଥିତିରୁ ଅଂଶମାନ ନାନାରୂପେ ଖ୍ୟାତ ହୋଇଲା ।୨୨
ଚନ୍ଦ୍ର ହୋଇ ସାନ୍ଦ୍ରତମ ନାଶି କେତେ ଆକାଶ ମଣ୍ଡଳ ମଣ୍ଡିଲା
ସ୍ୱର୍ଣ୍ଣଦୀ ଛଳେ ସକଳ ଲୋକ ପାପ ମହୀରେ ପ୍ରସରି ଖଣ୍ଡିଲା
ଥେକାଏ, କଇଳାସ ନାମେ ପ୍ରକାଶ
ବିଶେଷ ଶେଷ ଭୁଜ ଶେଷ ରୂପରେ ପାତାଳରେ କଲା ନିବାସ ।୨୩
ଅଙ୍କାକୁ ଯାହାର ନରପତି ବାର ଅବଜ୍ଞା କରି ନ ପାରନ୍ତି
ସ୍ନେହ ହେନ ପାରୁଶରେ ନିରନ୍ତରେ ସୈନ୍ୟ ହେନ ସେବିଥାନ୍ତି
ଦୟାଳୁ, କ୍ଷମାଶୀଳ ମହାବିବେକ
ନୟ-ନିପୁଣ ପାଳନ୍ତି ପ୍ରଜାଗଣେ ପୁତଙ୍କୁ ଯେମନ୍ତ ଜନକ । ୨୪ ।

୨୧-୩—ତାହାଙ୍କ ପ୍ରତାପ ତପନ ଉଦୟେ ( କ )
୨୩-୪—ବିଶେଷ ଶେଷ ହେଉ ( ଖ )
୨୪-୧—ଅଙ୍କକୁ ଯାହାର ବଳିଚେଳିବାଇ ( କ ) ।

ଶୋଭା ବିଳାସ ମାଧୁର୍ଯ୍ୟ ତେଜ ଧୈର୍ଯ୍ୟ ଲଳିତ ମାଙ୍ଗଲ୍ୟ ଔଦାର୍ଯ୍ୟ
ସତ୍ତ୍ୱଜ ଯେ ଅଷ୍ଟଗୁଣେ ପରିପୂର୍ଣ୍ଣ ଶକ୍ରପଦଜିତ ଐଶ୍ୱର୍ଯ୍ୟ
ସକଳ, ଶାସ୍ତ୍ର କଳାରେ ବିଚକ୍ଷଣ
କୃତୀ କୁଳୀନ ବିଦଗ୍ଧ ଶୀଳବନ୍ତ ଧୀରୋଦାତ୍ତ ଆଦି ଲକ୍ଷଣ । ୧୫ ।

ବଦାନ୍ୟଗୁଣକୁ ସମ ନୋହନ୍ତି ତାଙ୍କ କାମଧେନୁ କଳ୍ପପାଦପ
ତ୍ରପାବଶ ହୋଇ ମହୀରେ ନ ରହି ଆଶ୍ରୟ କଲେ ଦିବିଷ୍ଟପ
ଅପରେ, ବଳୀ କର୍ଣ୍ଣ ଆଦି ଯେତେକ
ସଂଖ୍ୟାରେ ସେତ ବିଦିତ ହୋଇଛନ୍ତି ଯେହ୍ନା ଲକ୍ଷ୍ୟ ଦେବା କେତେକ ॥

ଧନୁର୍ବିଦଗଣ ଗଣନାରେ ତାଙ୍କ ଧନଞ୍ଜୟାଦି ହେବେ ଊଣା
ବିଷୟବର୍ଗର ପର୍ଯ୍ୟାଲୋଚନାରେ ଧୀଷଣାକୁ ବଳି ଧୀଷଣା
ଅଖିଳ, —ଗୁଣ ଥିଲେହେଁ ସେ ନରେଶ
ପୁତ୍ରବନ୍ତ ନୋହିଥିବାରୁ ମାନସେ ଚିନ୍ତା ପୂରିଥାଇ ଅନିଶ ।୧୭।

ଷଷ୍ଠି ଅଧିକ ତିନିଶତ ରାଣୀରେ ପଞ୍ଚମହିଷୀ କୃଷ୍ଣପ୍ରିୟା
ସପତ୍ନୀଗଣେ ଭଗ୍ନୀସମାନୁରାଗ ସୁଶୀଳା- ସରଳ-ହୃଦୟା
ସର୍ବାଙ୍ଗ, ସୁନ୍ଦରୀ ରୂପେ ନିରୁପମା
ନୃପ-ଶୁଦ୍ଧାନ୍ତ-ଅନ୍ତରୀକ୍ଷେ ଖେଳେ କି ଚଉଣଶୂନ୍ୟ ପୂର୍ଣ୍ଣ ଚନ୍ଦ୍ରମା ।୧୮।

ସମସ୍ତେହେଁ ପତିବ୍ରତରେ ତତ୍ପରେ ନିବେଶି କାୟମନ ବୁଦ୍ଧି
ନୃପସତ୍ତମ ସେବାରେ ମଜ୍ଜିଥାନ୍ତି ସର୍ବେ ହୋଇ ପୁତ୍ର ସଂଶ୍ରବି
ଯେଣୁ ସେ, ନରେଶ ଦର୍ପଣ ନାୟକ
ପ୍ରମଦାବୃନ୍ଦ ପ୍ରମୋଦ ପ୍ରକାଶନ୍ତ ଫୁଲ ଶିଳୀମୁଖ ପ୍ରାନ୍ତକ । ୧୯ ।

୧୬-୧—ସମ ନାହିଁ ତାଙ୍କୁ ( ଗ )
୧୭-୨—ବିଷୟା ବିଷୟ ( କ )

ସୁତ ଜନ୍ମ ବାଞ୍ଛାକରି ସେ ରାଜନ ଶିବସେବାରେ ଦେଇ ମନ
ମହାରଜତ ପଞ୍ଚବକ୍ତ୍ର ପ୍ରତିମା ପୂଜାକରନ୍ତି ପ୍ରତିଦିନ
ବ୍ରାହ୍ମଣେ, ବରଣ ହୋଇ ଶତ ଶତ
ମୃତ୍ତିକା-ଶଙ୍କର ପୂଜା ପଞ୍ଚାକ୍ଷର ଜପ କରନ୍ତି ଅବିରତ । ୩୦ ।
ବିଧି ବିଧାନକୁ ଉତ୍ସାହରେ ତାଙ୍କୁ ଦ୍ୱିଗୁଣ ଦକ୍ଷିଣା ଦିଅନ୍ତି
ଯେନ୍ତେ ଯେତେ ଦ୍ୱିଜଗଣେ ମହା ସନ୍ତୋଷ ହୋଇ ଆଶୀର୍ବାଦ କରନ୍ତି
ଯେନ୍ତେ ରୂପେ, ଗଲା ତହିଁ କେତେ ଦିବସ
ମାଧବ ମାସ ଅସିତ ପକ୍ଷ ଚତୁର୍ଦ୍ଦଶୀ ଆସି ହେଲା ପ୍ରବେଶ । ୩୧ ।
ସେ ଦିନ ରାଜନ ନାନା ଉପାଯନମାନଙ୍କେ ଶିବ ପୂଜା କଲେ
ବ୍ରତ ବିଧିରେ ଜାଗରମାନ ହୋଇ ନିଶାରେ ଉଜାଗର ହେଲେ
ଅଖଣ୍ଡ, ପୁଣ୍ଡରୀକ-ଚର୍ମ ଆସନେ
ବସି ଈଶରୂପ ଧ୍ୟାନେ ପଞ୍ଚାକ୍ଷର ଜପ କରନ୍ତି ଯେନ୍ତେକମନେ । ୩୨ ।
ଯେନ୍ତେମନ୍ତ ଯେନ୍ତେକନିଷ୍ଠ ଭକ୍ତି ତାଙ୍କର ଜାଣି ଶିବ ହେଲେ ପ୍ରସନ୍ନ
ପଞ୍ଚବକ୍ତ୍ର ବୃଷାସନେ ନିଜରୂପେ ସାକ୍ଷାତରେ ଦେଲେ ଦର୍ଶନ
ବୋଇଲେ, ଶୁଣ ହେ ଅବନୀପାଳକ !
ବାଳକଅର୍ଥୀ ହୋଇ ତୁମ୍ଭେ ଆମ୍ଭଙ୍କୁ ସେବା କରୁଅଛ କାଳକ ॥
ଆଗତ ମଧୁମାସରେ ପୁତ୍ରଜାତ ହୋଇବ ତୁମ୍ଭର ଅବଶ୍ୟ
ଆମ୍ଭ ଅଂଶରେ ନନ୍ଦନ ଜନ୍ମ ହେବ ନ ମଣିବ ତାକୁ ମନୁଷ୍ୟ
ଅଚଳା, — ରକ୍ଷଣରେ ହେବ ସେ ଦକ୍ଷ
ସୁରାସୁର ନର ଗନ୍ଧର୍ବ କିନ୍ନର କେହିଁ ନୋହିବେ ତାକୁ ଲକ୍ଷ୍ୟ । ୩୪ ।

୩୪-୧—ଅଗାମୀ ମଧୁ ମାସରେ ( କ )
୩୪-୨—ନ ମଣିମ ତାକୁ ( ଖ )
୩୪-୪—ସୁରାସୁର ନର ( କ )

ନିଜରୂପ ଦେଖି ହର୍ଷମେ ରାଜନ ଆନନ୍ଦେ ଅସନୁ ଉଠିଲା
ସର୍ବଙ୍କୁ ଦଣ୍ଡ ପ୍ରଣାମ କରି ଉଭା ହୋଇ ବହୁତ ସ୍ତୁତି କଲା
ନନ୍ଦନ, ଜନ୍ମଦେବା ଯହୁଁ ଶୁଣିଲେ
ଶ୍ରୁତି ମୁଖରେ ପୀୟୂଷ ପାନକଲା ପରାୟେ ମାନସେ ମଣିଲେ ।୩୬।

ସଦାଶିବ ଶିବ ମନୋରଥ ସାର୍ଥ କରି ଅନ୍ତର୍ଦ୍ଧାନ ହୋଇଲେ
ଯେ ଅନ୍ତେ ନରେଶ ହରଷ ମାନସେ ଅବରୋଧେ ଯାଇ ମିଳିଲେ
କହିଲେ, ମହିଷୀଙ୍କି ସବୁ ଚରିତ
ଯେଉଁ ପ୍ରକାରେ ପ୍ରସନ୍ନ ହୋଇ ତୋଷେ ଅଜ୍ଞାଦେଲେ ନୀଳଲୋହିତ ॥

ରଜନୀ ବେଳା ଯାମରେ ସ୍ବୟ ହର ସ୍ବପନେ ହୋଇଲେ ପ୍ରବେଶ
ପଞ୍ଚବକ୍ତ୍ର ଅର୍ଦ୍ଧ ଚନ୍ଦ୍ରମା-ମୁକୁଟ ସ୍ମିତ ସୁନ୍ଦର ଦନ୍ତବାସ
ବୋଇଲେ, ଶୁଣ ହେ ଅବନୀପାଳକ
ବାଳକଅର୍ଥୀ ହୋଇ ତୁମ୍ଭେ ଅମ୍ଭଙ୍କୁ ସେବା କରିଅଛ କାଳକ ॥

ଆଗତ ମଧୁ ମାସରେ ପୁତ୍ରଲାଭ ହୋଇବ ତୁମ୍ଭର ଅବଶ୍ୟ
ଅମ୍ଭ ଅଂଶରେ ନନ୍ଦନ ଜନ୍ମ ହେବ ନ ମଣିବ ତାଙ୍କୁ ମନୁଷ୍ୟ
ଅଚଳା, ରକ୍ଷଣରେ ହେବ ସେ ଦକ୍ଷ
ସୁରାସୁର ନର ଗନ୍ଧର୍ବ କିନ୍ନର କେହି ନୋହିବେ ତାକୁ ଲକ୍ଷ୍ୟ । ୩୮

ଶୁଣି ସକଳ ମହାଦେଈ ନରେଶ ମୁଖରୁ ସହରଷବାଣୀ
ଉଚ୍ଛୁଳିତ ହୋଏ ଯଥା କ୍ଷୀରସିନ୍ଧୁ ସୁଧା-ଦୀଧିତି ଉଦେ ଜାଣି
ଯେ ଅନ୍ତେ, ଗଲା ତହିଁ କେତେ ଦିବସ
ଶୁଭେ ବାର ତିଥି ତାର ଚନ୍ଦ୍ରଲଗ୍ନ ଯୋଗେ ହୋଇଅଛୁ ପ୍ରବେଶ

୩୯-୨—ଉଚ୍ଛୁଳିତ ହୋଇ । ଖ ।
୩୯-୪—ଯୋଗ ହୋଇଅଛି । ଢ ।

ସେ ଦିନ ରଘୁନାଥ ହୋଇ ରଜନୀପ୍ରବେଶରେ ପଟ୍ଟମହିଷୀ
ସଉଧ ପ୍ରାଙ୍ଗଣେ ଚନ୍ଦ୍ରମା କିରଣେ ପଲଙ୍କ-ଅଙ୍କେ ଛନ୍ତି ବସି
ଯେମନ୍ତେ, ପ୍ରବେଶ ହୋଇଲେ ନରେଶ
ଦମ୍ପତୀ ସୁରତି-ସଂପତ୍ତିରେ ମାତି ରଜନୀ କଲେ ଅବଶେଷ । ୪୦ ।

ସେ ଦିନୁ ଇନବଂଶ ସୁତ ମହିଷୀ ଗର୍ଭରେ ଆସି ବାସକଲା
ଯେହୁ କାରଣୁ ସୁନ୍ଦରୀ ଅଙ୍ଗମାନ ଆନ ଆନଶୋଭା ଦିଶିଲା
କ୍ରମଶ, କଟୀଦେଶ କୃଶ ତ୍ୟଜିଲା
ତ୍ରିବଳୀ ବ୍ୟକ୍ତ ନୋହି ତୁଚ୍ଛ ଉଦର ସ୍ଥୂଳ ଭାବକୁ ଭଜିଲା ॥

ଦହକ ହେମ କୋମଳ ସୁତନୁରେ ପାଣ୍ଡିମା ଆସି ପ୍ରକାଶିଲା
ଯେହୁ ଯେନ ବେନ କୁଚ ଦନ୍ତିଦନ୍ତ-ସଂପୁଟକ ପ୍ରାୟେ ଦିଶିଲା
ଅଗ୍ର ତା, ଅସିତ ଭାବ ବୃଦ୍ଧି ହେଲା
ରଜତ ବେନ ସ୍ୱୟଂଭୂ ଶମ୍ଭୁ ଶିରେ କସ୍ତୁରୀ ଚିହ୍ନ କି ଶୋହିଲା । ୪୧ ।

ଶ୍ରୀ ଅଙ୍ଗ ଅଳସ ହୋଇ ଧନ ଧନ ଗତି ମନ୍ଦ ମନ୍ଦ ହୋଇଲା
ମୃତ୍ତିକା ଅଦନ କରିବା ଆଶାରେ ମତି ଅତି ପ୍ରୀତି ବଳିଲା
ସମସ୍ତ, ଦ୍ରବ୍ୟହିଁ ଅରୁଚି ହୋଇଲା
ଶଯ୍ୟା ପଲଙ୍କ ତେଜିଣ ଅବନୀରେ ଶୟନେ ମତି ବଳାଇଲା । ୪୩ ।

ଯେହୁ ଅନୁକ୍ରମେ ଅଷ୍ଟମ ନବମ କଷ୍ଟ ବଶେ ଶେଷ ହୋଇଲା
ଦଶମ ମାସରୁ ଦଶ ଦ୍ୱିଗୁଣିତ ଦିବସ ଶୁଭେ ଭୋଗ ଗଲା
ଚଇତ୍ର, ସିତେତର ପକ୍ଷ ଦ୍ୱିତୀୟା
ବୃହସ୍ପତି ବାର ତାରାତାର ସଙ୍ଗେ କନ୍ୟାଚନ୍ଦ୍ର ଯୋଗେ ପ୍ରୀତ୍ୟା ।

ମାଟି ମଧି ପ୍ରୀତି ବଢ଼ିଲା ( କ )।

ଏମନ୍ତ ଦିବସ ତିନି ଦଣ୍ଡ ଶେଷ ମୀନ ଲଗ୍ନ ମଧ୍ୟଗତରେ
ଜନ୍ମ ହୋଇଲେ ନୃପସୁତ ଭାର୍ଗବ ଅଛନ୍ତି ଲଗ୍ନ ସଙ୍ଗତରେ
ତୃତୀୟେ, ଅଛନ୍ତି ସିଂହିକା-ତନୁଜ
ପଞ୍ଚମରେ ଗୁରୁ ସପ୍ତମେ ଚନ୍ଦ୍ରମା ଦ୍ୱାଦଶେ ବୁଧ ଗ୍ରହରାଜ । ୪୫
ଲଗ୍ନ ଏକାଦଶେ ମକରେ ମଙ୍ଗଳ ଦଶମେ ସ୍ଥିତି ଶନିଶ୍ଚର
ନବମେ କେତୁ ନବଗ୍ରହେ ଏରୂପେ ହୋଇଅଛନ୍ତି ଶୁଭତର
ରାଜାଧି-ରାଜ ଯୋଗ ନାମ ଯେହାର
ଏ ଯୋଗରେ ଯେ ଜନ୍ମହେଲେ ମହୀରେ କି ଅସାଧ୍ୟ ଅବା ତାହାର ।
ଧାଇଁ ମୃଦୁସ୍ୱଲୀମାନେ ଦେଖିଯାଇଁ ପ୍ରତିହାରୀ ଆଗେ କହିଲେ
ସକଳ ଆନନ୍ଦ-ଦାୟକ ନନ୍ଦନ ଜନ୍ମିଲେ ଜଣାଅ ବୋଇଲେ
ଶୁଣି ସେ, ହରଷେ ସତ୍ୱରେ ଚଳନ୍ତି
ଶିରେ କରଦେଇ କୃତାଞ୍ଜଳି ହୋଇ ନୃପ ଛାମୁରେ ଜଣାଇଲା ।୪୬।
ଶୁଣ ହେ ଦେବ ନୃପଶିରୋମଣି ହକାରି ମୃଦୁସ୍ୱଲୀ ମୋତେ
କହିଲେ ଏକ ନନ୍ଦନ ଜନ୍ମ ହେଲା ଜଣାଅ ନରେଶ ଅଗ୍ରତେ
ଏସନ, ଶୁଣି ବସନ ଅଳଙ୍କାର
ଶ୍ରୀଅଙ୍ଗୁ ଉଲ୍ଲଗି ହୋଇ ଆନନ୍ଦରେ ଦତ୍ତ କଲେ ନୃପଶେଖର ॥
ଏମନ୍ତେ ରାଜନ କୋଟିଏ ସୁବର୍ଣ୍ଣ ମନେ ବିପ୍ରଙ୍କୁ ଦତ୍ତ କଲେ
ଭିତ୍ତି ହରଷରେ ଅତି ବିନୟରେ କୁମାରକୁ ଯାଇଁ ଦେଖିଲେ
ଲକ୍ଷଣ,ପ୍ରତି ଅଙ୍ଗେ କରି ଲୋକନ
ହରିହର ବର ମନେ ଭାବି ମୁଦ-ଉଦଧିରେ ହେଲେ ମଗନ । ୪୭
ଅଥାନ୍ତେ ଧାତ୍ରୀ ପାଳନ୍ତୀମାନେ ମିଳି ନାଭିଛେଦନ କର୍ମକଲେ
ମନୋଜ୍ଞ ବାସ ଜଳେ ସ୍ନାନ କରାଇ ବସନେ ସର୍ବାଙ୍ଗ ପୋଛିଲେ

୫୦-୧—ଧାତ୍ରୀ ପାଳତୀମାନେ (କ)

ସୁବାସ,ତଇଲ ତନୁରେ ବୋଳିଲେ
ଚନ୍ଦନଇନ୍ଧନେ ଅଗ୍ନି ଲଗାଇ ଯଥୋକ୍ତ ବିଧିରେ ସେକିଲେ ।୫୦।
ଛିଲା ଚୂଡ଼ାଇ ଘିଁର ବିନ୍ଦୁମାନ କେ କୁମାର ମୁଖେ ନେଇ ଦେଲେ
ଗଣ୍ଡୂଷମାନ ମହିଷୀଙ୍କି ଦେଇ କେ ଅଗ୍ନି ତଇସ୍ଥା ଆରମ୍ଭିଲେ
ମୃଦୁଳ, ଶେଯେ ସୁତଙ୍କୁ ଶୁଆଇଲେ
ଯଥୋଚିତରେ ସୂତିଗୃହ ବିଧାନେ ସମସ୍ତେ ନିଯୁକ୍ତ ହୋଇଲେ ।୫୧।

ନୃପସତ୍ତମ ହରଷେ ଯେତୁ ସମୟେତୁ ବାହାରେ ଅବକାଶ ହେଲେ
ବିପ୍ରଙ୍କୁ ଅଣାଇ ସକଳ ସୁବର୍ଣ୍ଣଦକ୍ଷିଣା ସହିତରେ ଦେଲେ
ଗାୟକ, ନଟ ଭାଟ ଆଦି ଯାଚକ
ଯେ ଯାହାରେ ମନୋରଥ ପୂର୍ଣ୍ଣ ହୋଇ ଲଭିଲେ ଦ୍ରବିଣ ଅନେକ ॥
ନଗର ହାଟ ବଜାର ଲୁଟିକର ବୋଲି ଲୋକଙ୍କୁ ଆଜ୍ଞା ଦେଲେ
ଜୁର ପଦାର୍ଥ ଯାହାର ଯେତେ ତାଙ୍କୁ ଦ୍ୱିଗୁଣେ ଭଣ୍ଡାରରୁ ଦେଲେ
ଦରିଦ୍ର-ଗଣରେ ରତ୍ନବୃଷ୍ଟି କଲେ
ନୃପ ସୁତ ଜନ୍ମ ଶୁଣି ସେ ନଗର ସର୍ବଜନେ ସୁଖୀ ହୋଇଲେ ।୫୩।
କ୍ରମେ ପଞ୍ଚ ରାତ୍ର ଷଷ୍ଠୀ ଗୃହ କର୍ମ ବିଧିମତେ ସିଦ୍ଧ ହୋଇଲା
ସପ୍ତମ ଦିବସ ପ୍ରବେଶେ ମହିଷୀ ସ୍ନାନବିଧି ଶୁଦ୍ଧେ ବସିଲା
ଜନନୀ,-ଜନକ ଆନନ୍ଦ ଦାୟକ
ଦିନକୁ ଦିନ ବୃଦ୍ଧି ହୋଏ କୁମର ସିତ-ପକ୍ଷଚନ୍ଦ୍ର ପ୍ରାୟକ । ୫୪।
ଏମନ୍ତେ କେତେ ଦିନାନ୍ତରେ ହୋଇଲା ଏକବିଂଶରାତ୍ର ପ୍ରବେଶ
ନାମ କରଣ ବିଧାନରେ ମହତ ଉତ୍ସାହ ମାନସ ନରେଶ
ହକାରି, ପୁରୋହିତ ବିପ୍ର-ଗଣଙ୍କ
କୁଳ ପରମ୍ପରା କ୍ରମେ ବିଚାରିଲେ ନାମକର୍ମ ବିଧି ଜାତକ ।୫୫।

୫୦-୪—ଯଥୋକ୍ତ ବିଧିରେ (ଖ)

ଜ୍ୟୋତିଃଶାସ୍ତ୍ର ମର୍ମ ପାରଗ ତାହିଁକି କହଇ ନରେଶ ଛାମୁରେ
ଧରାରେ ଏକଚକ୍ରବର୍ତ୍ତୀ ହେବ ଯେ ଯେ ଯୋଗ ଅଛି ଜାତକରେ
ପ୍ରତ୍ୟେକ, ଲକ୍ଷଣ କରି ଅଲ୍ଲୋକନ
ଶ୍ରୁତିସାଗର-ମନ୍ଦର-ପୁରୋହିତ କହନ୍ତି ଶୁଣ ହେ ରାଜନ । ୫୬ ।
ମହାପୁରୁଷ ଯେ ଜନ୍ମ ହୋଇଛନ୍ତି ଲକ୍ଷଣଁ ହେଉଛି ପ୍ରତୀତ
ବକ୍ଷ ନାସା ମୁଖ ଅଂଶ କକ୍ଷୀ ନଖ ସ୍ୱଭାବେ ହୋଇଛି ଉନ୍ନତ
ବିସ୍ତାର, କଟୀ ଲଲାଟ ବକ୍ଷ ତିନି
ନଖ ଜିହ୍ୱା ତାଳୁ ଅଧର ନେତ୍ରାନ୍ତ ଶୋଣତା କର ପାଦ ଘେନି । ୫୭ ।
ଦୀର୍ଘ ନାସା ହନୁ ଭୁଜ ନେତ୍ର ଜାନୁ ଖର୍ବ ଗ୍ରୀବ ଜଙ୍ଘା ମେହନ
ଗମ୍ଭୀର ନାଭି ସ୍ୱର ସତ୍ତ୍ୱ ଯେ ତିନି ସୂକ୍ଷ୍ମ ଲୋମ ଚର୍ମ ଦଶନ
ଅଙ୍ଗୁଳି, ପର୍ବ ସନ୍ଧିରେ ଗୁରୁ କେଶ
ସାମୁଦ୍ରିକ ମତେ ପ୍ରକାଶ ହୋଇଛି ଗୁଣୋତ୍ଥ ଲକ୍ଷଣ ବତିଶ । ୫୮ ।
ଅକୋତ୍ଥ ଚରଣ କରେ ଦେଖ ଶଙ୍ଖ ଚକ୍ରପଦ୍ମାଦିରେ ଲକ୍ଷିତ
ଯେହୁ ସକାଶୁ ଜାଣୁଛନ୍ତି ଯେ ସର୍ବ ସଲକ୍ଷଣେ ପରିପୂରିତ
ଯେମନ୍ତ, କହି ଅଳଙ୍କାର ମଣ୍ଡିଲେ
ବିଧିମତେ ଉକ୍ତ ହେଲି ପଦ୍ମଧ୍ୱଜ ନାମ ବୋଲିଣ ସର୍ବେ ଦେଲେ । ୫୯ ।
ପୁରୋହିତ ଜଉଡିଷ ଧନ ବସ୍ତ୍ର ପାଇ ମେଲାଣି ହୋଇଗଲେ
ଯେ ଅନ୍ତେ ସକଳ ମାତୃଗଣ ମିଳି କୁମାରଙ୍କୁ କୋଳେ ଧଇଲେ
ଆନନ୍ଦେ, କଲ୍ୟାଣମାନ ବାଞ୍ଛା କଲେ
ରବି ଉଦୟରେ ତୁଷାର ପରି ଯେ ଚିନ୍ତାଚୟ ମନୁ ତେଜିଲେ । ୬୦ ।
କହେ ବାଙ୍କୀଶ କୁମାର ଜନ୍ମ ଗର୍ଭୋଦୟ ଛନ୍ଦ ନାମ ଯେହାର
ନିର୍ବିଘ୍ନେ ଶେଷ ହୋଇବ ଯେବେ କୃପା କରିବେ ଶଙ୍ଖଚକ୍ରଧର
ସଜ୍ଜନେ, ନ ଧରିବ ଦୋଷ ମୋହର
ଅଥାନ୍ତେ ଯେଥି ଚରିତ ଅବ ଛନ୍ଦେ ଶୁଣିମ ଅତି ମନୋହର । ୬୧ ।

---

# ଚତୁର୍ଥ ଛାନ୍ଦ

ରାଗ—ଅଷାଢ଼ ଶୁକ୍ଳବାଣୀ

ଏଥି ଅନ୍ତେ ବହୁଦିନ ଅନ୍ତରେ । ଚନ୍ଦ୍ରମା ଯେହ୍ନେ ଦ୍ୱିତୀୟା ତିଥିରେ
ବଢ଼େ ଯହିଁରୂପେ ଦିନକୁ ଦିନ । ସେପରି ଦିଶିଲ ନୃପ-ନନ୍ଦନ
ନୂତନ ମଦନ । ଜନମାନସ-ନୟନ-ବନ୍ଦନ । ୧ ।
କ୍ଷଣକୁ କ୍ଷଣ ଆନ ଆନ ଦିଶେ । ଉପମା ଦେବା ମନକୁ ନ ଆସେ
ସଂସାର ସାର ଶୋଭା ପୁଞ୍ଜୀଭୂତ । ରସା ରୂପାର ସେ କେବଳ ଆଗତ
ସେହ୍ନ ବିନା ମାନସେ । ଆନ ଉପମା ନ ଦିଶଇ ଲେଶେ । ୨ ।
ବଢ଼ିଲା ଯହୁଁ ତାଂ ନାମ କରଣ । ବଳିଲା ଅଙ୍ଗ ସୁଷମା ଦ୍ୱିଗୁଣ
ଜିଣିଲା ସହଜେ ଦୀପ୍ତି ଦିନକର । ଜିଣିଲା ଚନ୍ଦ୍ର ଶ୍ରୀହିଁ ସ୍ନିଗ୍ଧଙ୍କର
ସେହ୍ନେ ବିଚାରିଲେ । କାମ କି ରଖିବ ସେ ଯୁବା ହେଲେ । ୩ ।
ଚତୁର୍ଥ ମାସେ ଚତୁଷ୍ଟ ନିକର । କୁମରବରକୁ କରି ବାହାର
ଅନ୍ନପ୍ରାଶନ ବିଧି ଷଷ୍ଠ ମାସେ । କଲେ ନରବର ଅତି ହରଷେ
ତୋଷି ପୁରଜନ । ବଢ଼ିଲା ଉତ୍ସବ ଦିନକୁ ଦିନ । ୪ ।
ଯେମନ୍ତେ ଗଲା ପଞ୍ଚମ ବରଷ । ବିଦ୍ୟା ଅଭ୍ୟାସେ ଉତ୍ସୁକ ନରେଶ
ଗଣକ ପୁରୋହିତ ସୂତ ଡାଇ । ଆଜ୍ଞା ଦେଲେ ବିଦ୍ୟା ପଢ଼ାଅ ନେଇ
ସେହ୍ନେ ମାତ୍ର ଶୁଣି । କୁମର କର ଧରିନେଲେ ପୁଣି । ୫ ।
ପ୍ରଥମ୍ ଖଡ଼ି ଛୁଆଁଇଲେ ନେଇ । ତଦନ୍ତରେ ଅଭିଧାନ ପଢ଼ାଇ
ଦେଖିଲେ ବୁଦ୍ଧି ଅତି ବିଚକ୍ଷଣ । ପଢ଼ାଇଲେ କୁମର ବ୍ୟାକରଣ
ଗୁରୁମୁଖୁଁ ଯାହା । ଥରେ ଶୁଣିଲା ମାତ୍ରେ ଆସେ ତାହା । ୬ ।
ଯେମନ୍ତେ ବହୁଦିନ ଶେଷ କଲେ । ନ୍ୟାୟ ମୀମାଂସାଦି ଶାସ୍ତ୍ର ପଢ଼ିଲେ
କାବ୍ୟ ନାଟକ ଅଳଂକାର ଯେତେ । ଦେଖିଲାକ୍ଷଣି ଆସିଲା ଭୂଗତେ
ଗୁରୁ ତୋଷ ହୋଇ । ଉପବିଦ୍ୟାରେ ଅଭ୍ୟାସ କରାଇ । ୭ ।

ଜ୍ୟୋତିଷ ଖଡ଼୍ଗ ପିଙ୍ଗଳ ସଙ୍ଗତେ । ପଢ଼ାଇଲେ ବିଦ୍ୟାନ୍ତ ଥିଲା ଯେତେ
ଆଶ୍ଚର୍ଯ୍ୟ ହୋଇ ଅନାୟାସେ ହେଲା । ଭୂଲ ଜିବେଷ୍ୟ ନୋହିବ ନ ଥିଲା
କି କହିବା ଶୁଣ । ସକଳ ଶାସ୍ତ୍ରେ ହୋଇଲେ ନିପୁଣ । ୮ ।

ଯେମନ୍ତ ଜାଣି ପୁରୋହିତ ସୁତ । କୁମର ବରକୁ ଘେନି ସଙ୍ଗତ
ନୃପ ସମ୍ମୁଖେ ପରବେଶ ହୋଇ । ସକଳ ବିଦ୍ୟା ପରୀକ୍ଷ କରାଇ
ଶୁଣି ନରଈଶ । ଅଧିକ ମନରେ ହେଲେ ହରଷ । ୯ ।

ଯେ ଅନ୍ତେ ସଚିବ-ସୁତ ସଙ୍ଗରେ । ଖଡ଼୍ଗ ବିଦ୍ୟା ବିଚିତ୍ର ପ୍ରକାରେ
ସାଧନ କରି ତା' ଅଭ୍ୟସ୍ତ କଲେ । ଗଦା ମୁଦ୍ଗର କୁନ୍ତ ବିଦ୍ୟା ଭୁଲେ
ଛୁରିବିଦ୍ୟା ଯେତେ । ଥିଲା କରଗତ କଲେ ତୁରିତେ । ୧୦ ।

ଯେ ଉତ୍ତାରୁ ମଲ୍ଲ ବିଦ୍ୟା ସାଧିଲେ । ଶିଖାଣ ଚକା ବରଛା ଢୋଳିଲେ
ସ୍ତମ୍ଭ ସାଧନରେ ହେଲେ ନିର୍ଜିତ । ଗୁଳୁଚ୍ଛ ଲେଜିମ ଆଦି ସମସ୍ତ
କଲେ ଜୟଲଭେ । ଦିନକୁ ଦିନ ତେଜ ବଳ ଦିଶେ । ୧୧ ।

କୋଦଣ୍ଡ ବିଦ୍ୟା ଯେ ଉତ୍ତାରୁ ସାଧି । ଦୁର୍ଦଣ୍ଡ ଶର ଯାର ମନବେଧି
ଆମସ୍ଥନକୁ ମଞ୍ଚେ କେ ସରି । ବଳକୁ ଯାର ନାଉନ କେଶରୀ
ଛୁରି ଆଦି ବାଣ । ସନ୍ଧି ବିନ୍ଧିବାରେ କି ଭୀଷ୍ମ ଦ୍ରୋଣ । ୧୨ ।

ବାଛି କରି ଅଶ୍ୱମାନ ଅଣାଇ । ଗୁଣ ଦୋଷ ଚହ୍ନି ଚଢ଼ିବା ପାଇଁ
କୃଷ୍ଣ ତାଳୁଶ୍ୱାନ ଦନ୍ତ ମୃଷଲୀ । ତେଜନ୍ତି ଏ ଆଦି ଦୋଷ କରାଳ
ବାଛି ତାଜୀ ବାଜୀ । ତୁରୁଙ୍ଗ ଶ୍ରେଷ୍ଠ ଚଢ଼ୁଥାନ୍ତି ସାଜି । ୧୩ ।

ନିର୍ଜିତ ହୋଇଲେ ବିଦ୍ୟା ନିକରେ । ବର୍ଜିତ କରି ଦୋଷଚୟ ଦୂରେ
ସର୍ଜିତ କରି କଉତୁକ ସୀଣ । ଅର୍ଜିତ ମହା ପ୍ରତାପ କୀରତି
ହେଲା ବଳାଳାରେ । ଗଲା ସୁଯଶ ପ୍ରସରି ବିଶ୍ୱରେ । ୧୪ ।

ମସ୍ତରେ ଅଦ୍ଭୁତ ଯେ ଶୋଭାରାଶି । ମୂର୍ତ୍ତିବନ୍ତ ହୋଇ ପ୍ରକାଶେ ଆସି
ଦେଖ ଯେ ମୁଖ ପୂର୍ଣ୍ଣ ହରିଣାଙ୍କ । ତହିଁ କଳଙ୍କ, ଯେହ୍ନ ଅକଳଙ୍କ
ଅନ୍ତର କଥାଯେ । ରାତ୍ର ଦିବସ ମଳିନତା ନୋହେ । ୧୫ ।

ଅଧର ଅରୁଣ ହୋଇଛି ଆଭା । ଜାଣି ବିବସେ ସମାନ ତା ଶୋଭା
କର-କୋକନଦ ଯେହ୍ନ ପ୍ରକାରେ । ସମ ତା ପ୍ରଫୁଲ୍ଲ ଅଛି ଅଧରେ
ତା କେଶ ଶୃଭୁଷା । ସିହ୍ନକେଯ ଭୃଙ୍ଗ ସମ କେ କର । ୧୬ ।

ଯେକାଦଶମ ବରଷେ ରତୀଶ । ନୃପସୁତ ଅଙ୍ଗେ କଲା ନିବାସ
ଦିନୁଦିନ ଶତେ ଗୁଣେ ସୁନ୍ଦର । ହେଲା ରମଣୀ-ନେତ୍ର ମନୋହର
ନୟନ ଖଞ୍ଜନ । ପାଶ ହୋଇଲା ନରେଶ ନନ୍ଦନ । ୧୭ ।

ମନ୍ତ୍ରି-ନନ୍ଦନଙ୍କୁ ଘେନି ସଙ୍ଗତେ । ଆବର ସଖାମାନଙ୍କ ସହିତେ
କୁସୁମ କାନନେ ନରେଶ ସୁତ । ବୁଲି ଆନନ୍ଦ ମନେ ଅବିରତ
ସେ କଉତୁକରେ । ନେଉଥାନ୍ତି ଦିନ ଯେହ୍ନ ପ୍ରକାରେ । ୧୮ ।

ଯେହ୍ନରୂପେ କେତେଦିନ ଅନ୍ତରେ । ଚଇତ୍ର ଅସିତ ଚତୁର୍ଦ୍ଦଶୀରେ
ଶଙ୍କର ପୂଜାକୁ ନରେଶ ସୁତ । ମନ୍ତ୍ରି-ନନ୍ଦନଙ୍କୁ ଘେନି ସଙ୍ଗତ
ପୁରୋହିତ ସୁତ । ପୂଜା ସମ୍ଭାର ଘେନାଇ ସଙ୍ଗତ । ୧୯ ।

ଆଶ୍ରମ ମଧ୍ୟ ମଣ୍ଡପକୁ ଗଲେ । ମୃତ୍ତିକା ଶଙ୍କର ନିର୍ମାଣ କଲେ
ଇଷେକ ଚମ୍ପା ବେଲପତ୍ର ଲକ୍ଷେ । ଦେଇଣ ପୂଜା କଲେ ବିରୂପାକ୍ଷେ
ଯଥୋଚିତ ବିଧି । ସବୁ କରନ୍ତି ହୋଇଣ ସଶ୍ରଦ୍ଧି । ୨୦ ।

ପୁରୋହିତ ସୁତ ପୂଜା ଅନ୍ତରେ । ପ୍ରସାଦ ଦେଲା ନୃପସୁତ କରେ
ଘେନିଣ ଶିରେ ଲଗାଇ କୁମର । ସ୍ତୁତି କରଇ ଅପାରୁ ଅପାର
ମାଗଇ ସେ ବର । ହର ପ୍ରସାଦ ବାଞ୍ଛା ପୂର୍ଣ୍ଣିକର । ୨୧ ।

ଯେବେ ଅନ୍ତେ ନରେଶବର କୁମର । ମନ୍ତ୍ରି-ନନ୍ଦନର ଧରି ଶ୍ରୀକର
ପ୍ରବେଶ ହେଲେ କୁସୁମ କାନନ । ଦେଖିଲେ ଫୁଟିଛନ୍ତି ପୁଷ୍ପମାନ
ମଧୁକର ବୃନ୍ଦ । ବେଢିଅଛନ୍ତି ହୋଇଣ ଅନନ୍ଦ । ୨୨ ।

ଦେଖିଣ କହଇ ମନ୍ତ୍ରି-କୁମର । ତୁମ୍ଭେ କଥା ଏଥି କର ଫଗ୍ଗର
ଶୁଣିଲେ ବିଷାଦ ଲଭିବ ସିନା । କେ ପୁଣି ହରି ପାରିବ ବେଦନା
ଯେଣୁ ନ କହିବା । ନ କହିଲେ ଖେଦ ଲଭିବ ଅବା ୨୩ ।

ଶୁଣ ହେ ମିତ୍ର ଏଥିର ଚରିତ । ପ୍ରୀତି ବଶେ ହୋଇଛନ୍ତି ଉନ୍ମତ୍ତ
ଭ୍ରମର ବନା ପୁଷ୍ପର କି ଗତି । କୁସୁମମାନେ ଯେହ୍ନାଙ୍କ ଯୁବତୀ
ସେ ଶୁଣିଲା ମାତ୍ରେ । ଅନଙ୍ଗ ପୀଡ଼ିଲା କୁମର ଗାତ୍ରେ । ୨୪ ।

କହୁଁ କହୁଁ ରୋମ ପୁଲକ ହେଲା । ଅଙ୍ଗ ପାଣ୍ଡୁର ଭାବକୁ ବହିଲା
ନୟନରୁ ନୀର ହୋଇଲା ଜାତ । କାତରେ କମ୍ପମାନ ହେଲା ଗାତ୍ର
ଦମ୍ଭ ହତ ହେଲା । ଦୁଃସହ ମୋହ-ନିଦ୍ରା ଆକର୍ଷିଲା । ୨୫ ।

ଯେହ୍ନା ଦେଖି ମନ୍ତ୍ରୀବର ନନ୍ଦନ । ବିରସ ହୋଇ ବସିଲା ବଦନ
କୁମର ଶିର ଜାନୁପରେ ଦେଇ । କରଣି କମଳ ଦଳେ ବିଞ୍ଚଇ
ଆଉ ସଖାମାନେ । ଶୀତଳ ଜଳ ଛିଞ୍ଚିଲେ ବଦନେ । ୨୬ ।

ମନ୍ତ୍ରୀସୁତ ପୁଣି ମିତ୍ରଙ୍କୁ ଶୁଣି । ବୋଲେ ପମାର ନୀର ଅଣ ଯାଇଁ
କେ ଯାଇଁ ଉଶୀର ପଟୀର ଅଣ । ଦେଇଣ ରଖିବା କୁମର ପ୍ରାଣ
ସେ ଶୁଣି ସମସ୍ତେ । ଅଣିବାକୁ ଗଲେ ଯେ ଯାହା ମତେ । ୨୭ ।

ଏହି ସମୟରେ ଶୁଣ ଅଦ୍ଭୁତ । ବୃଷଭ ଆରୋହି ପାର୍ବତୀନାଥ
ସର୍ବାଙ୍ଗ ଶୋଭା ବିଭୂତି ଲେପନ । ଅନଳ ଶିଖା ପରିଯେ ଲୋଚନ
ଭାଳ ଅନର୍ଗଳା । ହୃଦରେ ସର୍ପହାର ମଣିମାଳା । ୨୮ ।

କଣ୍ଠିରେ ଭୁଜଙ୍ଗ-କୁଣ୍ଡଳ ଶୋହେ । ଗଣ୍ଡମଣ୍ଡଳକୁ ଆବୋରି ରହେ
ଭସ୍ମ ଅଙ୍ଗେ କାଳୀ ଲଲାଟ ପଟେ । ଲମ୍ବିତ ଜଟା ଅବନୀରେ ଲୋଟେ
ଅଳ୍ପ ମନ୍ଦହାସ । କସ୍ତୁରୀ ରେଖା ଜିଣି ଦାଢ଼ି ନାଶ । ୨୯ ।

ଖଣ୍ଡଚନ୍ଦ୍ରମା ବିରାଜେ ମସ୍ତକେ । ପାଶ ଡମ୍ବରୁ ତ୍ରିଶୂଳ ହସ୍ତକେ
ବଳୟ ବାହୁଟୀ କଙ୍କଣଗଣ । ପାଦେ ନୂପୁର ବାଜେ ରୁଣଝୁଣ
ସ୍ୱଗଣ ସଙ୍ଗତେ । ଉଭା ହୋଇଲେ କୁମର ଅଗ୍ରତେ । ୩୦ ।

ତା ଚିତ୍ରେ ଦେଲେକ ଅଭୟ କର । ବୋଲନ୍ତି ଉଠ ହେ କୁମରବର
କିପାଇଁ ହୋଇଛୁ ଏତେ ଦୁଃଖିତ । ତୁ ତ ଆମ୍ଭର ଅଟୁ ବର ପୁତ୍ର
ଯେବେକ ହନକଠରେ । ଆସ୍ମ ଭ୍ରମନ୍ତେ କଉତୁକରେ । ୩୧ ।

ଚନ୍ଦ୍ରକାନ୍ତ ଥିଲା ଗିରିଜା ସଙ୍ଗେ । କୁତୁକେ ଲୁସୁପ ଖେଳନ୍ତେ ରଙ୍ଗେ
ହେ ନେତ୍ର ପଡ଼ିଲା ତାହା ବଦନେ । ସେହି ତେତେ ବଶ ହେଲା ମଦନେ
ସେ ଗୃହାନ୍ତେ ବସି । ତୁହି ତାହା ପାଶେ ମିଳିଲୁ ଆସି । ୩୨ ।

କହିଲୁ ତୁ ବହୁ ବିନୟ ଗୀର । ଆଲିଙ୍ଗନକୁ ପ୍ରସାରିଲୁ କର
ଯେ ସମସ୍ତେ ଆମ୍ଭେ ନେତ୍ର ଗୋଚର । ହୁଅନ୍ତେ ଲଜ୍ଜାରେ ହେଲ ଅନ୍ତର
ଦେଖିଣ ଯେ ଖାତ । ଆଜ୍ଞା ଦେଲୁ ଚିତ୍ତେ ନ କର ଭୀତ । ୩୩ ।

ଯେ ଚନ୍ଦ୍ରକାନ୍ତ ଉମା ଅଂଶେ ଜାତ । ତୁହି ତ ଆମ୍ଭ ଶ୍ରୀଅଙ୍ଗୁ ସମ୍ଭୂତ
ଯେ ଯେତେ ତୁମ୍ଭ ବେନି ମନୋରଥ । ଯେ ଜନ୍ମରେ ଅତି ନୋହିବ ସାର୍ଥ
ଆମ୍ଭ ଆଜ୍ଞା ଯେତେ । ତୁ ଯାଇଁ ଜନମ ହୁଅ ଅବନୀ । ୩୪ ।

ଯେ ରାଜା ଅପୁତ୍ରିକ ହୋଇଥିଲା । ବହୁ କ୍ଲେଶରେ ଆମ୍ଭଙ୍କୁ ସେବିଲା
ତେଣୁ ପୁତ୍ରକର ଲଭିଲା ତୋତେ । ସେ କନ୍ୟା ଜାତ ହୋଇଛି ଏ ମର୍ତ୍ତ୍ୟେ
ପାର୍ବତୀ ଆଦେଶେ । ଜାତ ହୋଇଅଛି ଯେକ ପ୍ରଦେଶେ । ୩୫ ।

ଭୁ ତାକୁ ଯେଉଁ ପ୍ରକାରେ ଲଭରୁ । ସେ ସିଦ୍ଧିବନ୍ତ ସେ କରିବେ ସବୁ
ପଞ୍ଚାକ୍ଷର ମନ୍ତ୍ର ସେ ମାଳ ଯେନ । ଜପ କଲେ ଅବି ମିଳିବେ ବେନ
ରୁଦ୍ର ଗଙ୍ଗାଧର । ଦାସ ନାମ ଖ୍ୟାତ ଏ ଦୁହିଁଙ୍କର । ୩୬ ।

ସେତେ ଆଜ୍ଞା ଦେଇ ପାର୍ବତୀସାଇଁ । ମିଳିଲେ କୁମାର ପାଶରେ ଯାଇଁ
ରୁଦ୍ରାକ୍ଷ ଅକ୍ଷମାଳା ସନ୍ତୋଷରେ । ସମର୍ପଣ କରି କୁମାର କରେ
ହେଲେ ଅନ୍ତର୍ଦ୍ଧାନ । ନିଜ ନିଳୟକୁ କଲେ ଗମନ । ୩୭ ।

ଏ ଅନ୍ତେ ନରେଶବର କୁମର । ଚେତନା ଲଭି ଉଠିଲେ ସତ୍ୱର
ନେତ୍ରଯୋଡ଼ ଚଉଦିଗକୁ ଚାହିଁ । ଯାହା ଦେଖିଲେ ତାହିଁ କିଛି ନାହିଁ
ହୋଇଣ ଚକିତ । ବସ୍ତୁରେ ଦେଖିଲେ କି ଅଚମ୍ଭିତ । ୩୮ ।

ପୁଣି ବିଚାରଇ ନୃପତି ସେହୁ । ମୋହେଣ ନିଦ୍ରା ଆକର୍ଷିଲା ଯହୁଁ
ତେଣୁ ସ୍ୱପନେ ଦେଖିଲି ସେମାନ । ସତ ହେବାକୁ ମୁଁ ତ ଭାଗ୍ୟହୀନ
ସେଣୁ ସତ ନୋହେ । ତଥାପି ଅଛି ଆଦ୍ଭୁତ କଥା ସେ । ୩୯ ।

ସାକ୍ଷାତେ ଈଶ୍ୱର କହିଲେ ମୋତେ । ଦେବ ଆଜ୍ଞା ମିଥ୍ୟା ହେବ କେମନ୍ତେ
ସେ ଯେବେ ନଷ୍ଟେ ସ୍ୱପନ ହୁଅନ୍ତା । ସେ ମାଳ କାହିଁ ମୋ ହସ୍ତେ ଥାଆନ୍ତା
ସେଣୁ ସତ୍ୟ ହେବ । ହର ବରରୁ ଅଭାଗ୍ୟ ଲସିବ । ୪୦ ।

ସେତେ ଭାଳି ମନ୍ତ୍ରୀ ସୁତକୁ କହି । ବୋଲଇ ମିତ୍ର ଆସ ବେଗ ହୋଇ
ଶୂଳପାଣି ମୋତେ ପ୍ରସନ୍ନ ହେଲେ । ଏ ମାଳ ଗୋଟି ମୋ ହସ୍ତରେ ଦେଲେ
ସିଦ୍ଧିବନ୍ତ ହୁଇ । ନାମ ଧରି ମୋତେ ଦେଲେ ଚାଳାଇ । ୪୧ ।

ବୋଇଲେ ଏହାଙ୍କ ନାମରେ ଯେବେ । ଜପ କରିବୁ ଏ ମିଳିବେ ତେବେ
ତୋ ମନୋରଥ ସେ କରିବେ ପୂର୍ଣ୍ଣ । ସେମନ୍ତ କହି ହେଲେ ଅନ୍ତର୍ଦ୍ଧାନ
ଶୁଣି ମନ୍ତ୍ରିସୁତ । ଖେଦ ତେଜି ମୋଦ ହେଲେ ଭୂତେ । ୪୨ ।

ବେନ ସଖୀଏ ତହୁଁ ମେଳ ହୋଇ । ଯେ ଯାହାପୁରେ ପରବେଶ ଯାଇଁ
ନିଜ ବିଧାନ ବିଧାନରେ ପାଶ । ଯେମନ୍ତେ ଶେଷ ହୋଇଲା ଶର୍ବରୀ
ଉଦୟ ଦିନେଶ । ପଲଙ୍କ ତେଜି ଉଠିଲେ ନରେଶ । ୪୩ ।

ଈଶ୍ୱର ବଶରୁ ଭାବ ହୃଦର । ସଙ୍କେତ ସ୍ମର ହୋଏ କାତର
ମନ୍ତ୍ରିଙ୍କୁ ପିବ୍ବବଣ୍ଠ ଆଗତ । ଆର ସ୍ଥାନରେ କହିବା ଚରିତ
ବଙ୍କ ଦୁର୍ଗ-ଈଶ । ଭଣନ୍ତି ପଦ୍ମନାଭ ସ୍ନେହ ରସ । ୪୪ ।



# ପଞ୍ଚମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଏଥୁ ଅନନ୍ତରେ ନରେଶ-ନନ୍ଦନ ମନ୍ତ୍ରିସୁତ ସଙ୍ଗତରେ
ବିଗ୍ରହ କରେ କୁମାରୀ-ରତନକୁ ପାଇବା କେଉଁ ପ୍ରକାରରେ । ୧ ।
ଏହା ଶୁଣି ମନ୍ତ୍ରିନନ୍ଦନ କହନ୍ତି, ହର ଆଜ୍ଞା ଦେଲେ ଯାହା
ଏ କାନ୍ତରେ ବସି ଏ ମାଳ ଘେନିଣ ଜପ କର ମିତ୍ର ତାହା । ୨
ମହାଦେବ ଆଜ୍ଞା ଅବଜ୍ଞା ନୁହଇ ସନ୍ଦେହ ନ କର ବନ୍ଧୁ
ସିଦ୍ଧବନ୍ତ ଆସି ପ୍ରବେଶ ହୋଇବେ ଏହି ଅନୁକୂଳ ଅଛି । ୩ ।
ଏସନ ଶୁଣି ନରପତି ନନ୍ଦନ ସ୍ନାନ ଦେବାର୍ଚ୍ଚନ ସାରି
ଯଥାବିଧି କରି ପଞ୍ଚାକ୍ଷର ମନ୍ତ୍ର ମାଳ ଘେନି ଜପ କରି । ୪ ।
ଏହି ସମୟରେ ଈଶ୍ୱର ଆଜ୍ଞାରେ ସିଦ୍ଧବନ୍ତ ପରବେଶ—
ହୋଇଣ କହନ୍ତି ନରେଶ ନନ୍ଦନ ! କହ କି ଅଛି ମାନସ । ୫ ।
ଏହା ଦେଖି ନୃପ ନନ୍ଦନ ଉଠିଣ କଲେ ବେଗେ ନମସ୍କାର
ଚରଣ ଧୋଇ ଶରଣ ପଶି କର କହେ ବିନୟ ଉତ୍ତର । ୬ ।
କେଉଁ ରୂପେ କନ୍ୟା ରତନ ପାଇବା ଯତନ ଏଥିରେ କର
ଉତ୍ତର ଦେଲେ-ଈଶ୍ୱର ନୋହେ ବାଳା, ପାଇବ ନୁହ ଆତୁର ।।
ଗନ୍ଧର୍ବବର ଗନ୍ଧର୍ବୀ ବର ବଂଶୁଁ ଇନ୍ଦ୍ରବତୀ ପୁରେ ଜାତ
ସୁକୋମଳା ଗର୍ଭୁଁ ଜନମ ହୋଇଛି ଚନ୍ଦ୍ରସେନ ତାର ତାତ । ୮ ।
ଯାହାକୁ ନୟନେ ଦେଖି ନ ରହିବ ମାନ ବରମାନବର
ତାହାକୁ ମହୀରେ ସମାନ ଅଛି କେ ବର ବର-ବରନାର । ୯ ।

୭-୧—ଯେଉଁ ରୂପେ ବାମା—ରତନ (ବ)

ସୁନ୍ଦରୀଗଣ ଗଣନାରେ ନ ଥିବ ପୁରନ୍ଦରପୁରେ ଜଣେ
ଶୋଭା-ଅରମ୍ଭା ରମ୍ଭା ଯା ପାଦ ଲକ୍ଷ୍ୟ ରଖିବ ରଢକେ କିଣେ
ଯହିଁରେ କୃଶ ସୁନ୍ଦର ତହିଁ କାହିଁ ଅସୁନ୍ଦର ଅବକାଶ
ମନ୍ଦ ଅମନ୍ଦ ଭାବକୁ ଭଜେ ଯହିଁ କୁଟିଳ ଶୋଭା ବିଶେଷ ।୧୧।

ଦରଷ ରୂପ ସେ ବରଷ ଚଉଦ ପରଶ କଳ୍ପନ ଆପେ
ଲଳିତ କେଶ ତା ଦଳନ୍ତ ଦେଲ୍ପନ ଦଳିତ ଅଞ୍ଜନ ବଣି ।୧୨।

ଅଳକା ଅଳକାରେ ଦେଖି ନ ଥିବା ଚଳେକେ କରିବ ଲକ୍ଷ୍ୟ
ମାନସେ ଆଭାସେ କିନ୍ନର ଯୁବତୀ କିନ୍ନର ଗନ୍ଧର୍ବ ଯକ୍ଷ । ୧୩ ।

ଭୂରୁକୁ ହୁରୁ କୁସୁମଧନୁ କହି ଯାହା ଯେହ୍ନେ ଅବବେକ
ପ୍ରକର୍ଷ-କଣ୍ଠକ-ଶୋଭ ମୋହନୀର ଲପନ-ବିଧୁ କଳଙ୍କ । ୧୪ ।
ବଦନ ମଦନ-ନର ଆଦରଣ ଆଦରଣି ହସେ ନୋହେ
ପ୍ରଭାବ ତାହାର ସ୍ୱଭାବ ନୁହଇ ଉପାଧିରୁ ଜ୍ୟୋତି ବଢ଼େ । ୧୫ ।

ନୟନର ଗତି ଦେଖିଲେ ତାହାର ନୟ—ନର ଯିବ ଭଳ
କିରମବନ୍ତ ସେ ଭରମ-ବରନା ହେବ ତାର ଜୀବ ଭଙ୍ଗ । ୧୬ ।
ମଣିଙ୍କ ଅପୁଷ୍ଟ ଶୁଣିକ ଉପମା ଶୁଣିରେ ଆଉ ନ ଥିବ
ଅଳପ ନୁହଇ ଫଳ ପରି ବହି କଳପରେ ନ ଗଢ଼ିବ । ୧୭ ।

କୁଚରେ ଦୃଷ୍ଟି ପଡ଼ିଲେ ତାକୁ ସମ ମଞ୍ଚରେ ଆଉ ନ ଦେଖି
ଦଣ୍ଡରେ ସନ୍ଧି ରହି ନାହିଁ ଯାହାକୁ ଉଚିତରେ ମନର ଯୋଖି ।୧୮।
କୁରଙ୍ଗ-ନୟନ ତରଙ୍ଗ ମଦନ ଭୁଜଙ୍ଗ ଆଡ଼ିବ ନାହିଁ
ଖଞ୍ଜନ କି ତେଡ଼େ ରଞ୍ଜନ ହୋଇବ ଅଞ୍ଜନରେ ଶୋଭା ବହି ।।

ମଧୁର ତା ଓଷ୍ଠରୁ ଅଧର ଦେଖିଲେ ଅଧର ବିମ୍ବ ହୋଇବ
ବଳିତ ମୃଣାଳ ବାହାରେ ଉପମା ବାହାରେ ଆଉ ନ ଥିବ । ୨୦

ପ୍ରତି ପ୍ରତୀକକୁ ପ୍ରତି ପ୍ରତିବଧି ଉପମାନ ମାନ କଲେ
ଦଶପାଞ୍ଚ ଛାନ୍ଦେ ଶେଷ ନ କରିବେ ଶେଷ ବସି ବର୍ଣ୍ଣିଲେ ।୨୧।

କୁହା ନ ଯିବ ବଚନେ ସେ ଯେମନ୍ତ ମହାମହୀନ୍ଦ୍ର-କୁମାରୀ
ଯାହା ଭାଗ୍ୟଥିବ ସାହା କରିତାକୁ ହେବ ଦୂରସିନ୍ଧୁ ପାରି ।୨୨।

ଈଶ୍ୱର ଅନୁଗ୍ରହ ବିନା ନବୀନା ପ୍ରାପତ ହେବା କଠୋର
ଭାଗ୍ୟ ଥିଲେ ତାକୁ ଯୋଗ୍ୟ ହୋଇ ତୁମ୍ଭେ ଭୋଗ କରିବ କୁମର
ଏମନ୍ତ ସିଦ୍ଧ ବନ୍ଧୁ ମୁଖୁଁ ଶୁଣି ସେ ଧୀମନ୍ତ ମୁକୁଟ ମଣି
ସରଳ ହୃଦୟ ସ୍ମରଶର—ବଶୁ ତରଳ ହୋଇଲା ପୁଣି । ୨୪ ।

ସୁନ୍ଦରୀ-ପ୍ରଶଂସା-ସାନ୍ଦ୍ର-ଚନ୍ଦ୍ରକରେ ଆନନ୍ଦ-ସିନ୍ଧୁ ଉଚ୍ଛୁଳ
ବନ୍ଧୁବଚନ ତରଣି ତାପେ ପୁଂସ ମନ ଲବଣୀ ତରଳ । ୨୫ ।
କରି ଏକଥା ବୋଲିଣ ବେଗେ ସିଦ୍ଧ କରଚରଣକୁ ଧରି
ଅଙ୍ଗନା ଅଙ୍ଗ-ନାବରେ ବାରେ କରି ମଦନ ସରିତ ପାରି । ୨୬

ଭାସିଲା ଭେଳା ଦୃଶିଲା ନାଡ଼ୀ ଦେଖ ହଣିଲା ନାହିଁ ତ ଦଗ
ଉରୁ ତ ବର-ତରୁଣୀ ସବୁ ମୋର କର ତ ବନ୍ଧନ ଯୋଗ ।

ବିଲମ୍ବ ହେଲେ ବିଲମ୍ବକେଶୀ ସଙ୍ଗ ରହିବ ନାହିଁ ମୁଁ ଜୀବେ
ନ କର ମଠ କରକ-ରଦନୀଙ୍କ ଦେଖାଅ ରଖାଅ ଯେବେ ।

ଯେମନ୍ତ ଶୁଣି ଗୁଣି ପୁଣି ହୃଦରେ ବନ୍ଧୁ ସନ୍ଧୁ ଗ୍ରନ୍ଥ କହେ
ଚତୁର ତୁମ୍ଭେ ଆତୁର ହୋଇବାତ କଥିତ ଉଚିତ ନୋହେ ॥

ତପରେ ଯହିଁ ଯୁବତୀ ଭୋଗ ହୋଏ ତାପରେ କି ତାକୁ ଲଭ
ଆପରେ ନେହ ନ ବୁଡ଼ାଅ ହେବ ସେ ଅପରେ ତୁମ୍ଭ ବଶ୍ୟା ॥

ଯେମନ୍ତ କହି କୁମାର ରୂପ ଲିହି ପଟେ ବନ୍ଧୁ ବନ୍ଧୁଆରେ
ରଖିଲା ଲେଖିଲା ନୟନେ ରୂପକୁ ଚିତ୍ର ବଚନ ହେଉବେ । ୩୧ ।

ଅନୁକୂଳ କଲାବେଳେ ବନ୍ଧୁ ଯୁବା ମନକୁ ପେଷି ସଙ୍ଗତେ
କହିଲା "ଆସିବା ଯାଏ ଜୀବେ ଥିବ ଏ ବଗ୍ରର କନ୍ଦ ମୋତେ' ।୩୨
ସନ୍ନ୍ୟାସୀ ଭାଷିଲେ, "ତପନକୁ ତାର ସ୍ୱପନରେ ଦେଖାଇବ
ସେହି ତୁମ୍ଭଙ୍କୁ ଯେପରିକେ ଦେଖିବ ହରି ନେବେ ଏକ ଦେଖା ।୩୩ ।
ସାକ୍ଷାତ ପରି ଆଲିଙ୍ଗନଚୁମ୍ବନ କୋଳେ ଆଣି ବସାଇବ
ନାରୀରତନ ରତି ନ ଦେଉ ନଣି ଇଚ୍ଛିତରେ ହତ ହେବା ୩୪ ।
ଯେ ଉତ୍ତାରୁ ହରବର ବର୍ଣ୍ଣି ତାକୁ ସହଜେ ଭୋଗ କରିବ
ଅଳପ ଦିନେ ଅବଳା ବଲା-ବାଣୀ ଶ୍ରବଣ ପଥେ ଶୁଣିବ । ୩୫ ।
ଯେମନ୍ତ କହି ଅନ୍ତର ହେଲା ବନ୍ଧୁ ଅନ୍ତର୍ଦ୍ଧାନ ପ୍ରାୟେ ହୋଇ
କୁମର ବରକୁ ବନ-ବରନାର ଭାବେ ଉଚ୍ଚାଟ କରାଇ । ୩୬ ।
ଯେ ଅନ୍ତେ ରସିକ ମିତ୍ରକୁ ଘେନିଣ ମାଧବୀ ମଣ୍ଡପେ ବସି
ଏକାନ୍ତରେ କାନ୍ତବଦନା ଚରିତ ପକାଇ ଯେମନ୍ତ ଭାଷି । ୩୭ ।
ସତେ କି ରତେ କଶୋରୀ ମୋ ମସ୍ତକ ଡୋଳିବ, ବସିବ କୋଳେ
କହଇ ମିତ୍ର "ସୁକୃତ ସବୁଠାକୁ, ସୁକୃତରେ ସବୁ ଫଳେ । ୩୮ ।
ଶୁଣି ଯେ ବାଣୀ ଆଣି ଦ୍ୱିଜମାନଙ୍କୁ ବରଣ କଲା ଭୂପତେ
ଚଣ୍ଡୀ ପ୍ରସନ୍ନ ହେବାକୁ ଲକ୍ଷଚଣ୍ଡୀ ପଢ଼ାଇଲା ଶୁଦ୍ଧ ଚିତ୍ତେ । ୩୯ ।
ସେ ରସିକା ସୀତ୍କାର କରିବାକୁ ଶିବେ ଗୋଦୁହନ କରି
ନାନା ପ୍ରସଙ୍ଗ ରଙ୍ଗରେ ମିତ୍ର ସଙ୍ଗେ ରଜନୀ ଦିବସ ହରି । ୪୦।
ଚନ୍ଦ୍ର ଚିତ୍ରରେ ମାଳତିର-ନାୟକ-ପଦ-ପ୍ରଫୁଲ୍ଲ-ସାରସ
କହଇ ବାଙ୍କୀ ନରେଶ ପଦ୍ମନାଭ ହୋଇ ଚିତ୍ତରେ ହରଷ ।୪୧।

# ଷଷ୍ଠ ଛାନ୍ଦ

ରାଗ—ମଙ୍ଗଳ ଗୁଜ୍ଜରୀ

ଯେଥି ଅବନ୍ତୀରେ ଜନେ ଶୁଣ ରସ ସାର
ଦକ୍ଷିଣ ସିନ୍ଧୁତଟରେ ଇନ୍ଦ୍ରବତୀ ପୁର ଯେ । ୧ ।
ସମାନ ତାହାକୁ ଆଉ ନାହିଁ ଭବତଳେ
ବିଶ୍ୱକର୍ମା ନିର୍ମାଣ କରିଛି ବହୁକାଳେ ଯେ । ୨ ।
ବିଜୟ ଚନ୍ଦସେନର ବାରସ୍ୱତୀ ଜସେ
ଅଳକାର ଅଳଙ୍କାର ପରିପ୍ରେ ଅଶ୍ମାସେ ଯେ । ୩ ।
ଲକ୍ଷ୍ମୀ ଆଚଯାନ୍ତି ଲଙ୍କା ଶଙ୍କା ହୋଇ ଯେ ତହିଁ
ଯେ ପ୍ରଶଂସା ପ୍ରକଟୁ ସଂସାରେ ଆନ ନାହିଁ ଯେ । ୪ ।
ଜ ସେ ମହୀ-ମହିଳା-ବଦନ-ଆଦରଶ
ଜ ପ୍ରଭାତୀଥିରେ ପ୍ରଭବନ୍ତି ତହିଁ ବିଶ୍ୱ ଯେ । ୫ ।
ଭଦ୍ରସେନ ନାମରେ ଏଥିର ଅଧିପତି
ଦୂରତ ହୋଇଛି ଯାର କୀରତି ଧରିତ୍ରୀ ଯେ । ୬ ।
ଯାହା ଉତ୍କର୍ଜନ ପଯ୍ୟ ପୃଥ୍ୱୀ ପଙ୍କ କରେ
କର୍ଣ୍ଣେ ଶୁଣାଅଛି ଦାନୀପଣ ଯେ ବଧିରେ ଯେ । ୭ ।
ଯେ ନରେଶ ପ୍ରେୟବତୀ ଶତେକ ମହିଳା
ସବୁଠାରୁ ସ୍ନେହାଧିକା ଅଟେ ସୁକୋମଳା ଯେ । ୮ ।
ନିଜ ପ୍ରିୟତମରେ ଅଧିକ ଅନୁରାଗୀ
ଜ୍ୟେଷ୍ଠପାଟ ଯେ ସକାଶୁ ସହଜେ ସୁଭାଗୀ ଯେ । ୯ ।
ଜାତକର ମଧ୍ୟରେ ପଞ୍ଚମ ପୁତ୍ର ନାସ୍ତି
ସୁତା କନ୍ୟା ହୁଦେ ଗୁରୁଚନ୍ଦ୍ରା ଥାଇ ପୂର ଯେ । ୧୦ ।

ମଙ୍ଗଳାଙ୍କୁ ଅର୍ଚ୍ଚି ସେ ମଙ୍ଗଳ ବାସରେ
ନବପତ୍ରୀ ପୂଷ୍ପ ଦେଇ ନବ ପତ୍ରିକାରେ ଯେ । ୧୧ ।
ପ୍ରତିପାଳ ପ୍ରତୀକ-ଶୋଭନା କରେ ପୂଜା
ପୂର୍ଣ୍ଣିମୀ ଦିନ ପ୍ରସନ୍ନ ହୋଇଲେ ଗିରିଜା ଯେ । ୧୨ ।
ଶଯ୍ୟନେ ସ୍ୱପନେ ହେଲେ ନୟନେ ଗୋଚର
ଆଜ୍ଞା ଦେଲେ ସୁନ୍ଦରି ! ତୁ ଚିନ୍ତା ଦୂର କର ଗୋ । ୧୩ ।
ସୁତା ଅର୍ଥେ ସେବିଲୁ ତୁ ଆମ୍ଭଙ୍କୁ ନିରତ
ତୋହୋ ମନୋରଥ ସାର୍ଥ କରିବା ନିଶ୍ଚିତ ଗୋ । ୧୪ ।
ଆମ୍ଭ ଅଂଶେ ଜନମ କରିବ ସେହିକ ବାଳୀ
କାନ୍ତିକି ତା ତୁଚ୍ଛ ହେବ ନିସ୍ତଳ ବିଜୁଳି ଗୋ । ୧୫ ।
ସେମିତେ କହି କରେ ଦେଲେ ସୁପକ୍ୱ ରସାଳ
ବୋଇଲେ ତୁ ଶୁଦ୍ଧଚିତ୍ତେ ଭକ୍ଷିବୁ ଏ ଫଳ ଗୋ । ୧୬ ।
ସେହି ଗର୍ଭେ ଜନମ କରିବୁ ଦିବ୍ୟସୁତା
ଉଠିରେ ସୁନ୍ଦରୀମଣି ଛାଡ଼ ମନ ଚିନ୍ତା ଯେ । ୧୭ ।
ସେମିତେ ଆଜ୍ଞା ଦେଇ ଅନ୍ତର୍ଦ୍ଧାନ ହେଲେ ଉମା
ସ୍ୱପନ ଚେତି ଉଠିଲା ନରପତି-ବାମା ଯେ । ୧୮ ।
ଦେଖିଲା ଅମୂଲ୍ୟ ଚୂତ ଅଛି ନିଜ କରେ
ଗୁପତେ ରଖିଲା ଲଭି ଆନନ୍ଦ ମନରେ ଯେ । ୧୯ ।
ଶୁଦ୍ଧ ସ୍ନାନ ଦିନ ପାନ କରି ସେ ରସାଳ
କହି କାନ୍ତକୁ ସମସ୍ତ ହେଲା ସଙ୍ଗେ ମେଳ ଯେ । ୨୦ ।
ସେ ଦିନ ସୁଭି-ରତିରେ ଗର୍ଭ ଦର୍ଭଦ୍ୱାସୀ
ହୋଇବାରୁ ତନୁ ତାର ଆନ ଆନ ଦିଶି ଯେ । ୨୧ ।

୧୭-୨—ଛାଡ଼—ମନଚିନ୍ତା (ଖ) ।

ଚନ୍ଦ୍ର ଉଦୟରେ ଯଥା ଇନ୍ଦ୍ରଧନୁ ଶୋଭେ
ଅଙ୍ଗ ଅଙ୍ଗନାର ଶୋଭା ଅଧିକ ବିରାଜେ ଯେ । ୨୨ ।
ସରସୀ ଯେସନ ସରସିଜରେ ସୁନ୍ଦର
ସର୍ବାଙ୍ଗାକ୍ଷୀ ଗର୍ଭୋଦୟେ ତେମନ୍ତ ପ୍ରକାର ଯେ । ୨୩ ।
ଶଶିମୁଖୀ ସିତପକ୍ଷ କଳାକର ପରି
ଦିନକୁ ଦିନ ଦଶଇ ତେସନକ ତୋରି ଯେ । ୨୪ ।
ଫୁଲ ଫଳ ଭରେ ଯଥା ତରୁଲତା ଶୋଭେ
ତରୁଣୀ-ରତନ ସେହିରୂପେ ମନ ମୋହେ ଯେ । ୨୫ ।
ସେହିରୂପେ କେତେଦିନ ଅନ୍ତରେ ବାମାର
ଅନେକ ସକଳ ପଦାର୍ଥେ ହେଲା ତାର ଯେ । ୨୬ ।
ଅଳସ ଆସି ଅଙ୍ଗରେ କଲାକ ନିବାସ
ତନୁ ଫୁଲ ଭଳି ଦିଶେ ଟେକେଟେକ ସଦୃଶ ଯେ । ୨୭ ।
ଜୃମ୍ଭା ଘନ ଘନ ହୋଇ ଆସଇ ତାହାକୁ
ଉଠି ଉଭା ହେଲେ ଫୁଟ ମୁଞ୍ଚଇ ଶ୍ୱାସକୁ ଯେ । ୨୮ ।
ବମନ କରଇ, ଗତି ଅତିମନ୍ଦ ହେଲା
ଖଣ୍ଡି ଶଶିଗଣ୍ଡ ସେହୁ ପାଣ୍ଡୁର ଦିଶିଲା ଯେ । ୨୯ ।
ନୟନରୁ ଚଞ୍ଚଳତା କିଛି ଊଣା ହେଲା
ଶୟନ ସହିତ ସେହିକା ଅଙ୍ଗୀକାରେ କଲା ଯେ । ୩୦ ।
ଅଞ୍ଚଳକୁ ଅଚଳରୁ ଅଧିକ ମଣିଲା
ହାର ସେହିପରି ତାକୁ ଅତିଭାର ହେଲା ଯେ । ୩୧ ।
ଅଧରୁ ଅରୁଣ ତା’ ନଭିନ କିଛି ହେଲା
ମୃତ୍ତିକା ଭକ୍ଷଣେ ମତି ମତିମନ୍ତି କଲା ଯେ । ୩୨ ।

ଶ୍ୟାମବର୍ଣ୍ଣ ଭଙ୍ଗଲା ଭୃଙ୍ଗକ ଅଗ୍ର ତାର
ପଦ୍ମ-କୋରକରେ କି ସେ ବସେ ମଧୁକର ଯେ । ୩୩ ।
ଇତର ଦ୍ରବ୍ୟଙ୍କୁ ଇଚ୍ଛାକରେ ପୁଣ ପୁଣି
ପ୍ରେମରାଜ ଅଧିକ ରାଜ ହୁଅଇ ଗଣି ଯେ । ୩୪ ।
ତ୍ରିବଳୀ ପୃଥୁଉଦର ହେବାରୁ ଲୁଚଲା
ନାଭ ଗମ୍ଭୀରହିଁ ସ୍ନେହ ସକାଶୁ ମୁଷ୍ଟିଲା ଯେ । ୩୫ ।
କଟୀ କୃଶ ବାଣ୍ଟି ନେଲେ ପ୍ରତି ଅଙ୍ଗମାନେ
ଦମ୍ଭ ତେଜି ଅବଲମ୍ବ ହେଲେ ସଖୀ ଜନେ ହେ । ୩୬ ।
ସ୍ନେହରୂପେ ରୋଚକ ଅଭୁତ ଭାବ ଯେତେ
ହୋଇଲା ତା ସଂଖ୍ୟା କରି କହିବାକୁ କେତେ । ୩୭ ।
ପଞ୍ଚ ଦ୍ୱିଗୁଣିତ ମାସ ଶେଷେ ବାମାବର
ଜନ୍ମକଲା ସ୍ନେହ ସୁତା ମଣ୍ଡିଲା ନଗର ଯେ । ୩୮ ।
ଖଣ୍ଡିଲା ସକଳ ଦୁଃଖ ମଣ୍ଡିଲା ନେତ୍ରଙ୍କୁ
ଆନନ୍ଦ-ସିନ୍ଧୁରେ ମଗ୍ନ କଲା ସମସ୍ତଙ୍କୁ ଯେ । ୩୯ ।
ସେହି କଥା ଜାଣି ସ୍ନେହ ମୃଦୁସ୍ୱରେ ଗଲା
ନରନାଥ ଶ୍ରମୁରେ ଜଣାଇ ଯାଇଁ କଲା ଯେ । ୪୦ ।
ବୋଇଲା ଭୋ ଦେବ ! ତବ ପାଟରାଣୀଙ୍କର
କୁମାରୀଏ ଜନମିଲା ନାହିଁ ପଟାନ୍ତର ଯେ । ୪୧ ।
ଏମନ୍ତ ଶୁଣିଣ ରାଜା ଭୁରତେ ଉଠିଲେ
ଶ୍ରୀଅଙ୍ଗ୍ ସଜ ଉଲ୍ଲାସ ହୋଇ ସତ୍ତ୍ୱ ଦେଲେ ଯେ । ୪୨ ।
ଫୁଲ୍ଲ ଫଳ ସହିତେ ଦେଖିବା ସୁତା ଆଶେ
ନରେଶ ସେଠାରେ ଯାଇ ମିଳଲେ ହରଷେ ଯେ । ୪୩ ।

୩୬-୨—ଅଲମ୍ବ ହେଲେ (କ), ସଖୀଜନେ (ଖ) ।

ହକରି କଲେ ଗଣକ ପୁରୋହିତ ସଙ୍ଗେ
ଯୋଗ ଲଗ୍ନ ଛ ଛ ହେଲା ବୁଝି ଜନା ବେଗେ ଯେ । ୪୪
ବୃଷଲଗ୍ନ ସଙ୍ଗେ ସୁରଗୁରୁ ନିଶାକର
କକଡ଼ାରେ ସନ୍ଧ୍ୟ ଶୁକ୍ରେ ଭୃଗୁଲେ ଶନୈଶ୍ଚର ଯେ । ୪୫ ।
ମକରେ ମଙ୍ଗଳ କେତୁ ଏକାସନ ହୋଇ
କୁମାସ୍ତ୍ରୀ ମଙ୍ଗଳ କାରଣରେ ଛନ୍ତି ରହୁ ଯେ । ୪୬ ।
ବୃଷରେ ଅସୁରଗୁରୁ ମେଷେ ରବି ବୁଧ
ରବିବୁଧ ଯୋଗ ଯେହ୍ନୁ ଅଟଇ ପ୍ରସିଦ୍ଧ ଯେ । ୪୭ ।
ମଧୁମାସ ଶୁକ୍ଳପକ୍ଷ ସୁର-ଗୁରୁବାରେ
ଦଶମୀ ଧନିଷ୍ଠା କୁମ୍ଭ ଅମୃତ ଯୋଗରେ ଯେ । ୪୮ ।
ଯେମନ୍ତେ ଗଣକଠାରୁ ଶୁଣିଣ ଅନନ୍ଦ
ଦେଖି ମୁଖ ବିକାଶଇ ପୂର୍ଣ୍ଣିମୀର ଚନ୍ଦ୍ର ଯେ । ୪୯ ।
ଯେଉଁଅନ୍ତେ ଧାତ୍ରୀ ମୃଦୁମୂଲ୍ୟ ମେଳ ହୋଇ
ନାଭିଚ୍ଛେଦନ କର୍ମକୁ ସହିତେ ବଢ଼ାଇ ଯେ । ୫୦ ।
ବନ୍ଦୀ ଗଣକଙ୍କୁ ବନ୍ଧୁ ଧନବସ୍ତ୍ର ଦେଲେ
ଦୁଃଖୀ ବ୍ରାହ୍ମଣଙ୍କୁ ସ୍ୱର୍ଣ୍ଣ ଅନ୍ନଦାନ ଦେଲେ ଯେ । ୫୧ ।
ହାଟବାଟ ରଜକ ଭୂଠକୁ କୃତଥାଇ
ଯାହାର ଯେ ଗନ୍ଧ ଲେଖି ଭଣ୍ଡାରୁ ତା ଦେଇ ଯେ ୫୨ ।
ପାଞ୍ଚଦିନେ ପଞ୍ଚୁଆତି ଷଷ୍ଠେ ଷଷ୍ଠୀ କଲେ
ସାତଦିନେ ଉଠିଆସି ବିଧିକି ରଖିଲେ ଯେ । ୫୩ ।
ସୁବାସ ତଇଲ ଦେଇ ନରପତି ଜେମା
ଉଷ୍ମଜଳେ ସ୍ନାନ କରାଇଲେ ସର୍ବ ବାମା ଯେ । ୫୪ ।

୪୯-୨—ଦେଖି ମୁଖ ବିକାଶିଲ (ଜ) ।

ଯେଉଁ ଅନନ୍ତରେ ନେଇ ଷେଯେ ଶୁଆଇଲେ
ଯେ ଯାହା ସେବାରେ ଯାଇ ନିଯୁକ୍ତ ହୋଇଲେ ଯେ ॥
ଯେକବଂଶ ରଜନୀ ଯେମନ୍ତେ ଅସି ହେଲା
ଜାତକ ଲେଖି ଜୋତଷବର ଶୁଣାଇଲା ଯେ । ୫୬ ।
ଶଶିରେଖା ହୋଇ ନାମ ଜାତକରେ ହେଲା
ଗଣକ ଯେତେ ଜଣାଇ ଅପସର ଗଲା ଯେ । ୫୭ ।
ଦାସୀ ଆଣି ଜେମାଙ୍କୁ ଯେଉଁ ସମଯେ କଲେ
ପୀତବସନରେ ଘେନ କୋଳରେ ଧଇଲେ ଯେ । ୫୮ ।
ଶଶି ରେଖା! ବୋଲି କର୍ଣ୍ଣେ ଶୁଣାଇଲେ ନେଇ
ନାମ କରଣ ବିଧି ବଢ଼ାଇ ନଉସାଇଁ । ୫୯ ।
ମଙ୍ଗଳ ଗାୟନ କର ଦେଲେ ହୁଲହୁଳ
ଶଙ୍ଖ ଶବଦରେ ପୂର୍ଣ୍ଣ ହେଲା ମଣ୍ତଆଲୀ ଯେ । ୬୦ ।
ବାଦ୍ୟମାନ ତହିଁ ନାନା ପ୍ରକାରେ ବାଜନ୍ତି
ଭାଟ କଯେବାର ବାବସ୍ତୁତିଙ୍କ ଶୁଭନ୍ତି ଯେ । ୬୧ ।
ନଟ ନାଟ କର ପାଟ ସୁବର୍ଣ୍ଣ ପାଇଲେ
ଭାଟମାନ ଯେହରୂପେ କେତେ ଧନ ନେଲେ ଯେ । ୬୨ ।
ଦୁଖୀଜନମାନଙ୍କୁ ଯେ ରୂପେ କେତେ ଦେଲେ
ଯେ ଯେମନ୍ତେ ତୋଷ ହେଲେ ସେରୂପେ ବୋଧିଲେ ଯେ ॥
ବ୍ରାହ୍ମଣଙ୍କୁ ତହୁଁ ଆଣି କଲେକ ମେଲାଣି
ଯେମନ୍ତେ ଯେ ଛନ ଆସି ଶେଷ ହେଲା ପୁଣି ଯେ । ୬୪ ।
ଶ୍ରୀ ଜଗନ୍ନାଥ-ଚରଣ-ସରସିଜେ ମନ
କହଇ ବାଙ୍କୀ ସୁଜନ କର ନ଼ିତ୍ୟ ଧ୍ୟାନ ଯେ । ୬୫ ।

---

# ସପ୍ତମ ଛାନ୍ଦ

ରାଗ—କେଦାର

(ଚକ୍ରକେଳି ବାଣୀରେ ଗାଇବ)'

ଯେତେ ଉତ୍ତାରେ ଗଲା କେତେଦିନ । ନୃପନନ୍ଦନା ଶୋଭା ଅନ ଅନ ॥
ଦିନେ ନୂତନ ସିତାଂଶୁ ଯେମନ୍ତ । ଅଂଶ ଅଂଶ ବୃଦ୍ଧିରେ ସେହିମତ ।୨।
ବେନି ଦ୍ୱିଗୁଣ ମାସ ଶେଷାନ୍ତରେ । ନୃପସୁତାଙ୍କୁ ଅଣି ଯେମନ୍ତରେ । ୩ ।
କଲେ ପୁର-ଚତ୍ୱରକୁ ବାହାର । ରଙ୍କ ନାଥ ପାଇଲେ ପରକାର । ୪ ।
ଷଷ୍ଠମାସେ କଲେ ଅନ୍ନପ୍ରାଶନ । ଦେଖି ସନ୍ତୋଷ କରୁଥାନ୍ତି ମନ । ୫ ।
ଅର୍ଦ୍ଧ କାଳକ ଦଶିଲେ ସୁନ୍ଦର । ଜନ-ମାନସ-ନେତ୍ର-ସୁଖକର । ୬ ।
ଯେତେ ବୟସରେ ପାରଭାଗ ଥିଲେ । ଦଶ ବର୍ଷକ ଯେତ୍ହାକୁ ରଖିଲେ । ୭ ।
ଶୋଭାଲାଗି ତାଅଙ୍ଗେ ଯୋଗ୍ୟ ଦେଲେ । ଯେତ୍କ ରଖିବ ଆଉ ଯୁବାହେଲେ
ସର୍ବଜନସୁନର ବଶୀକରଣ । ପୁଂଯ-ମାନସ-କଷ୍ଟକ ଆରଣ । ୯ ।
ଯେହି ପ୍ରକାରେ କେତେଦିନ ଗଲା । ବସି ଭୂଷେ ଲୁଚିବାର ଜାଣିଲା ।୧୦।
କଉତୁକେ ଖେଳଇ ଯେହିମତେ । ଧୂଳିଘର କରୁଥାଇ ନାରତେ । ୧୧ ।
ଭୋଳ ନଦେବାକୁ ଗୋଳ କରୁଥାଇ । ଭାଙ୍ଗିଦେଲେ କେବେ ନ ପଶୁରଇ
ରେଣୁ ଲାଗିକରି ଅଙ୍ଗେ ତାହାର । ଯଥା କେତକୀ ପତ୍ରଗେ ସୁନ୍ଦର ।୧୩।
ପକ୍ୱ ରସାଳ ପଡ଼ି କ ତଳର । ଧୂଳି ଲାଗିବାରେ ସେହି ପ୍ରକାର । ୧୪ ।
ପୁଚି ଖେଳିବା ଲୁଚି ଯାଇକନା । ମିଛେ କାନ୍ଦ ହୁଅଇ କେତେ ଥନା ॥
କଉରଦ କନକରେ କୁଣ୍ଢାଇ । ମନ୍ତ୍ରିସୁତଙ୍କୁ ଯେନ ଖେଳୁଥାଇ । ୧୬ ।
ପୁଅ ଝିଅ କରି ତା' ବଭା କଇ । ଯେହି ପ୍ରକାରେ ନରେଶ କୁମାରୀ ॥
ବାଲ୍ୟ ସାରଣ ମଧ୍ୟୂଣପ୍ୟା ପୁର । କଉ ଶପୃନ କରାଇ ସତ୍ୱର । ୧୮ ।

ଯାନ ମାନ ଦାନ ତ୍ରିଭୁବନରେ । ଦେଉଥାଇ କୁମାରୀ କୁତୁକରେ ।୧୯
ଗୁରୁ ସମ୍ଭାର ମାନ ଦେଇ କରି । ତହୁଁ ମେଲାଣି କରଇ କୁମାରୀ ।୨୦।
ଯେହ୍ନରୂପେ ଶ୍ରୀରଦନ ଅନ୍ତରେ । ଚତୁର୍ଥୀ କରାଇ ବିଧି ମତରେ ।୨୧।
ସାତଦିନେ ହୋଇଯେ ସାତମଙ୍ଗଳା । କରେ ଯେହ୍ନରୂପରେ କେତେ ଲୀଳା ॥
କରି ମୃତ୍ତିକାରେ ନଦୀ ରଚନା । ନୀର ପୂରାଇ ନରେଶ-ନନ୍ଦନା ।୨୩।
ସ୍ଥାନ ମୀନମାନ ଆଣି ପକାଇ । ନାବ ପକାଇ କରି ଖେଳୁଥାଇ ।୨୪।
ଯେଉଁଥି ଉତ୍ତାରୁ ଶୁଣ ମହାରସ । ବିଦ୍ୟାରମ୍ଭ କରାଇଲେ ନରେଶ ।୨୫।
ଅଭିଧାନ ବ୍ୟାକରଣ ସହିତେ । କାବ୍ୟ ନାଟକ ଅଳଙ୍କାର ଯେତେ ॥
ଯେଉଁଥି ହୋଇଲା କୁମାରୀ ନିପୁଣ । କେହ୍ନେ କହି ପାରିବ ତାର ଗୁଣ ॥
ଯେହ୍ନରୂପେ ଗଲା କେତେ ଦିବସ । ଅବିବେକ-ନରେଶ ଗଲା ନାଶ ॥
ବିବେକ-ନରପତି ନିଜ ଦେଶ । ପାଇକରି କଲା ତହିଁ ନିବାସ ।୨୯।
ଯେହ୍ନ ସମୟେ ଅଙ୍ଗେ ଅନ୍ୟୋନ୍ୟରେ । ଲୁଟିହେଲେ କେ କେତେ ପରକାରେ
ରୋମରାଜି ବନ୍ଧ ନେଲା ନୟନ । କଟୀ ପୃଥୁଳ ନେଲେ ବେନିସ୍ତନ ॥
ଯେବଭୂତ ସମୟେ ଶୁଣ ବାଣୀ । ମନସିଜ ରାଜନ ଯେହ୍ନା ଜାଣି ।୩୨।
ତନୁଭୂମି ଅସି ମାଡ଼ି ବସିଲା । ତହିଁ ରାଜ୍ୟାଭିଷେକ ବେଗେ ହେଲା ॥
ବନ୍ଦୀ କରି ବିବେକକୁ ରଖିଲା । ଯେଣୁ ଅବିବେକ ଅପସରିଲା ।୩୪।
କେତେ ତପସ୍ୟା କରି ଫୁଲଧନୁ । ଯେତେକାଳେ ଛୁଇଁଲା ବାଳା ତନୁ ॥
ସଞ୍ଚକଲା ଯେହ୍ନି ଯେନ ଅମୃତ । ଏ ସହାୟରୁ ଜିଣିଲା ଜଗତ ।୩୬।
ବାଳା ଦିଶିଲା ଅତ୍ୟନ୍ତ ଶୋଭନ । ଯେଣୁ ଶାନ୍ତ ହୋଇଲା ଆନ ଆନ ॥
କେତେବେଳେ ଛାଇକି ଚାହୁଁଥାଇ । ଧୂଳି ଲାଗିବା ସହି ନ ପାରଇ ॥
ବାସ ମଳିନ ହେଲେ ନ ପିନ୍ଧଇ । ଆନ ବସନ ଆଣି ପିନ୍ଧୁଥାଇ ।୩୯।
ଆଗେ ରଖିକରି ଦିବ୍ୟ ମୁକୁର । ଚାହୁଁଥାଇ ବଦନ-ନିଶାକର ।୪୦।
ଫୁଲ ଶରଧା କରି ଗୁନ୍ଥୁଥାଇ । ଭୂଲ କରି ଉତ୍ତମାଙ୍ଗେ ଲଗାଇ ।୪୧

ଶୁଣୁଥାଇ ସେ ନବଢ଼ ନାରୀ । କେତେ ରୂପେ ହେଉଥାଇ ସୁନ୍ଦରୀ ॥
ଦେଖୁଥାଇ ସେ ଅଙ୍ଗେ ଅଳଙ୍କାର । ଲାଗି ଅଳଙ୍କାର ହୁଏ ସୁନ୍ଦର ॥
ମୁଖ ମଦନ-ମୁକୁର ଜିଣିଲା । ସରସିଜକୁ ଶୋଭାରେ ହାଣିଲା । ୪୪ ।
ଭୁରୁ କୋଦଣ୍ଡକୁ ଖଣ୍ଡେ ଛାଡ଼ାଇ । ଦୃଷ୍ଟି ହସିଲା ଅତି ମନୋହର ।୪୫।
ଭାଳପଟ୍ଟ ଅର୍ଦ୍ଧଚନ୍ଦ୍ର ପରାଯେ । ହନକୁ ହନ ହସିଲା ଶୋଭାଯେ । ୪୬ ।
ନେତ୍ର ମୀନ ଖଞ୍ଜନକୁ ଗଞ୍ଜିଲା । ମଞ୍ଜୁ ମଞ୍ଜୁଳ ଅଳକା ରଞ୍ଜିଲା । ୪୭ ।
ନାସା ତିଳ କୁସୁମରୁ ଅଧିକ । ଭଲ ଭ୍ରାନ୍ତ ଗଢ଼ିଲା ବନ୍ଧୁକ । ୪୮ ।
ଅଧେ ଅଧର ରଙ୍ଗ ହୋଇଥିଲା । ବିମ୍ବ ବିଦ୍ରୁମକୁ ବଳ ହରିଲା । ୪୯ ।
କରିକରକୁ ଜିଣି ବାହୁ ତାର । ହେମ-ମୃଣାଳକୁ ବଳ ସୁନ୍ଦର । ୫୦
ମନ୍ଦଗତି ଅତି ମନ୍ଦ ହୋଇଲା । ବାଣୀ ଆଣି କୋକିଳକୁ ନିନ୍ଦିଲା ।୫୧।
କୁନ୍ଦ କରକବୀଜକୁ ପ୍ରସନ୍ନ । ଅତିଶୟ ହସିଲା ତା' ଦଶନ । ୫୨ ।
ଚନ୍ଦ୍ରଖଣ୍ଡକୁ ଜିଣିଲା ଚିବୁକ । ଯେଣୁ ଦେଖିବ ହରିବ ବିବେକ । ୫୩ ।
ସ୍ତନ ବେନି ଶ୍ରୀଫଳ ତାଳ ଛବି । କିଏ ଦେଖି ଯା କି ବର୍ଣ୍ଣିବ କବି । ୫୪ ।
ଗୁରୁ ଡମ୍ବରୁ ଗିରିଅଙ୍କ ଜିଣି । କଟୀ ହଟିଲା ଅତି ସୂକ୍ଷ୍ମ ପୁଣି । ୫୫ ।
ଅତି ପୃଥୁଳ ନିତମ୍ବ ହୋଇଲା । ଜାନୁ ଛବି ସୁରମ୍ଭାକୁ ହସିଲା । ୫୬ ।
କର ପଦ କୋକନଦ ଛବିକି । କିଣେ ଅଙ୍ଗୁଳ ଚମ୍ପକ କଳିକା । ୫୭ ।

ଯେଉଁ ସମୟେ ଶୁଣ ମହାରସ । ଅହି ମିଥୁନ ହୋଇଲା ପ୍ରବେଶ । ୫୮ ।
ଶୁକ୍ଳପକ୍ଷ ଦ୍ୱିତୀୟା ସୋମବାର । ମୀନ ରେବତୀ ସଙ୍ଗେ ନିଶାକର । ୫୯ ।
କର୍କଟ ଲଗ୍ନ ସପ୍ତମ କୋଷ୍ଠୀ । ଲଗ୍ନେ ଶୁଭଗ୍ରହଙ୍କ ଅଛି ଦୃଷ୍ଟି । ୬୦ ।

ସେହି ସମୟେ ମଧ୍ୟାହ୍ନ କାଳରେ । ଶୋଇଥିଲା ଜେମା ସଖୀ ମେଳରେ ॥
ବାମଦେବ-ବାମ-ଗୃହ ବିକାର । ଭଜି ନିଦ୍ରା ଛେଡ଼ିଲା ବାମାବର । ୬୧ ।

୪୫ ଠାରୁ ୫୭ ପଦ ପର୍ଯ୍ୟନ୍ତ କ ପୋଥିରେ ନାହିଁ ।

ତହୁଁ ଶୁହଁଲା ସଖୀ ଶୋଇଛନ୍ତି । ଭୁକ ହୋଇ ଉଠିଲା କୁନ୍ଦଦନ୍ତୀ ॥
ଯାଇଁ ଏକାନ୍ତ ସଦନେ ପ୍ରବେଶ । ତହୁଁ ଫେଡ଼ି ଦେଖିଲା ପିନ୍ଧା ବାସ ॥
ଦେଖି ବଢ଼ିଲା ସୁଖ ନୟନର । ଚତ୍ତେ ଜନ୍ମିଲା ଉପମା ପ୍ରକର । ୬୫ ।
କିବା କନକ କଉଶି କାତର । ଯୋଡ଼ି ଦେଲେ ଦିଶଇ ଯଉଁ ତୋଷ ॥
ଯୁବା ଜୀବ ବଧ କରି ଅନଙ୍ଗ । ରକତରେ କରିଛି କିବା ସଙ୍ଗ । ୬୭ ।
କି ସେ କୋକନଦ ଯେକ ପାଖୁଡ଼ା । କାମ ରଖିଛି କରି ଅଛି ଯୋଡ଼ା
ଉରୁ ରମ୍ଭା କୁସୁମ ଯେକଦଳ । ମାର ଦେଖାଇଲା କି ଅନୁକୂଳ । ୬୯
ହେମ କେତକୀ ପାଖଡ଼ା ଉପରେ । ଲାଷା ରସ କି ଦିଶେ ମନୋହରେ ।
ନବ ଚଳଦଳ ଦଳ ଯେମନ୍ତ । ରକତମାରୁ ଦିଶଇ ତେମନ୍ତ । ୭୧ ।
କି ସେ ଦାହକ କନକ ପାତିରେ । ରମ୍ୟ ଲୋହିତ ଚନ୍ଦନ ଯତ୍ନରେ ॥
ରଖି ଅଛନ୍ତି ରବି ଅର୍ଘ୍ୟପାଇଁ । ଯେହ୍ନ ଶୋଭୁରୁ ଆନ ନ ଦିଶଇ ॥
ସ୍ଥଳ କମଳ ରଭୁକାଳ ପାଇ । ଯଉଁ ପ୍ରକାରେ କଳକା ଧରଇ । ୭୪
ସେହି ରୂପେ ଦିଶଇ ମନୋରମ । କେତେ କହିବା ଅବା ତହିଁ ସାମ୍ୟ
ଯେହ୍ନ ପ୍ରକାରେ ଦେଖିଣ ରମ୍ଭୋରୁ । ବୁଝି ନଦିଶଇ ଲଜ୍ଜା ଭାବରୁ ॥
ତେଜି ସେ ଲାଠ ଗନ୍ଧର ଙ୍ଗପାଠ । ଚିତ୍ତ ହୋଇଲା ମଦନେ ଉଚ୍ଚାଟ । ୭୭
ଯାଇଁ ଶୟନ ସଦନେ ମିଳିଲା । ସେହିରୂପେ ସଖୀମେଳେ ରହିଲା । ୭୮
ଯେକ ସଖୀ ଜାଣି ମନେ ହସିଲା । ଭୁକ ହୋଇକରି ଉଠି ବସିଲା ॥
ସେ ଯେ ବୋଇଲା ଯେକକୁ ଅନାଇ । ଆନ ବାସ ପିନ୍ଧିଲା କାହିଁପାଇଁ
ଯେହା ଶୁଣିଣ ସର୍ବ ସଖୀମାନେ । ନିଦ୍ରା ତେଜିଣ ଉଠିଲେ ବହନେ ॥
ବୋଲେ କି କି କୁହାକୁହି ହୋଇଲ । ଆମ୍ଭମାନଙ୍କୁ କିଛି ନ କହିଲ ॥
ଯେତେ ଶୁଣି ନରପତି କୁମାରୀ । ବୋଲେ ତୁମ୍ଭେତ ମୋର ପ୍ରାଣପରି ॥
ହେଲେ ତୁମ୍ଭଙ୍କୁ ନଜ ନ କହନ୍ତି । ଯେତେ କହି ମଉନ କୁନ୍ଦଦନ୍ତୀ
ଯେକ ସଖୀ ବୋଲଇରେ ଚତୁର । କରେ ରଖିଲେ ନାଡ ରହେ ବାର

ଶାଖ ପାନ୍ଧଲେ ତ ଜଣା ନ ଜାଇ । ଫୁଲ ଫୁଟିଲେ କି ଗନ୍ଧ ନ ପାଇ ॥
ଆକାଶ କି ଅମ୍ବର ଘୋଡ଼ାଇବ । ପ୍ରଜ୍ୱଳିତ ମୁଖରେ ନ ଦଶିବ ।୮୨।
ଭୁଲାଗ୍ନି ରଖିବ କି ସମୀର । ଚନ୍ଦ୍ର ଉଦେ କି ନୋହିବ ଗୋଚର ॥
ନଦୀ ବଢ଼ିଲେ କି ବନ୍ଧ ରହଇ । ଭୂତ ଲୋଭୁ ଏମନ୍ତେ କଥା ଲୁଚଇ ॥
ଏମନ୍ତେ ବୋଲି ସମସ୍ତେ ବିଚାରିଲେ । ଯାଇଁ ରାଣୀଙ୍କ ଆଗେ ଜଣାଇଲେ
ବୋଇଲେ ଶୁଣମା ସାବଧାନ ହୋଇ । ପୁଷ୍ପଭେଦ ହୋଇଲେ ଜେମାଦେଈ
ସେହିକ୍ଷଣେ ରାଜାଙ୍କୁ ଜଣାଇଲେ । ଏମନ୍ତେ ଚରଚ ବାଣୀ ଜଣାଇଲେ ॥
ଏହା ଶୁଣି ନରନାଥ ହରଷ । ହେଲେ ସେହିରୂପେ ପୁଣି ବରଷ ॥
ଡାକି ଜଉତିଷ ଶୁଭ ବୁଝିଲେ । ଧାଇଁ ମୁଦୁଗଲଙ୍କୁ ଆଜ୍ଞା ଦେଲେ । ୯୪
କୁଳ ପରଂପରାରେ ଯେଉଁ ରୂପେ । ବିଧି ଅଛି କରିବ ସେହି ରୂପେ । ୯୫
ଏମନ୍ତେ ଶୁଣି ସକଳ ସହଚରୀ । କୁଳ ବିଧି ବିଧାନ ଅନୁସରି । ୯୬ ।
ମୋତି ସମ ତଣ୍ଡୁଳ ଆଣି କରି । ଶୁଦ୍ଧ କମୀଣ କଲେକ ଚଉରୀ । ୯୭
ରଷ୍ଠ ଦ୍ୱିତୀୟ ପୁରକୁ ମାସରେ । ତୃତୀୟକୁ କମୀଣିଲେ ଧାନ୍ୟରେ । ୯୮ ।
ଶୃଙ୍ଗ ପାରୁଶରେ ସାତ କଳସ । ସାତ ସରା ତହିଁ ମଧ୍ୟେ ପ୍ରବେଶ । ୯୯
ଚୂତ ପତ୍ର ଉପରେ ନାରିକେଳ । ଯଥାବିଧିରେ କଲେକ ସକଳ । ୧୦୦।
ସାତଗୁଣି ସୂତ୍ର ତହିଁ ବେଢ଼ାଇ । ସାତଦୀପ ଶୃଙ୍ଗପାଶେ ଜଳାଇ ।୧୦୧
କାଠ ପାଠ ଯୁକ୍ତ କରି ମଧ୍ୟରେ । କୁମାରୀଙ୍କ ବସାଇ ତହିଁପରେ ।୧୦୨।
ସାତ ଦିବସ ଯାଏ ବନ୍ଦାପନା । ଏହିରୂପେ କରୁଥାନ୍ତି ଅଙ୍ଗନା ॥
ସାତ ଦିବସ ଯହୁଁ ଶେଷ ହେଲା । ପ୍ରାତକାଳୁ ସୁମୁଖୀ ସ୍ନାନକଲା । ୧୦୪
ଥିଲା ଯେତେକ ଉଚ୍ଛିଷ୍ଟ ବସନ । ଏକ ସଖୀ ଦେଇ କଲା ଗମନ ॥
ଏହି ସମୟେ ମଧୁପ ନିକର । ଧ୍ୱନି କଲେ କେ କେତେ ପ୍ରକାର ॥
ବାସ ଛିଦା କମଳ ବିକଶିଲା । କୋକନଦ କି ପୁଷ୍ପିତ ହୋଇଲା ।୧୦୭।

୮୯-୨—ବନ୍ଧରଖଇ (ଖ) ୯୪-୧—ସବୁ ବୁଝିଲେ (ଖ) ୧୦୭-୨—ଧ୍ୱନିକଲା (ଖ)

ନବ କୁସୁମିତ ଲତା ମନ୍ଦାର । ଅଳିବଳ ବସିବାରୁ ସୁନ୍ଦର । ୧୯୮ ।
ଏହା ଦେଖି ଏକ ସଖୀ ବୋଇଲା । ଏତ ଅଗନ୍ଧ ଭୃଙ୍ଗଙ୍କୁ ମୋହିଲା
ଏହୁ ଘେନ ଜାଣିଲୁ ବଶ୍ୟକର । ଅଛି ବଶ୍ୟତ୍ୱ ହୋଇବ ନକର । ୨୦
ଏଥି ଉତ୍ତାରେ ନେଇ ସନ୍ଧ୍ୟଚନ୍ଦ୍ର । ରଜକେ ଦେଲା ବାମ ଦନ୍ତ କର । ୨୦୧
ବେଶ ବର୍ଣ୍ଣିବା ଏବେ ଅର ଛନ୍ଦେ । ମନ ଥାଉ ଗୋବିନ୍ଦ ପଦଦ୍ୱନ୍ଦେ ॥
କହେ ବାଙ୍କୀ ନରେଶ ପଦ୍ମନାଭ । ବେଗେ କରୁଣା କର ପଦ୍ମନାଭ ॥

---

# ଅଷ୍ଟମ ଛାନ୍ଦ

ରସକୋଇଲ ବାଣୀରେ ଗାଇବ

ଏ ଉତ୍ତରୁ ସଙ୍ଗ ସଜନୀମାନେ
ପ୍ରବେଶ ହୋଇଲେ ବାଳା-ସଦନେ ।
ବୋଲନ୍ତି ଶୁଣରେ ତରୁଣୀମଣି !
ସୁବେଶ ତୁମ୍ଭଙ୍କୁ କରିବା ପୁଣି ଯେ
ବନ୍ଧନ ବିଜୟ କର ଗୋ
ବେଶ ହୋଇବ କେବଳ ନୃପନେମା
ବିଳମ୍ବ ଆଉ ନ କର ଗୋ ।୧।

କେ ଘେନି ଶିଙ୍ଗାଡ଼ା ଶୃଙ୍ଗାଡ଼ା କରେ
ପ୍ରବେଶ ହୋଇଲେ ବାଳାସ୍ଥମୁରେ ।
କୁସୁମଭୃଙ୍ଗାଡ଼ା କେହୁ ଅଣିଲେ
କଙ୍କତିକା ଘେନ କେ ଉଭା ହେଲେ ଯେ
କେ ଘେନ ମୁକୁର ଆଗେ ଯେ
ଉଭା ହୋଇଲେ ସେ ଆସି ଯନ୍ତ୍ରଂଘଣି
ଗୃହିଁଲେ ବାଳା ସମ୍ମୁଖେ ଯେ ।୨।

କେ ଖଦ୍ଦ କନ୍ଧେ ପକାଇ ଅଇଲେ
କେ ବଢ଼ାଅ ପୁଣି ଚଲେଢ଼ ଅଣିଲେ ।
ଘନସାର ଚୂଆ ଚନ୍ଦନ ଘେନି
ଅଗର ଧତ୍ତୁରି କଉଁ କାମିନୀ ଯେ
ଘେନି କର ଉଭା ହେଲେ ଯେ
ସୁବାସ ବାସ-ତ— ଇଲ ଘେନିଣ କେ
ମଉଳ ଯାଇଁ ଫେଡ଼ିଲେ ଯେ ।୩।

ତମ ଘନ ଗ୍ୟମର କେଶପୁଞ୍ଜ
କଳନ୍ଦଜା ଗୁଚ୍ଛ ନ ସମକକ୍ଷ ।
କବରୀ ଏ ଅଉ କାହିଁକି ହେବେ
ଏ ନବ ଯୁବା-ମାନସ ମୋହିବେ ଯେ
ଏଣୁ ଏହାଙ୍କୁ ପେଖିବା ଯେ
ବନ୍ଧନ କୁଣ୍ଡଳ– ଚକ୍ରବଚକ୍ରୁ
ଭୁଜଲେ କାହ୍ନୁଁ ଯୋଖିବା ଯେ । ୪ ।

ତଇଲ ଲଗାଇ ତାର କୁନ୍ତଳ
କୋମଳ କର କଲେ ଏକାମେଳ ।
ପାଟସୂତା ଉଡ଼ା ଉଡ଼ି ବାନ୍ଧିଲେ
ରଙ୍ଗଗଣ୍ଠି ଭଣ ବାହାର କଲେ ସେ
ହେଲା ଯେଣୁ ଦରବୁଡ଼ା ଯେ
ଖୋଦିଲେ ତହିଁରେ କେତେ କ ଜାଲରେ
କେତକୀ ଜାତି ପାଖୁଡ଼ା ଯେ । ୫ ।

ବାଙ୍କ ଉଡ଼ୁଁଣିଆ ବାନ୍ଧିଲେ ତହିଁ
ଗୋଛ କଅଁପଟୀ ଉଡ଼ିଲେ ନେଇ ।
ମଥାଜାଲି ଝିଲିମିଲିମାଳକ
ଇନ୍ଦ୍ରଧନୁ କର୍ଷିବାରୁ ଗୃହକୀ ସେ
କେଶ-ଘନ ଶୋଭା-ନୀର ଯେ
ପାନକର ହେଉ– ଅଛନ୍ତି ଚଞ୍ଚଳ
ନାହିଁ ନାହିଁ ଉନପୁର ଯେ । ୬ ।

୫-୩—ପାଟସୂତା ଉଡ଼ା ଉଡ଼ି (ଖ)
୬-୧—ରେଛ କଅଁପଟା (ଖ)।

କନକଦ୍ରବ ଯା ଚର୍ମ ଉପରେ
ଖୋପିଲେ ଏମନ୍ତ ହୋଏ ଚିତ୍ତରେ ।
ଝଟକୁଅଛି କିବା ବିଦ୍ୟୁଲତା
ଅଳକା-ସ୍ୱପନମାଳ ଶୋଭନ୍ତା ସେ
ପଲକ ନ ପଡ଼େ ଦେଖି ଯେ
ଭକ୍ଷ କି ମାର          ମାରଣେ ଯୁବାଜନ୍ତୁ
ପାଇଁ ଯତ୍ନେ ଅଛି ରଖି ଯେ । ୭ ।

ଭାଲରୁ ଅଷ୍ଟମୀ ଚନ୍ଦ୍ର ଫଳକ
ଅର୍ଦ୍ଧଶୋଭା ହିଁ ନାଶିବ ଢଳକ ।
ମୃଗମଦ ଶିରୀ ପ୍ରେମନ୍ତ ଦଶେ
କାମ କି କୁନ୍ତ ରକ୍ଷ ପାଇଁ ଖେଷେ ଯେ
ରଖିଛି ସୀମା ବାରଣ ଯେ
ବଳଲେ ଏଣିକି          ମାରିବ ନିଷ୍ଠୁ
କେବା ରଖିବ ପରାଣି ଯେ । ୮ ।

ଭ୍ରୂଲତା ଉପରେ କର୍ପୂର ରେଖ
ଦେଲେ ଯା ବିବେକ ହରୁଛି ଦେଖ ।
କାମ କି କୁଠାର ଉଗ୍ରାନ କରି
ରଖିଛି ଗୃହ ଶାଣ ଦେଇକରି ଯେ
ଯୁବା ଜୀବ ବଧ ପାଇଁ ଯେ
ଏ ବିନୁ ମନକୁ          ଆନ ଅସ୍ତ୍ର ନାହିଁ
ଧୈର୍ଯ୍ୟ ନ ରହେ ଅନାଇଁ ଯେ । ୯ ।

୭-୪—ଅଳକା ନକ୍ଷତ୍ରମାଳ (କ) । ୮-୨—ଅର୍ଦ୍ଧଶୋଭହିଁ ନୋହିବ ଢଳକ (କ) ।
୮-୬—ସୀମା ବାରଣେ (ଖ) । ୮-୭—ମାରିବ ନିଷ୍ଠୁରେ କେବା ରଖିବ ପରାଣେ (ଖ) ।

ଖଞ୍ଜନ ମୀନ ମୃଗ ସାରସଙ୍କୁ
ସମାନ କରଇ ତାର ନୟନଙ୍କୁ ।
ଏଣୁ ସେ ଶଙ୍କା ଲଭିଣ ମନରେ
ରହିଲେ ବାସ କରିଣ ବନରେ ସେ ।
ଅଞ୍ଜନେ ତା' ନେତ୍ର ଡୋର ଯେ
କାମବାଣ—ଦମ୍ଭ ଦଳିବାକୁ ବହୁ
ନିର୍ମାଣ କରିଛି ପରା ଯେ । ୧୦ ।

ଶ୍ରୁତି ବେନି ଦୋଳା ପାଶକୁ ସମ
ନିବନ୍ଧ ନୋହିବାରୁ ମନୋରମ ।
ଅଞ୍ଜନ ଲାଞ୍ଛି ଯା ତହିଁକି ବ୍ୟାପି
ବେନି ବିଲରୁ କିବା କୃଷ୍ଣସର୍ପୀ ସେ ।
ହରଷେ ବାହାର ହୋଇ ଯେ
ନାସା-କୀରକୁ ଗ୍ରହିଁଛନ୍ତି ଦଂଶିବେ
ଦାଉ ଅଉ ଦିଶୁ ନାହିଁ ଯେ । ୧୧ ।

ଚନ୍ଦ୍ରମଲ୍ଲୀକଢ଼ି ଖଞ୍ଜିଲେ ଯହିଁ
ଅଭିସୁଅଛି ମୋ ମନକୁ ତହିଁ ।
ଇନ୍ଦ୍ରଶରାସନ ଯେଉଁ ପ୍ରକାର
ଚିକୁରକୁ ଲାଗି ଦିଶେ ସୁନ୍ଦର ଯେ ।
ହୀରକ ମାଣିକ୍ୟ ସଙ୍ଗେ ଯେ
କନକକୁ ଲାଗି ସେହି ପରକାରେ
ଦିଶୁଅଛି ନାନାରଙ୍ଗେ ଯେ । ୧୨ ।

୧୦-୧—ଖଞ୍ଜନ ମୀନ ଯେ ମୃଗ ସାରସ (କ)

ଫୁଲ ଯାହା ତହିଁ ଦେଲେ ଲଗାଇ
ଭୁଲାଇବ କେ ସେ ଶୋଭାକୁ ନେଇ ।
ଭୁଲାଇ ଦେଉଛି ଯୋଗୀ–ଯୋଗକୁ
ମୂଳାଇ ନେଉଛି ନାକ ନାଗକୁ ଯେ ।
ଝଲକା ଝଲକ ଭାର ଯେ
ପଲକ ଅଛି ପକାଇ ଦେଉନାହିଁ
କେ ଦେଖି ରଖିବ ଧୀର ଯେ । ୧୩ ।

ତାଙ୍କ ବେଣୀ ମନସିଜ-ଚକ୍ର
ଦେଖି ଯୋଗୀ ଯୋଗ ହୋଇବ ବକ୍ର ।
ପଞ୍ଚଶର ତପ ଅର୍ଥରେ ପୁଣି ।
ପୀଠ କରିବ ସମସ୍ତଙ୍କୁ ଜାଣି ଯେ ।
ଶକ୍ର ପଦ ନେବା ଆଶେ ଯେ
ଖଞ୍ଜିଲେ ସଖୀ ଏ ବନ୍ଧୁଜୀବ ଅଛି
ଅଗସ୍ତ ନାହିଁ ମାନସେ ଯେ । ୧୪ ।

ତିଳ କୁସୁମ କାମର ତୂଣୀର ।
ନାସାକୁ ସମ ନୋହିବେ ତାହାର ।
ଖଞ୍ଜିଲେ ନବ ମୋତି ନାକଚଣା ।
ଦେଖିବାରୁ ବୁଦ୍ଧି ହୋଇଲା ବଣା ଯେ
ସୁଠକେ ମାଣିକ୍ୟଗୁଣା ଯେ
ଦେଲେ ରତନେ ଯତନେ ଜଡ଼ିଅଛି
ଉପମା କରୁଛି ବଣା ଯେ । ୧୫ ।

୧୩—୩—ଭୁଲାଇ ଦେଉଛ ଯୋଗୀ ଯୋଗକୁ (କ)

ଚନ୍ଦ୍ରଖଣ୍ଡ ଗଣ୍ଡମଣ୍ଡଳ ଜ୍ୟୋତି ।
ମଧୂକ ଅଧିକ ନୋହେ ପ୍ରତୀତି ।
ଏମାନଙ୍କୁ ଯେବେ ସମ କରିବା ।
ସେ ବନେ ଏ କ୍ଷୀଣ ବୃଦ୍ଧି ହୋଇବା ଯେ
ଏଣୁ ଉପମେୟ ନୋହେ ଯେ
ମକରକା ଶୋଭା ହ କହିବା ଅବା
ଯୁବାଜନମନ ମୋହେ ଯେ । ୧୬ ।

ଅଧର ବିମ୍ବ ବନ୍ଧୁକକୁ ଯେବେ ।
ଯୋଖିବା ଯୋଗ୍ୟ ଏ ନୋହନ୍ତି କେବେ ।
ସବୁକାଳେ ତାଙ୍କ ତାରତମ୍ୟ ।
ନ ଥିବାରୁ ସେ ନୁହନ୍ତି ଲକ୍ଷିତ ଯେ ।
ଏଣୁ ବଚନେ ନ କହୁ ଯେ
ସଦା ସୁଧାରସ ତହିଁ ପୂରିଥାଇ
ଏ ଗୁଣ ତ ଏଥି ନାହିଁ ଯେ । ୧୭ ।

ଚତୁର୍ଥୀ–ଚନ୍ଦ୍ର–ଖଣ୍ଡକୁ ତବୁକ
ସମ ବୋଲେ ନ ରହିବ ବିବେକ ।
କନକ—ମୁକୁର—ଖଣ୍ଡ ସମ୍ପ୍ରେ
ଅତପେ ମର୍କତ କଢ଼ିଛୁ ଭଏ ଯେ
ଭ୍ରମରକା ଯାହା ଦେଲେ ଯେ
ଏ ଶୋଭା ଦେଖିଲେ କାହାର ବିବେକ
ନ ହଜିବ ରହୁ ଭଲେ ଯେ । ୧୮ ।

୧୭-୧—ଅଧର ବିମ୍ବ ବନ୍ଧୁକ ।

ଦଣ୍ଡ ସରସିରୁହ ନାଡ଼ି, ଦର
ଉପମା ଦେବାକୁ ମଣୁଛି ଦର ।
ସେ ଦେବାଳୟେ ସମ ହେବା ପାଇଁ
ପ୍ରାତ ସନ୍ଧ୍ୟାରେ ନରନ୍ତେ ସେବାଇ ଯେଁ
ଏ ସେବେ ଆପ ଆତପେ ଯେ
ଏ ଯେନ୍ନ ଏହା ତୁଳନା ନ କଲାଇଁ
ଏଣୁ ଅଟଇ ସଙ୍କ୍ଷେପେ ଯେ । ୧୯ ।

ଯୋଡ଼ି ମାଳ ମୁକୁତା ସ୍ତୂପସଘ
ଖଞ୍ଜିଲେ ସଖୀ ତହିଁ ଅନୁସର ।
ଚମ୍ପାକଳି ମାଳ ସଙ୍ଗତେ ତାର
ଅବୋଧ ଦଶଇ କେଡ଼େ ସୁନ୍ଦର ସେ
ମୋହୁଅଛି ଭନପୁର ଯେ
ସାର ସଂସାରେ ସାରସଗଣ ରଣ
ପାଇବ ସୁବୃତ୍ତ-ନର ଯେ । ୨୦ ।

ଭାରତର ମୋକ୍ଷଦ୍ୱାର ଯା ହେଲେ
ଏମନ୍ତ ବୃଷ୍ଟି ପ୍ରକଟିଲା ଭଲେ ।
କମ୍ବୁରେ ଗଙ୍ଗାଜଳକୁ ପୂରିଲ ।
କୁଚ-ଶମ୍ଭୁରେ ଢାଳୁଛି କି ନେଇ ଯେ ।
ବକ୍ଷର ଲଭବା ଅଶେ ଯେ
ଅଭିଷେକ କରାଉଛି ଶଢିହାସୀ
ଅଛି ହରଷ ମାନସେ ଯେ । ୨୧ ।

କନକ ମୃଣାଳ ଚମ୍ପକ ଦାମ
ସୁବାହୁଙ୍କୁ ତାର ନିନ୍ଦନ୍ତି ସମ ।
ଏ କସ ନାମେ ଅଟଇ ଦୂଷଣ ।
ଭ୍ରମର ଦ୍ରୋହୀ ତାହା ଅବଗୁଣ ଯେ ।
ଏହୁ ସକାଶେ ତାହାଙ୍କୁ ଯେ
ବର୍ଣ୍ଣ ନ କର          ହରିଣ-ନୟନା
ବଳନ ବେଣି ବାହାକୁ ଯେ । ୧୧ ।

ଅଗ୍ର ତାହାର କୋକନଦ ହୁଇ ।
ଚମ୍ପକ—କଳରେ ଭୂଷିତ ହୋଇ ।
କୁସୁମେ କୁସୁମ ଉତ୍ପତ୍ତି ଗୃହିଁ ।
ଏଣୁ ଏହା ଅଦଭୁତ ମଣଇ ଯେ ।
ଏହା ତ ଦେଖିଲି ନାହିଁ ଯେ
ସକଳ ଶୋଭା          ସୁନ୍ଦର ସାର ଗୁଣ
ଅଗ୍ରେ କଲେ ସ୍ୱେଦା ଦେହି ଯେ । ୧୩ ।

ବାଜୁବନ୍ଧ ବାହେ ଦେଲେକ ନେଇ ।
ଜାଙ୍ଗିଳ ଡାଡ଼ି ଖଞ୍ଜିଲେକ ସଖୀ ।
କଣ୍ଟକ ସଙ୍ଗେ ଗୁଞ୍ଜର ଖଞ୍ଜିଲେ ।
ମର୍କତ ଚୂଡ଼ି ଏ ଉତ୍ତରେ ଦେଲେ ସେ ।
କର—କମଳୁ ମରଧି ଯେ
ପାନ କର ଲବା          କେଉଁଛଣି ରହୁ
ଅଛନ୍ତି ମିଳନ ବୃନ୍ଦ ଯେ । ୧୪ ।

* ୧୩ଶ ପଦଟି ଖ ପୋଥିରେ ଅଛଦି ନାହିଁ ।

ଅଙ୍ଗୁଳିରେ ଯାହା ମୁଦ୍ରିକା ଦେଲେ ।
ମନ ନୟନଙ୍କୁ ରଞ୍ଜିଲା ଭଲେ ।
ଚନ୍ଦ୍ର ତହିଁରେ ଲଜ୍ଜନ୍ତେ ସଖୀ ।
ଚମ୍ପକ—କଳିକା ଭ୍ରମର ପେଖି ଯେ ।
ଥିଲା ଏବେ ଭୋଗ କଲା ଯେ
ଏଣୁ ପ୍ରଭେ ହୋଇସେ ଏହା ସ୍ମରଣରୁ ଯେତେ
କାଳେ ଯୋଗ୍ୟ ହେଲା ଯେ । ୧୫ ।

ଶ୍ରୀଫଳ ତାଳ ବର୍ତ୍ତୁଳକୁ ସମ ।
ଉରଜକୁ କରିବାକୁ କେ କ୍ଷମ ।
ପୂର୍ଣ୍ଣ-ଚନ୍ଦ୍ର-ଖଞ୍ଜନର ପ୍ରାଣ ।
ମନକୁ ଯେ ପୁଣି କରଇ ବଶ ଯେ ।
ଏ ଲବ ତହିଁରେ ନାହିଁ ଯେ
ପଦ୍ମାବତୀ ଯାହା ଲିହିଲେ ଏଥିରେ
ଏଣୁ ଜଗତ ମୋହଇ ଯେ । ୧୬ ।

ରୋମାବଳି ଶୃଙ୍ଖଳାରୁ ଶୋଭା ।
ବୃନ୍ତଫଳ ଦେନ ପାଉଛି ଶୋଭା ।
ନାଭି ଗଭୀର ଅଳବାଳ ନାଭ ।
ଢ ଅବା ଜଳର ଲୀଳାଦର୍ପର ସେ ।
ତ୍ରିବଳୀ ଏ ବଳ ନାହିଁ ଯେ
ତିନ ଲୋକରୁ ଅଦ୍ଭୁତ ଜନ୍ମ ବହି
ରଖିଅଛୁ ଉପମା ପାଉ ଯେ । ୧୭ ।

୧୫-୧—ରଞ୍ଜିଲ ଭଲେ (ଜ) । ୧୫-୬—ଯେଣୁ ଘଟେ ହୋଇସେ ଏ ସମୟ ଉଷରୁ ଯେତେହାର (ଜ), ଯେତେ ବେଳେ (ଖ) । ୧୬-୭—ପଦ୍ମାବତି ଯାହା ରଚିଲେ (ଗ) । ୧୭-୧—ବୃନ୍ତଫଳ (ଖ) । ୧୭-୭—ତିନ ଲୋକରୁ ଅଦ୍ଭୁତ (ଜ) ।

କେଶରୀ ଡ଼ମରୁ ଶୃଗ ଅଙ୍କୁ ।
ତା ମଣ୍ଝାକୁ ସମ କଉଁ ଗୁଣକୁ ।
କରିବା ଯେବେ ସେ ଦେବ ବର୍ଣ୍ଣାଇ ।
ନାଭିମ୍ ଚକ୍ରରେ ଘଟନା ହୋଇ ସେ ।
ମନମଥ ରଥ ଚ ବା ଯେ
ସାଜି ଫୁଲଧନୁ          ଜମ୍ବୁ ଚ କଠିବ
ଏଥି ବସି ସବୁ ଯୁବା ଯେ । ୨୮ ।

ଝୁଣା ଦେଇ ପାଦ ମାର୍ଜନା କଲେ ।
ଯାବକ ଯତ୍ନେ ସଜନୀ ମଣ୍ଡିଲେ ।
ଦିଅନ୍ତେ ଗଞ୍ଜିଲା ମାର— ଗରବ ।
ରଞ୍ଜିଲା ଭାଞ୍ଜିଲା ଧୈର୍ଯ୍ୟ ତରବ ଯେ ।
ଖର୍ବ କଲା ସର୍ବ ଶୋଭା ଯେ
ପୂର୍ବେ ଏ ସୁଷମା          ଦେଖିଲା ନ ଥିଲା
ସମାନ କାନ୍ତି କରିବା ଯେ । ୨୯ ।

ବାଜେଣୀ ବଳା ବଳାଗ ଚରଣେ ।
ଦିଅନ୍ତେ ନାଦ କଲେ ଅନୁକ୍ଷଣେ ।
ନୂପୁର ସାଙ୍ଗା ପଦ୍ମରେ ବାଜଇ ।
କାମକୁ ବାମ ହୋଇ ଛରକଇ ସେ
ଢ଼ଯୋଗୀମାନଙ୍କ ମନ ଯେ
ଶୁଣିଲା କ୍ଷଣି          ଛନ ଛନ ଚରିବ
ହରି ହବେଇ ବଦନ ଯେ । ୩୦ ।

କୁଣ୍ଡିଅ ଚରଣରେ ଦେଲେ ନେଇ ।
ନାଦ ଅତ୍ୟନ୍ତ ହୋଇ ପ୍ରକଟଇ ।
ଶିବା ମନମଥ ଜୟ ଚମକ
ବିରହୀ-ଜନଙ୍କ ହୃଦଚମକ ଯେ ।
ହଂ-ଦମ୍ଭ-ହର ପାଇଁ ଯେ
ବର- ବରନା—    ଚରଣରେ ଖଞ୍ଜିଲେ
ଯେଉଁଥିରେ ସଂଶୟ ନାହିଁ ଯେ । ୩୧ ।

ଯେମନ୍ତେ ବେଶ ଶେଷ କଲ ସଖୀ ।
ବୋଇଲେ ମୁଠରେ କମଳମୁଖୀ ।
ସୁନ୍ଦର ବସନ ଲାଗି କରବା ।
ଏଠାରୁ ମାର-ଗରବ ହରବା ଯେ ।
ଶୁଣି ସଖୀଙ୍କ ବଚନ ଯେ
ଅବନୀ—ମୋହିନୀ    ନବନୀତ-ଦେହା
ହସ ହୋଇଲା ବଦନ ଯେ । ୩୨ ।

ନୀଳ ଜଲଦମେଘଶାଢ଼ୀ ଆଣିଲେ ।
ଅଧର ମୁଦ୍ରି କୁଞ୍ଚ ଦିଆଇଲେ ।
କେ ବର୍ଣ୍ଣି ପାରିବ ସେ ଦିଶା ଛବି ।
ଯୁବାଜନ-ମନ-କମଳ-ରବି ଯେ ।
ନବଘନ ନୀବଦ ରଙ୍ଗେ ଯେ
ବାନ୍ଧଲେ ବାନ୍ଧବୀ    ତ କହିବା ଭାବ
ନାହିଁ ସୁର ନର ନାଗେ ଯେ । ୩୩ ।

କନକ ବୃକ୍ଷରେ ତମାଲ ଲତା ।
ବେଷ୍ଟିତ ହେଲା କି ଦଶେ ଶୋଭତା ।
ସୃଷ୍ଟି ସର୍ଜନା କଲା ବେଳେ ବହ୍ମ ।
ଭ୍ରାନ୍ତି ହୋଇଛନ୍ତି ଏଡା ଶୋଭା ଗୃହ୍ନିଁ ଯେ ।
ଦୃଷ୍ଟି ଯେଣୁ ନ ଦଶିଲା ଯେ
ମୋହିତ ହେବାରୁ ସଖୀ ତନୁକୁ ସେ
ଉପମା ଆଉ ନ କଲା ଯେ । ୩୪ ।

ଦିବ୍ୟ ପଲଙ୍କ ନାଗ ବଲ୍ଲୀ ଦଳ ।
ଚନ୍ଦ୍ରକଳା ଆଣି ବାଳା ଖମ୍ବୁର ।
ଦେଇ କଶ କନ୍ଦେ ମୃଣୋହ୍ନ କର ।
କରନ୍ତେ ଅଧର କି ମନୋହର ।
ବିଦ୍ରୁମ ଲାଖାରସରେ ଯେ
ପଶୁଇଲେ କବି ଯୁବା ମନ ଲୋଭି
ସମାନ କାହିଁ ସଂସାରେ ଯେ । ୩୫ ।

କନକ ଜର ଓଢ଼ଣୀରେ ବାଳା ।
ଆଚ୍ଛାଦନ କଲେ ଅଣି ମୃଣାଳା ।
ଖଞ୍ଜା କୋଲେ କବା ନବୀନ ଘନ ।
ଦଶିଲା ଯେହ୍ନ ପ୍ରକାରେ ଶୋଭନ ସେ ।
ବୋଇଲେ ଉଠ ମେଦଣି ଗୋ
ଅର୍ଘ୍ୟ ଦେବାପାଇଁ ଭରଣୀକି ନେଇ
ତରୁଣୀ-ମସ୍ତକ-ମଣି ଗୋ । ୩୬ ।

୩୬-୭—ଅର୍ଘ୍ୟ ଦେବାପାଇଁ ତରୁଣୀମାନେ ନେଇ ତରୁଣୀ ମସ୍ତକମଣି ଯେ (ଶ)

ଏମନ୍ତ ବୋଲି ସେ ହିଙ୍ଗୁଥାଣି ।
ପ୍ରପଦ ଛଟେଲ ପକାଇ ତରୁଣୀ ।
ବୋଇଲେ ଏଥି ଶଙ୍କେକର ମାତ୍ସ୍ୟ ।
ତବ ଗୃଭୂଷିକ ନାହିଁ ଉପାସ୍ୟେ ଯେ ।
ସଙ୍ଗମାଙ୍କ ସ୍ୱେଚ୍ଛେ ବାଣୀ ଯେ ।
ପ୍ରମଦା ବୃନ୍ଦ— କୁମୁଦ ମୃଦ କର
ବଢ଼େକବା ନଶାମଣି ଯେ । ୩୭ ।

କେ ଖଦ ଗୃମର ଧଶ ଛାଇଲେ
କେହୁ ଅଲଠ ଅଣି ପକାଇଲେ ।
କେ ଦବାକର କରଣେ ବ୍ୟଜନ
ଓଢ଼ାଡ଼ି କଲ୍ପକ ଅଣି ବନ୍ଧନ ଯେ ।
କେବା ମଣିମା ମଟିମା ଯେ
ବୋଲି କର ପାଦ ମଣାଇ ନ ଅନ୍ତ
ଏ ରୂପେ କେବେ ଗଣିମା ଯେ । ୩୮ ।

କଲହଂସୀ କ ଗର୍ବରେ ହୋଇ
କମଳ ଦଳେ ସଖୀରେ ଗୃଲଇ ।
ଶଡାଙ୍ଗ ପର୍ଏ ମନ୍ଥର ଚାର
ଗଢ଼ିଲୁ ଅଢ଼ ଦଣଇ ସୁନ୍ଦର ଯେ ।
କବା ମଣ୍ଡକର ଗଡ ଯେ
ଦର ଦରଣ— ନପୃନା ମଣ୍ଡ୍ୟୁଅଛୁ
କ ରଙ୍ଗରେ ବସୁମତୀ ଯେ । ୩୯ ।

ଏହି କଉତୁକେ ବାଳାଙ୍କୁ ବେଗେ
ମନ୍ଦିରୁ ବାହାର କରନ୍ତେ ଯୋଗେ ।
ପଛେ ଯାଉଛନ୍ତି ପାନ ଚନ୍ଦ୍ରକଳା
ଶ୍ରୀମୁଖ ମୋଡ଼ି ଚାହାଁନ୍ତେ ସୁଶୀଳା ସେ ।
ଢ଼ ମନ୍ଦବାତେ କମଳ ଯେ
ଢଳନ୍ତି ପରି କେ-     ଢ଼େ ଶୋଭା ଦଶିଲା
ତାର ନୟନ ଯୁଗଳ ଯେ । ୪୦ ।

ଢ ଅବା ଲୀଳା-କମଳ ଉତ୍ପଳ
ମଧୁପାନେ ମତ୍ତ ହୋଇ ଚଞ୍ଚଳ ।
କରନ୍ତି ଆନନ୍ଦ ହୋଇଣ ଲୀଳା
ଡୋଳା ଖେଳାଇବା ଭଙ୍ଗୀରୁ ବାଳା ସେ ।
ଦଶିଲା ଏହି ପ୍ରକାରେ ଯେ
ହରିଲା ତୋଷିଲା     ସଖୀଙ୍କ ମାନସ
ଭୂଷିଲା କଉତୁକରେ ଯେ । ୪୧ ।

ସୂର୍ଯ୍ୟପୂଜା ସ୍ଥାନେ ପ୍ରବେଶ ହେଲା
ପୂଜାସମ୍ଭାରମାନଙ୍କ ଦେଖିଲା ।
କନକ ପାତ୍ରେ ରକତ ଚନ୍ଦନ ।
ଗୋଳି କରି କରେ ଧରେ ବନ୍ଦନ ସେ ।
ଦିଅନ୍ତେ ଅର୍ଘ୍ୟ ରବିଙ୍କି ଯେ
ଦେଖିଲା କ୍ଷଣି     ମନରୁ ଆଭାସିଲା
ଚନ୍ଦ୍ର ତ ବଡ଼ କଳଙ୍କୀ ଯେ । ୪୨ ।

ମୁଖ–ଚନ୍ଦ୍ର ରବ୍ବ ବ ଏକାସନ ।
ହୋଇ ମଣ୍ଡିଲେ ସକଳ ଭୁବନ ।
ଏ ଅଦଭୁତ ତ ଦେଖିଲା ନାହିଁ ।
ସୂର୍ଯ୍ୟ ତେଜ ଗଲା ମଳନ ହୋଇ ସେ ।
ଦେଖିଣ ସୁମନବର୍ଗ ଯେ
ଶୋଭାକୁ ଦେଖି ମୋହିତ    ହୋଇ କରି
ପୁଷ୍ପ ବୃଷ୍ଟି କଲେ ବେଗ ଯେ । ୪୩ ।

ଏଉତ୍ତାରୁ ମନ୍ଦିରେ ପରବେଶ ।
ହୋଇ କହନ୍ତି ଜନନୀଙ୍କ ପାଶ ।
ଯାଇଁ କର ଦରଶନ କରିବା ।
ନରପତିଙ୍କି ସେଠାକୁ ଆଣିବା ।
ତାଙ୍କୁ କର ଦରଶନ ଗୋ
ପରସନ୍ନମୁଖୀ ଏ    ଉତ୍ତାରୁ ଆସି
ରହିବା ଆମ୍ଭ ସଦନ ଗୋ । ୪୪ ।

ସଖୀଙ୍କର ଏତେ ବଚନ ଶୁଣି ।
ବାହାର ହୋଇଲା ରମଣୀମଣି ।
ମାତାଙ୍କ ପାଶେ ପ୍ରବେଶ ହୋଇଲା ।
ପତନୀ ନଉଛଳି ପକାଇଲା ସେ ।
ବେନି କରେ ସୁକୁମାରୀ ଯେ
ଚରଣ ପଡ଼ିନ୍ତେ    କୋଳ କରି ଆଣି
ଧଇଲେ ସ୍ନେହେ କୁମାରୀ ଯେ । ୪୫ ।

ନରପତ୍ନୀଙ୍କ ସେଠାରୁ ଆଣିଲେ ।
ତେମାନଙ୍କୁ ଦରଶନ କରାଇଲେ ।
ଏ କଥିରେ ତାଙ୍କ ପାଦରେ ପୁଣି ।
ନାଉଛନ୍ତି କଲା ବରତରୁଣୀ ଯେ ।
ଧୈର୍ଯମନ୍ତ୍ରେ ଜଗ ନାୟକ ଯେ
କର ଧର ତେମାନଙ୍କୁ ପାଶେ ବସାଇ
ଦେଲେ ହରଷ ଅନେକ ଯେ । ୪୬ ।

ପଦ୍ମା ଆଣି ମଣ୍ଡଳରେ ହାତ ।
ବାନ୍ଧ ଦଅନ୍ତେ ଦେଲେ ଏକ ମାତ ।
ଆଜ୍ଞା ଦେଲେ ଯା ଗୋ ବଜାସ୍ତୁ କର ।
ଶୁଣିଲା ମଣି ଉଠିଲା ସହର୍ଷ ସେ ।
ପାଦ୍ୟ ପଢ଼ିଣ ମେଲାଣି ଯେ
ତୋଳ କଥା କରାଇଣ ନଜପୁରେ
ପ୍ରବେଶ ହୋଇଲା ପୁଣି ଯେ । ୪୭ ।

ଏ ଉକ୍ତିରୁ ଆର ଛାନ୍ଦରେ ରସ ।
ଶୁଣିମା ସୁଜନେ ହୋଇ ହରଷ ।
ବିଘ୍ନ ନୋହି ସର୍ବ ରୂପେ ହୋଇବ ।
ଏ ବର ସମସ୍ତେ ହରଷେ ଦେବ ଯେ ।
ଏ ଛାନ୍ଦ ବେଶ ବର୍ଣ୍ଣନା ଯେ
କହଇ ବାଙ୍କୀଶ ହୋଇଣ ହରଷ
ଗୋବିନ୍ଦ ପାଦ ବନ୍ଦନା ଯେ । ୪୮ ।

---

# ନବମ ଛାନ୍ଦ

ରାଗ—କାଳୀ

ଏଥିଅନ୍ତରେ ନରେଶବର ଗୃହିଁ କୁମାରୀ ଶୋଭା ।
କରିବା ବର ଏହି ବିଷୟରେ ପ୍ରବେଶ ହେଲେ ସଭା । ୧ ।
ହକାର କରି କିଙ୍କର ଦ୍ୱାରେ ମନ୍ତ୍ରୀବରଙ୍କୁ ଆଣି ।
ବସାଇ ପାଶେ ବିଶ୍ୱାସ କରି କହନ୍ତି ନୃପମଣି । ୧ ।

ଦେଖ କିଶୋର-ସମୟ ପ୍ରାପ୍ତ ହୋଇଲା ସୁକୁମାରୀ ।
ନୋହେ ବିହିତ ପୁରେ ଥିବାର ଦେବା ବିବାହ କରି
ଜେମା ସୁଷମା ସମାନେ ବର ଖୋଜାଅ ପେଷି ଚର
ଯା ସମାନରେ ନ ଥିବେ ନରେ ମହୀରେ ହେବ ସାର । ୨ ।

କୁଳରେ ଶୁଦ୍ଧ ବଳରେ ତାଙ୍କୁ ନ ଥିବ ଆଉ କଳା
ବୟସେ ସମ ହେବ ସୁଷମ ଦାନେ ଲେଖିବା ବଳ
ଶସ୍ତ୍ର ଶାସ୍ତ୍ରରେ ନିର୍ଜିତ କୁଳେ ହେବ ଯେହ୍ନେ ଅସମ୍ଭବ
ପଣ୍ଡିତଗଣେ ମଣ୍ଡିତ, ଅରି ଖଣ୍ଡିତ ଯାରେ ହେବ । ୩ ।

ଏମନ୍ତ ଶୁଣି ସୁମନ୍ତ୍ରୀବର ଚରମାନଙ୍କୁ ଆଣି
ଧନ ବସନ ଦେଇ ପ୍ରସନ୍ନ କରି କହନ୍ତି ବାଣୀ
ସକଳ ପୁର— ନୃପ କୁମର ଖୋଜିବ ପରିକଟେ
ସଦୃଶମାନ କୀଦୃଶ ତାହା ଲେଖି ଆଣିବ ପଟେ । ୪ ।

ଦେଶ ବୟସ ପ୍ରତାପ ଯଶ ଯାହାର ଥିବ ବୁଝି
ହେମନ୍ତ କରି ଆନ ନ କରି କହିବ ଆସି ହେଜି

୩-୪—ପଣ୍ଡିତ ପଣେ (ଖ) । ୫-୨—ହେମନ୍ତ କରି···କହିବୁ ଅସି ହେଜ (ଚ) ।

ତୁମ୍ଭେ ଚତୁର— ମାନଙ୍କ ବର ଜାଣ ତ ସବୁ କଥା
ଆସି ଏ ପୁରେ ମିଳ ସତ୍ୱରେ ଛଡ଼ାଅ ମନ ବ୍ୟଥା । ୫ ।

ଏମନ୍ତ ଶୁଣି ତଗରେ ପୁଣି ଶିରରେ କର ଦେଇ
ଦର୍ଶନ କରି ପ୍ରସନ୍ନ ହୋଇ ଗଲେକ ପିଠିଆଇ
ସମସ୍ତେ ଜ୍ଞାଣୀ— କ୍ଷେତ୍ରରେ ଆସି ପ୍ରବେଶ କଣ୍ଠ କଲେ
ଯେ ଯାହା ମତେ ନୃପ ସମ୍ମତେ ଦେଶେ ବିଦେଶେ ଗଲେ । ୬ ।

ଭ୍ରମି ଭୂତଳ— ନୃପ-ମଣ୍ଡଳ ପୁତ୍ର ସକଳ ଖୋଜି
ଦେଶ ବୟସ ଶୋଭା ବିଶେଷ— ମାନ ମାନସେ ହେଜି
ସକଳ-ଗୁଣ— ଗଣ ଲକ୍ଷଣ ଅବଲୋକନ କରି
ସୁଷମା ହେମା ସମକୁ ସମ ନୋହିଲେ ଯେତେ ପୁରୀ । ୭ ।

ଏତେ ରୂପରେ ସକଳ ପୁରେ ନିଜ ସତ୍ୱରେ ଗୃହେ
ଭ୍ରମିଲେ ଦେଶ— ମାନ ବିଶେଷ ନ ପାଇ ବିଲସରେ
ମନେ ବିଚାରି କଲେକ ଗୃହି ବନ୍ଧୁ ସଞ୍ଚାର କରି
ଖୋଜିଲେ ପ୍ରାଣ ଯିବ ପ୍ରମାଣ ଖେଦ ମାନସେ କରି । ୮ ।

ଯେମନ୍ତେ କହି ବିସ୍ମୟ ହୋଇ ବସିଲେ ଯେକସ୍ଥାନେ
କସ କହିବା କାହିଁ ପାଇବା ନାୟକ ତା' ସମାନେ
ଯୁବା ବୟସ ହୋଇ ନରେଶ— ସୁତଗଣରେ ଥିବ
ଧୀର ଧାର୍ମିକ ଗୁଣୀ ବିବେକ ବୀର ଧୀମନ୍ତ ହେବ । ୯ ।

ଏପରି କରି ଆମ୍ଭେ କି କରି କରିବା ବିଲୋକନ
ହେ ବିଶ୍ୱନାଥ ଏ ମନୋରଥ ସାଥ କରି ବହନ

୯-୭—ନରେଶ ସୂଚ୍ଛ ପଣରେ (ଶ) ।

ସୈମନ୍ତ ବର  ମାଗି ସତ୍ୱର  ଶୂର ଉତ୍କଣ୍ଠା ହୋଇ
ଜମ୍ବୁଦ୍ୱୀପରେ  ଅନ୍ତ ସତ୍ୱରେ  ପ୍ରବେଶ ହେଲେ ଯାଇ
ତହିଁରେ ସାର  ଏକ ନଗର  ନାମ ତା' ପଦ୍ମାକର
ତୁଳନା ଯାର  କଳନା ନୋହେ  ଅଳକା—ଅଳଙ୍କାର
ତହିଁ ରାଜନ  ଗୁଣ—ଭାଜନ  ଦୟାସାଗର ନାମ
ତା' ମୂଳ ସୁତା  ଜବା ମଧବା  ପଦ୍ମଧ୍ୱଜ ତା' ନାମ । ୧୧ ।

ଦେଖିଣ ତାଙ୍କୁ  ଅତି ମନକୁ  ଭାବିଲେ ଦେବ ଏହୁ
ଏ ସମାନରେ  ନ ଦେଖି ନରେ  ନାଗ ନାକରେ କାହିଁ
ଯେତେ ସୁଷମା  ନୃପତି ଜେମା  ଅଛି ଉପମା ଅଟେ
ତହିଁଙ୍କ ଯୋଗ୍ୟ  ଅଟେ ଏ ଭୋଗ୍ୟ  କରିବ ଭାଗ୍ୟ—ହାଟେ । ୧୨ ।

ଏତେ ବିଚାରି  ରହିଲେ ଶୂର  ଦିନ ତହିଁରେ ଦୁଇ
ତା ଶୋଭା ଗୁଣ  ଜାଣିଲେ ପୁଣ  ଦାତୃତା ପଣ ଯେତେ
ପଟେ ସ୍ୱରୂପ  ଲେଖିଣ ଗୋପ୍ୟ  କରି ରଖିଲେ ପାଶେ
ଲେଉଟି ଆସେ  ମିଳିଲେ କାଶୀ—  କ୍ଷେତ୍ରରେ ଦିନଶେଷେ । ୧୩ ।

ରହି ତହିଁରେ  କଉତୁକରେ  ହରଷେ ନମି ହର
ପ୍ରଭାତେ ସଙ୍ଗ  ହୋଇ ତୁରଙ୍ଗ  ପଥ କ୍ରମଣ କରି
କେତେ ଦିନରେ ନିଜ ନଗରେ  ଆସି ପ୍ରବେଶ ହେଲେ
ମନ୍ତ୍ରୀଙ୍କୁ ନେଇ  ଯାଇ ଅବନୀ  —ପତି ଦର୍ଶନ କଲେ । ୧୪ ।

ମସ୍ତକେ କର  ଦେଇ ନିକର  କହନ୍ତି ଶୁଣ ଦେବ !
ଯେବେ ଆଦେଶ  ଭ୍ରମିଲୁ ଦେଶ  ହେଲା ନ କରି ଲବ

୧୨—୧-ଦେଖିଲେ ତାକୁ । ଖ ।
୧୨—୨-ନାଗନାକରେ ନାହିଁ । ଘ ।

ଅଙ୍ଗ କଳିଙ୍ଗ   ସୌରାଷ୍ଟ୍ର ବଙ୍ଗ   ଗୈଡ଼ାଙ୍ଗ ମରହଟ୍ଟ
ଦ୍ରାବିଡ଼ ଗୌଡ଼   ମଦ୍ର ଅବନ୍ତି   ମରୁ ନେପାଳ ଲାଟ । ୧୫ ।

ବିଦେହ ବଇ— ଦର୍ଭ ପ୍ରଭବ   ପଞ୍ଚାଳ କୁଞ୍ଜଗଳ
ଚେଦ ବେଦରେ ଦେଦ—ସହୃତେ   ମିଳ ନାଗ୍ରେଲ ଶୈଳ
ଭୋଟ ଲୋମଶ   ମତ୍ସ୍ୟ ବିଶେଷ   ସିନ୍ଧୁ କାନ୍ୟକୁବ୍ଜ
ବାହ୍ଲିକ ସୁକେ— ଚଳ ଉତ୍କଳ   ଗୁଜୁରାଷ୍ଟ୍ର କାମ୍ବୋଜ । ୧୬ ।

ଭୃଙ୍ଗ ତେଲଙ୍ଗ   କଚ୍ଛ ବିଭଙ୍ଗ   ପ୍ରବେଶ କର୍ଣ୍ଣାଟରେ
ଖୋଜ ନିଷଧ   ଦେଶ ମଗଧ   ସୁକଳବଳଗରେ
ଏ ଆଦି ମୁଖ୍ୟ—  ଦେଶ ଛପନ   ଯଷ ନରେଶ—ପୁରେ
ଖୋଜିଲୁ ମେଳ  ହୋଇ ସକଳ   ଦିବସ ରଜନୀରେ । ୧୭ ।

ଯେମା ସେମାନେ ନ ଦେଖି ମାନେ   ବସିଲୁ ହାଣୀ ଆସି
ବିସ୍ମୟ ଚିତ୍ତେ   ସର୍ବେ ଗୁପତେ   ଛଣାଣ କଲୁ ନିଶି
ସେ ପ୍ରଭୁ ଆଜ୍ଞା   ପାଇ ପ୍ରତିଜ୍ଞା   କରି ପ୍ରଭାତେ ଗଲୁ
ବିଶେଷ ଦେଶ—ବରେ ପ୍ରବେଶ   ହୋଇ ଯତ୍ନେ ଖୋଜିଲୁ । ୧୮ ।

ମଧ୍ୟ ବର୍ଷରେ   ଜମ୍ବୁଦ୍ୱୀପରେ   ପୁଷ୍କର ଦେଶେ ସାର
ଅଛି ନଗର   ଅତି ରୁଚିର   ନାମ ତା’ ପଦ୍ମାକର
ଅବନୀଶ୍ୱର   ଦୟା ସାଗର   ନାମେ ବିଖ୍ୟାତ ତହିଁ
ତା’ ସୁତ ସମ   ନୋହିବ କାମ   ପଦ୍ମଧ୍ୱଜ ବୋଲାଇ । ୧୯ ।

ଗୃହ ଦିବସ   ତହିଁ ନିବାସ   କରି ତା’ ଶୋଭା ଦେଖି
ରୂପେ ବୟସ   ତାର ସଦୃଶ   ପଟେ ଅଙ୍କିଲୁ ଲେଖି

ତାଙ୍କ ପ୍ରେମ ଯୋଗ୍ୟ ସେ ତାଙ୍କୁ ଯୋଗ୍ୟ ଶଧି ବିଚାର ସେତେ
ହେ ନୃପବର ! ଇଚ୍ଛା ତୁମ୍ଭର ଭାବନା କର ଚତ୍ରେ । ୧୦

ଏତେ ଉତ୍ତର କହି ସତ୍ୱର ପଟ୍ଟ ବାହାର କରି
ନରେଶ ହସ୍ତେ ଦେଲେ ଭୂପତେ ମୁଦ୍ରାକୁ ପରଦର
ଦେଖି ରାଜନ ହରଷ ମନ ହୋଇ ବିଚାର କଲେ
ଜେମାଙ୍କୁ ବର ଏହି ନାଗର ବିହି ବିହଞ୍ଚି ଭଲେ । ୧୧ ।

ପ୍ରେତେକ କହି ମନ୍ତ୍ରୀଙ୍କି ଦେଇ ମୁଦ୍ରା ଥୋଇଲେ ପାଶେ
ଜେମା ପାଣିକୁ . ନ ଦେଲେ ତାଙ୍କୁ ବିରହ ବୃଦ୍ଧି ଅଶେଷ
କଲେ ବିଚାର ଏରୂପେ ଚାର ନ ପେଷି ଅଣାଇବା
ସତବ ଗ୍ରାସେ ଆଗତ ମାସେ ସ୍ୱୟଂବର କରିବା । ୧୨ ।

ସର୍ବ ଭୂପାଳ ଆସିବା ଛଳ ମୂଳ ତାହାର କଥା
ଜେମା ଦର୍ଶନେ ଅଣିବ ମନେ ବଢ଼ିବ ଗାଢ଼ ବ୍ୟଥା
ତା ସମ କେହି ନ ଥିବ ତହିଁ ବିରଚ ଛନ୍ଦ କହି
ସେ ଆମ୍ଭ କୁଳ କରି ଉଜ୍ଜ୍ୱଳ ଯିବ ବିବାହ ହୋଇ । ୧୩ ।

ପ୍ରେମନ୍ତ ମନ୍ତ୍ରି— ଗିରେ ନୃପତି ହେ·ଇଲା ଦଣ୍ଡଧାରୀ
ବଧୂ ବେଳାରେ ଆନନ୍ଦ ପୂରେ ସ୍ୱୟଂବରକୁ କରି
ସେ ଦିନୁ ବିଚାର କଲେ ପ୍ରଚାର ନୃପମାନଙ୍କ ପୁରେ
କରି ବରଣ ନିମନ୍ତ୍ରଣ ଦେଲେ ବଧୂ ବେଳାରେ । ୧୪ ।

ଶ୍ରୀନୀଳଗିରି— କନ୍ଦର ହରି ପଙ୍କଜ-ମୁଖ ଭାବ
କହେ ଏ ରସ ବାଙ୍କି ନରେଶ ଶିଶ୍ୱାଚନନ କବି
ହେ ଜଗନ୍ନାଥ ଅନାଥ-ନାଥ ସ୍ନେହ କରୁଣା କର
ହ ପଢ଼ ବହୁ ହେଉ ସମ୍ପୂର୍ଣ୍ଣ ସ୍ନେହ ପ୍ରବନ୍ଧ ମୋର । ୧୫ ।

---

## ଦଶମ ଛାନ୍ଦ

ରାଗ – ଶ୍ରୀ (ନୃପତ ଚେତଅ ବାଣୀରେ)

ଏଥୁ ଅନନ୍ତରେ ଜନେ ଶୁଣ ରସ ସାବଧାନେ
ନବ ଯଉବନ ଲବ୍ଧ ନୃପକୁମାରୀ
ବସନ୍ତେ ଚନ୍ଦ୍ର- ନିଶିରେ ନିର୍ମଳ ଚୂନ–ଚହଟେ
ଶେଯାର ପଲଙ୍କ ତଥି ଶୟନ କରି
ଉଦ୍ଦୀପନ ସମ୍ପନ୍ନେ କାଳ
ବଢ଼ିଲା ଏ ଯେନ ହୃଦେ କାମ–ଅନଳ । ୧ ।

ମନ୍ଦ ମଳୟ–ମରୁତ ହୋଇଲା ତହିଁକି ଯୁତ
କୋକିଳ ବଚନେ ମୂର୍ତ୍ତିବନ୍ତ ହୋଇଲା
ନ ଥିବାରୁ କାନ୍ତ ସଙ୍ଗ ଦହିଲା ଶରେ ଅନଙ୍ଗ
ଭ୍ରମର ଝଙ୍କାର ଗୁଣ ଟଙ୍କାର କଲା
ଯେତେକେ ବାଳା ନବବୟସୀ
ଜାଣଇ ଉତ୍ତମ କାମଶାସ୍ତ୍ର ବିଶେଷି । ୨ ।

ଲାଗିବାରୁ ଚନ୍ଦ୍ରକର ଦହିଲା ତନୁ ରୁଚିର
ଅନାଇ ଅଙ୍ଗକୁ ନୃପସୁତା ବିଚାରେ
ଏ ନବ ଯୁବାବୟସେ ଯାହା ପ୍ରିୟ ନାହିଁ ପାଶେ
କି କାର୍ଯ୍ୟ ଆଉ ଏ ନାନା ଭୋଗପ୍ରକରେ
ଧିକ ଏହୁ ଯୌବନ କାଳ
କାନ୍ତବିନୁ ପ୍ରାଣକୁ ହୁଅଇ ଗରଳ । ୩ ।

ତେଣେ ନୃପତି–କୁମର ମଣ୍ଡନ କରି ଚତୁର
ରଜନୀରେ ଚନ୍ଦ୍ରକରେ କରି ଶୟନ

୨-୩—ଧିକ ହୋଇ (ଶ) ।

ବାଳା ଭାବ ରସ ଶୁଣି                                    ଯେମନ୍ତ ସେ ଅଛୁ ଶୁଣି
କେମନ୍ତ ଲଭିବ ଭାବ କହୁଅଛ ଛନ୍ଦ
ସତେ ସିଦ୍ଧ କରିବେ ସ୍ନେହା
କାନ୍ତାମଣି ହେବ ମୋତେ ସ୍ୱରତେ ସାହା । ୪ ।

ଯୁବା ଦେହ ବହୁ କର                                    ଯାର ନାହିଁ ମନୋହାସ
କ କାର୍ଯ୍ୟ ତହିଁରୁ ଥିଲେ ଇନ୍ଦ୍ରସମ୍ପତ୍ତି
ରସିକ ସଂସାରେ ସାର                        କେବଳ ବନିତା ବର
ତା ଅଭାବ ହେଲେ ସୁରପୁର କପଟ
ଏତେ ଭାବ ଚନ୍ଦ୍ରଙ୍କ ହର
ଦେଖାଅ ଭୋ ପ୍ରଭୁ ମୋତେ ବଦନ ତାର । ୫ ।

ଯେଉଁରୂପେ ଅତି ଆରତ                                    ହେବାରୁ ନୃପତି ସୁତ
କେତେବେଳ ଅନ୍ତେ ନେତ୍ରେ ନିଦ୍ରା ପ୍ରବେଶ
ସତପସ ସ୍ୱପନରେ                                    ଦେଖିଲେ ସେ ପଦ୍ମିରେ
ଯେତେକବାଳା ମିଳେ ଯେଉଁ ସିଦ୍ଧ ଆଦେଶ
ହଂସ ପାଶେ ବସି ହରଷେ
କର ଧରି ଯେନଗଲ୍ଲ କୁମାରୀ ପାଶେ । ୬ ।

ବୋଇଲା ହେ ନୃପସୁତ !                                    ଯାହାରେ ତୁହି ମୋହିତ
ହୋଇଥାଉ ଅବିରତ ନିଶି ଦିନରେ
ସେ ରମଣୀ ଶିରୋମଣି                                    ହଂସ-ବାରଣ ଆରଣି
ଦେଖ ଶୋଇଛୁ ପଲଙ୍କେ ଚନ୍ଦ୍ର ଚନ୍ଦ୍ରରେ

୪ ୧—ଇନ୍ଦ୍ରସଂପଦ ( ଖ )
୫- ୨—ସୁରପୁର କପଟ ( ଖ )
୬- ୩—ହଂସରବ୍ଧ ଶିରୋମଣି ( ଖ )

ପାଚଲେ ରସାଅ ରସିକ
ଦେବାରୁ ଅନାଇ ବୁଡ଼ିଗଲା ବିବେକ । ୭ ।

ରସିକ ଶେଖର କରେ — ଏ ସମ ନାଗ ନାକରେ
ନାହିଁ ନ ଥିବ ମହୀରେ ଯେତ୍ରିହାକୁ ବଳ
ବିଏ ହୋଇ ମୂର୍ତ୍ତିବନ୍ତ — ମୋହିବାକୁ ଯୁବାବ୍ରାତ
ଅବନୀ ଅଗତ କି ନଷ୍ଟଳ ବଳ୍କୁଳ
ଭଡ଼ ଗଢ଼କରେ ଅସମ
ଘେନକ ଏହାକୁ ହର ଜିଣେମ କାମ । ୮ ।

ଶପୃନେ ଏତେ ସୁସମା — ଦଶୁଛ ନୃପଛ ଜେମା
ଅପୃନର ଅବକାଶ ନାହିଁ ନା ଛିଲେ
ମୋହନ କି ଦେହ ବହି — ମହୀରେ ଜନମ ହୋଇ
ଦେଖିବା ମାତ୍ରକେ ମନ ନେହ ନ ଠଲେ
ଝଳ ହଣେ କନକଚନ୍
ଲୋକନେ ପୀଡ଼ୁଛୁ ଅଙ୍ଗେ କୁସୁମଧନୁ । ୯ ।

ଦେଖି ଦେଖି ତନୁ ଛାଇ — ଶବା ଯୁଧାର୍ତ୍ତି ଭ୍ରମର
ପ୍ରଫୁଲ୍ଲ ସାରସ ଦେଖି ଉତ୍ସୁକ ହୋଇ
ସେହିରୂପେ ନୃପ ସୁତ — ବୁଦ୍ଧି ନୋହିଲା ସ୍ଥିରତ
ପରସ୍ପରେ ଇନ୍ଦ୍ରିଗଣେ ଅଭୁର ହୋଇ
ଲଭିବାକୁ ହେଲେ ଉଛନ୍ନ
ପ୍ରଥମେ ବୁଡ଼ିଲା ରୂପ ଜଳେ ନୟନ । ୧୦ ।

ଶ୍ରବଣକୁ ବାଣୀ ଛାଇ — ଶ୍ରବଣ ହୋଏ କାତର
ଭାଲେ କେତେବେଳେ ହସି କହିବ କଥା

ଜଳେ ସନ୍ତାପ-ଅନଳ    ହୋଇବ ତହିଁତ ଜଳ
ଲୀନ ହେବ ମାନସରୁ ସକଳ ବ୍ୟଥା
ସେ ସନ୍ଦର୍ଭ ସରସ ବାଣୀ
ଭାଗ୍ୟ ବିନା ଆନେ କି ସେ ହୁଅଇ ଶୁଣି । ୧୧ ।

ରସନା ରସ ଆସ୍ୱାଦ    କରିବ ହୋଇ ପ୍ରମୋଦ
ବାଗ୍ବିଭଇ ଯୁବା ଏତେ ଭାଗ୍ୟ ଦଶିବ
ବନ୍ଧୁ ବନ୍ଧୂକ-ଅଧର—    ମଧୁ ପାନରେ ତତ୍ପର
ମଧୁକର ପରିକ ତହିଁରେ ବଟିବ
ଅନ-ଅନୁଭବୁ ସୁକେଶୀ
ନ କରିବ ଅସୃ କାମେ ବଦନ-ଶଶୀ । ୧୨ ।

ପୂର୍ବେ ବନ୍ଧୁ ଉପକାର    ମନାଇ ହର ଗଉରୀ
ଜାଗରୁ ନିଶିରେ କରୁ ଭିନ କାଳରେ
ସେ ସୁକୃତ ଗଣି ଆସି    ଅବନୀ ତଳକୁ ଖସି
ମୂର୍ତ୍ତିବନ୍ତ ମୋଦ ପାଇ ହେଲା ମହୀରେ
ଆନ ଏହା ବସ୍ତୁନେ ନାହିଁ
ନୋହିଲେ ମୁଁ ଏହାକୁ କି ପାଉନ୍ତି ଗୃହିଁ । ୧୩ ।

କରୁ ନ କରୁ ସମ୍ମତ    ମହା-ମହୀନ୍ଦ୍ର-ଦୁହିତ
କର ଧରିଥିବ ହେଲେ ଥାଉଁ ଜୀବନେ
ଯା ସୁକୃତ ହେବ ବଡ଼    ମେ ତାକୁ କରିବ କୋଡ଼
ସ୍ୱେଦନ୍ତ ବାଗ୍ମିର ଯୁବା କରିଣ ମନେ
ବସି ତାର ଚରଣ ତଳେ
ଧୀରେ କର ନିବେଶିଲା ପଦ- କମଳେ । ୧୪ ।

ରସିକ ରତନ କର ଲାଗିବା ମାତ୍ରେ ସତ୍ୱର
ନାଗରୀ-ରତନ ନିଦ୍ରା ହୋଇଲା ହତ
ଦ୍ରବେ ଯେହ୍ନେ ଚନ୍ଦ୍ରକରେ ଚନ୍ଦ୍ରକାନ୍ତ କାନନରେ
ତେହ୍ନେ ନୃପନନ୍ଦନୀ ହୋଇଲା ଦ୍ରବିତ
ସଂଭ୍ରମରେ ଉଠି ସୁକେଶୀ
ଆଳସେ ନୟନ ବେନି କଚରେ ଘଷି । ୧୫ ।

ଫେଡ଼ ଅନାଇଲା ବେଳେ ଭାବବତୀ ଭାବ ଭୋଳେ
ଦେଖିଲା ଚରଣ ତଳେ ଏକ ପୁରୁଷ
ବିଶ୍ୱରେ ଏତ ମନୁଷ୍ୟ ନୋହିଲି ଶୋଭା—ବିଶେଷ
ସୁଧାକର ପୁରନ୍ଦର କିବା ମହେଶ
କାମ ହେଲା କି ମୂର୍ତ୍ତିବନ୍ତ
ଏ ସୁଷମା ସମାନେ ତ ନାହିଁ ଜଗତ । ୧୬ ।

କିବା ମୋ ସୁକୃତ ଫଳ ରହିଥିଲା ହୋଇ ଠୂଳ
ଶୁଣିବାକୁ ଯେତଦିନେ ବିଧିବିଗ୍ରହ
ହୋଇଣ ଉତ୍ତମ ମନା କଲ ଯେହ୍ନାକୁ ଘଟନା
ମଣ୍ଡନ କନକ ଅଟି ଅବନୀଶିର
ପୁଣି ଯୁବାସମସ୍ତ ଜାଣି
ଭେଟାଇଲେ ମୋତେ ହୋଇଥିଲେକୁ ଗୁଣୀ । ୧୭ ।

କରୁ ଯେମନ୍ତ ବିଚାର ରସିକ ରମଣୀ ବର
ନୟନେ ନୟନ ମିଶା ମିଶି ହୋଇଲା
ମନେ ମନ ପରଷରେ ଜଡ଼ ଅନ୍ତରେ ଅନ୍ତରେ
ସାତ୍ତ୍ୱିକ୍ୟ କାତର ଅଙ୍ଗଦେଶେ ବ୍ୟାପିଲା

୮—୬-ମନେ ମନେ ( କ )।

ଦୁହିଙ୍କର ଜାତ ଶକାର
ତରୁଣ ତରୁଣୀ ଭାବେ ହୋଇ ଜର୍ଜର । ୧୮ ।

ବେନକର ଯୋଡ଼ ପୁଂସ                         କରଇ ଶୃଙ୍ଗ ପ୍ରକାଶ
ନରେଶ ନନ୍ଦିନୀ ଘେନ ବିନୟ ବାଣୀ ;
କାମତପ୍ତେ ତୋ ଚରଣ—                         ତଳେ ପଶୁଛି ଶରଣ
ଅଙ୍ଗୀକାର କର ରଖ ନୃପ ଦୁଲଣୀ
ହୋଇଥିବ ସେବକ ତୋର
ଯେତେଦିନ ଯାଏ ଥିବ ଜୀବନ ମୋର । ୧୯ ।

ଛାଇ ପ୍ରାପ୍ତେ ହୋଇ କର                         ନ ଛାଡ଼ିବ ସୁକୁମାରୀ
ମାରୁଛି ଅନଙ୍ଗ ଶର ବଶେ ବଶାଇ
ଏଥିରେ ସାହା ନୋହିଲେ                         ଜୀବ ନ ରହିବ ଭଲେ
ବଳମା କରୁଛି ତୋତେ ଲଭିବା ପାଇଁ
ଯେବେ ନ କରବୁ ସୁଦୟା
କହୁ ଅଛି ନଷ୍ଟେ ଫାଟିଯିବ ମୋ ହିଆ । ୨୦ ।

ତରଣ ସେବକ ପତି                         ସେବ୍ୟ ଥିବ କୃଶୋଦରି !
ଦେଖି ତୋ ବଦନ ବଞ୍ଚି ଥିବ ରଜନୀ
ତୋହେ ମୁଁ ଛାତି ଉପରେ                         ପକାଇ ଅବିରତରେ
ତୋଷ କରୁଥିବ ମନ ପ୍ରାଣଦାୟିନୀ !
ତୋତେ ଛାଡ଼ି ଆନରେ ମନ
ଯେବେ ଦେବ ଜୀବଧନ ! ଯିବ ଜୀବନ । ୨୧ ।

କହୁଛି ପ୍ରାଣସଜନ !                         ଯେତେ ମୋ ବିନୟ ଘେନ
ସୁଦୟା ଚତ୍ତେ ଥରନ୍ତ ହୋଇ ବଞ୍ଚିତେ

୨୧-୨—ଇଣିଣ ଅବିରତରେ ( କ )

ଆଲିଙ୍ଗନ କର ମୋତେ   ରଖ ଜୀବନ ଭୂରତେ
ରଖିଥିଲେ ସେବଥିବ ତୋତେ ନିରତେ
ଆନ ଆନନରେ ନୟନ
ଯେବେ ପକାଇବ ନ ଗ୍ରହିଁବୁ ବଦନ । ୨୨ ।

ହର ହରଷରେ ସେବ   ଦେଖିଲୁ ତୋତେ ବାନ୍ଧବ
ଚଖିଲୁ ଜୀବକୁ ଉପେଖିଲୁ ଦୁଃଖକୁ
ମନ ନୟନ ମୋହର   ବଶ ହୋଇ ତୋ ପାଶର
ଛାଡ଼ି ନାହାନ୍ତି କେବଳ ପାଇ ସୁଖକୁ
ଏଣୁ ମୋର ଅସୁଭ ନାହିଁ
ଅନ୍ତର ଭୁ କଲେ ମଲି ଚନ୍ଦ୍ରମାମୁହିଁ ! । ୨୩ ।

ଯେ ରୂପେ କୃଷ୍ଣ ପ୍ରକାଶି   ରସିକ ବାଳାକୁ ତୋଷି
ମଦନ-ଆରତେ ପୁଣ ଧଇଲା କର
ହୃଦରେ ହୃଦକୁ ଯୋଡ଼ି   ବେନି ଭୁଜେ ଗାଢ଼େ ଘଡି
ଗଣ୍ଡେ ଗଣ୍ଡକୁ ନିବେଶି ଚୁମ୍ବି ସଧର
ପୁଣି ଅଢ ବନସ୍ଥ ହୋଇ
ଆଣି ଏଣୀନୟନୀକୁ କୋଳେ ବସାଇ । ୨୪ ।

କ୍ଷଣେ ମନ ଜଡ଼ଗଲା   ରସେ ଜ୍ଞାନ ବୁଡ଼ିଗଲା
ଲଜ୍ଜା-ଘନ ଉଡ଼ିଗଲା ସ୍ନେହ-ବାତରେ
ଅନୁରାଗ ବଢ଼ିଗଲା   ସଖୀ ସଙ୍ଗ ଛାଡ଼ିଗଲା
ଗୃହ୍ନିଁ କାମ୍ ପଡ଼ିଗଲା ଦୃଷ୍ଟିପାତରେ

୨୩-୪—ଅନ୍ତର ନକର ଲେଶେ ଚନ୍ଦ୍ରମାମୁହଁ ( କ )
୨୪-୨—ଗଣ୍ଡେ ଗଣ୍ଡକୁ ନବେଶି ଚୁମ୍ବି ସଧୁର ( ଖ )

ଭୀରୁ-ଭ୍ରୂରୁ କାମ କମାଣି
ଯୋଖି ବନ୍ଧାଇଲା ପୁଂସଙ୍କୁ ନୟନ ବାଣ । ୧୫ ।

ପୁରୁଷ ଚହିଁବ ପ୍ରଭ— ଶରେ ନ ମାରିଲା ବର୍ତ୍ତି
ଫୁଟିବାରୁ ହୃଦପୁରେ ଫୁଟି ରହିଲା
ମୂର୍ଚ୍ଛିତ ଦେଖି ତରୁଣୀ ପ୍ରଦୟା ଉଦୟ କରି
ଉତକ-ଚୁମ୍ବକ ଯୋଗ କରି କାଢ଼ିଲା
ଆଲିଙ୍ଗନ-ଲେପକୁ ଦେଇ
ଅଧର ମଧୁର ଅଉଷଧ ଖୁଆଇ । ୧୬ ।

ସଚେତ ହୋଇ ଭ୍ରମର ନଦ୍ରିକା କରି ବାଦାର
ତରୁଣୀ-ରତନ କରେ ହରଷେ ଦେଲା
ବାଳିକା ମୁକୁତା ହାର ଫିଟାଇ କଣ୍ଠୁ ସତ୍ୱର
ଭ୍ରମର-ହୃଦରେ ନେଇ ମଣ୍ଡନ କଲା
ପଚାରେ ବରଣ ବିଧି
ମନେ ମନେ ବେନିଜଣେ କଲେକ ଦିବି । ୧୭ ।

ରତ ଲୋଭ୍ର ହେତ ଗତି ହଠିଲା ମାୟା ଯୁବତୀ
ଭ୍ରମର ବରକୁ ନିଜ ପୁରକୁ ନେଇ
ଭାଜିଲା ଦୁହିଙ୍କ ନିଦ ପଡ଼ିଲା ବଡ଼ ପ୍ରମାଦ
ଯେ ଯହିଁ ଥିଲେକ ତହିଁ ଅଚ୍ଛନ୍ତ ଶୋଇ
ଜାତ ହେଲେ ବିରହ-ଜ୍ୱର
ଭଣେ ପଦ୍ମନାଭ ବାଙ୍କି ନଗ୍ର ଈଶ୍ୱର । ୧୮ ।

---

# ଏକାଦଶ ଛାନ୍ଦ

ରାଗ—ଚିନ୍ତା ଦେଶାକ୍ଷ (ସଙ୍ଗମ ଛିଅରି ବାଣୀରେ)

ଚେତ ସଜନୀ ରଜନୀ ବିନାଶ ଗୃହ୍ନିଁ ।
ଦେଖିଲା ପଲଙ୍କେ ଯୁବା ପୁରୁଷ ନାହିଁ । ୧ ।
ହୃଦୟତଟେ କର ମାର କରେ କାରୁଣ ।
ବୋଲଇ ଦଇବ ତୁହି ଏଡେ଼ ଦାରୁଣ । ୨ ।
କ୍ଷୁଧାର୍ତ୍ତ-ଜନକୁ ପରଷିଣ ଅମୃତ ।
ଭୁଞ୍ଜିବା ବେଳକୁ କଲୁ କୁଳିଶ ଘାତ । ୩ ।
ଯେବେ ଥିଲୁ ଦେଖାଇ ଦଶବା ବଗ୍ରର ।
ନ ନେଲୁ ସେ ସଙ୍ଗେ କିମ୍ପା ପରାଣ ମୋର ।୪।
ଏ ବଚନ ଶୁଣି ସଙ୍ଗ ସଜନୀ ଉଠି ।
ଦେଖିଲେ ଆଗନ୍ତୁଁ ବସିଅଛୁ ବିମ୍ବୋଷ୍ଠୀ । ୫ ।
ଲୋତକ ପୂରଛୁ ମୀନ·ନୟନ ଦେଶେ ।
ବସିଛୁ ସୁନ୍ଦରୀମଣି ଅଭ ବଦସେ । ୬ ।
ସମ୍ଭାଳ ନୋହୁଛୁ ବାସ କୁନ୍ତଳ ଭାର ।
କଳକଣ୍ଠୀ କଣ୍ଠ ହୃର ଦ୍ୱୋଇନ୍ନ ଦ୍ୱାର । ୭ ।
ବାମ କରତଳ ଗଣ୍ଡମଣ୍ଡଳେ ଦେଇ ।
ମହୀପତି-ନନ୍ଦିନୀ ରୋଦନ କରଇ । ୮ ।
ଆହା ପ୍ରାଣନାଥ ! କି ଦୋଷରେ ଛାଡ଼ିଲ ।
ନିରାଶ କରଣ ମୋତେ ସଙ୍ଗେ ନ ନେଲ ।୯।
ଅସାର ଜଲ ଯା ଦେଖାଇଲ ବଦନ ।
ମଦନକୁ ଦେଇଗଲ ମୋ ଜୀବ ଦାନ । ୧୦ ।

ପୂର୍ବ-ଗଗନରେ ଘନ ପ୍ରାୟେ ଘୋଟିଲ ।
ମୋ ଚିତ୍ତ ଚାତକୀ ଆଶା ବଢ଼ାଇ ଦେଲ ।୧୧।
ନ ବରଷୁ ବାରି ମୋରେ ବାମ ହୋଇଲା ।
ନିଦ୍ରାନ୍ତ-ବାତ ତାହା ଉଡ଼ାଇ ନେଲା ।୧୨।
ଅନ୍ତକ-କୁଳିଶ ପକାଇଣ ଶିରକୁ ।
ଚୂର୍ଣ୍ଣିକଲ ଗଲ ମୁଁ କହିବ କାହାକୁ ।୧୩।
ଶୋକ-ଝଞ୍ଜା ପବନେ ମୋ ନେହ-ଡିଙ୍ଗୁଳା ।
ଉଡ଼ାଇ ନେଲ ଯା ସ୍ନେହ ମଙ୍ଗଳ ହେଲା ।୧୪
ସରସ-ସନ୍ଦର୍ଭ-ବାଣୀ-ପୀୟୂଷକର ।
ଉଦୟ ଜାଣି ମୋ ବେନି ଶ୍ରୁତି-ଚକୋର ।୧୫।
ସୁଧା ପାନ ପାଇଁ ଆଶା କରିଣ ଥିଲେ ।
ଅନ୍ତର ଜାଣି ଆଶାୟୀ ହୋଇ ରହିଲେ ।୧୬।
ସତେ କି ସେ ସୁଧା ବାରେ କରିବେ ପାନ
ଏଣେ ଏହାଙ୍କର ଭିଡ଼ୁଅଛି ଜୀବନ ।୧୭।
ଆହା କେ କରିବ ତାହା ସାହା ବାହାରେ ।
ପ୍ରାଣନାହା ବୋଲି ମୁଁ ବୋଲିବ କାହାରେ ॥
ମୁଁ ବଡ଼ କରମହୀନ ଜନଙ୍କ ପର
ପୂରୁବ ତପସ୍ୟା ଅବା ନାହିଁ ମୋହର ।୧୯।
କ୍ଷୁଧାବନ୍ତ ଜନେ ଅନ୍ନ ଦେଇଣ ନାହିଁ ।
ସେବେ ଆଉ ଲୋଡ଼ିଲେ ମୁଁ ପାଇବ କାହିଁ ॥
ତନୁକୁ ଅତନୁ-ଶର ତାଙ୍କ ବହ୍ନିନେ ।
ପୀଡୁଅଛି ସେ ପୀଡ଼ାକେ ଦେଖନ୍ତି ଆନେ ।୨୧।

୧୮-୨—ବୋଲି ମୁଁ କହିବ କାହାରେ (ଖ)

ଛାଡ଼ୁଅଛୁ ଯେହ୍ନେ ଫେନ ନାଡ଼ି ମୋହର ।
ମାଡ଼ି ପଡ଼ୁଅଛୁ ନିଶି ପ୍ରାୟେ ବାସର । ୧୨ ।
ବଢ଼ୁଛୁ ବିରହ ଯେଣୁ ପୋଡ଼ୁଛୁ ଦେହ ।
ନେଉଅଛୁ ତୁମ୍ଭ ସଙ୍ଗ ବଢ଼ୁଛୁ ମୋହ । ୧୩ ।
ଛାଡୁଅଛୁ ଶ୍ୱାସ ଜାଡ଼ ବାନ୍ଧୁଛୁ ବାଣୀ ।
କି କରିବି ନିର୍ବିଡ ନ ଦର୍ଶନ ପୁଣି । ୧୪ ।
ଅବଶ ହୋଇଲି ପଶ ନାହିଁ ମୋହର ।
ରକ୍ଷା କର ଏଥୁଁ ମୋତେ ନାଗରବର । ୧୫ ।
ଘର ମାର-କାଗ୍ନି ପରି ମଣୁଛି ମନ ।
କେମନ୍ତେ ବଞ୍ଚିବ ଧନ ତୁମ୍ଭ ବିହୁନେ । ୧୬ ।
କ୍ଷଣକରେ ଯେତେ ସୁଖ ଦେଲେ ସୁନ୍ଦର ।
ଗଣି କେ ପାରିବ ଯେବେ ଦୁଖ ମୋହର । ୧୭ ।
ଯେତେ ନିଷ୍ଠୁର ବୋଲି ମୁଁ ଜାଣି ନ ଥିଲି ।
ସ୍ୱପନ କଥାକୁ ସତ ପରି ମଣିଲି । ୧୮ ।
ଲପନ ତୁମ୍ଭର ମୋର ରହିଲା ନେତେ ।
ସେ ବିହୁନେ ଆନ ନ ଦିଶିଲା ଜଗତେ । ୧୯ ।
କି କରିବ ଯୁବାବର ଉପାୟ କହ ।
ତୁମ୍ଭ ବିନୁ କାମ ମୋତେ କରିବ ଦାହ । ୩୦
ଏ କପଟ ଯେବେ ଥିଲା ତୁମ୍ଭ ମନରେ ।
କି ବିଗ୍ରହ ଭେଟ ମୋତେ ଦେଲ ନିଶାରେ ॥
ଭଜିଥିଲି ରଖି ନ ପାରିଲି ଶରଣ ।
ଲଭ ଯେବେ ତହିଁରୁ ହୋଇଲା ମରଣ । ୩୧ ।
ଯେମନ୍ତ ପ୍ରକାରେ ବାଳା ବିଳାପ କରେ ।
ପୁଣ ପୁଣ ନିଜ କର ଘାତେ ହୃଦରେ । ୩୩ ।

ଏରୂପେ ଏମାନ ଦେଖି ଚତୁରା ସଖୀ ।
ବୋଇଲେ ତୁ କି କାରଣେ ହୋଇଲୁ ଦୁଖୀ ॥
ନାହିଁ ବାର୍ତ୍ତା ଦେଉ କି କେ ପୁରୁଷେ ଲାଗ ।
କରିଅଛୁ କମ୍ପଗାତ୍ର କହ ମୋ ଆଗ । ୩୫ ।
ଏତେ ଶୁଣି ବସି ବାଳା ସଜନୀ ପାଶେ ।
କହଇ ମନର ତାପ ଅତି ହରଷେ । ୩୬ ।
ଶୁଣ ପ୍ରାଣସଖି ଆଜ ଗତ ନିଶାରେ ।
ଦିବ୍ୟ ଯୁବା ବସି ମୋର ପଲଙ୍କ ପରେ । ୩୭ ।
ଭଙ୍ଗାଇଣ ନିଦ୍ରା ମୋର କର ଧଇଲା ।
ପରିଜନ ପ୍ରାୟେ କେତେ ଗୃଢ଼ କହିଲା । ୩୮ ।
ଶୁଣି ତାଠାରେ ମୋ ମନ ଗଲାକ ମିଶି ।
ପୁଣି ବଦନରେ ଚୁମ୍ବ ଦେଲା ହରଷି । ୩୯ ।
ଆଲିଙ୍ଗନ କରି ମୋତେ କରନ୍ତେ କୋଳ ।
ଭାଙ୍ଗିଗଲା ନିଦ ମୁଁ ହୋଇଲି ବିକଳ । ୪୦ ।
ଯେବେ ସେ ପୁରୁଷବର ଲଭିବ ନାହିଁ ।
ତୋ ଆଗେ କହୁଛି ଜୀବ ତେଜିବି ମୁହିଁ ॥
ଯେବେ ମୋ ପ୍ରାଣକୁ ଆଶା ଅଛି ତୁମ୍ଭର ।
ଖୋଜି ଆଣି ଦିଅ ସେହି ନାଗରବର । ୪୧ ।
ସଖୀ କହେ ନୟନରୁ ନ ତେଜ ଆପ ।
ଆକାଶ ଚନ୍ଦ୍ରକୁ ଇଚ୍ଛା କରୁ ସନ୍ତାପ । ୪୩ ।
ହୁଅଇ କି କାର୍ଯ୍ୟ ହେଲେ ଥିଲେ ଆତୁର ।
କହିବା ଉପାୟ ଚିନ୍ତ ଥିର ତୁ କର । ୪୪ ।
ସ୍ୱପନ ଦେଖିଛ ମୁହିଁ ଆଜ ରାଜଜେମା ।
ତୋ ସଙ୍ଗତେ ଥିଲୁ ଆମ୍ଭେ ବନ୍ୟବିହାରେ ॥

ଏକ ଦିବ୍ବ ସେ ଠାବରେ ପ୍ରବେଶ ହେଲ୍ଲ ।
ବହୁତ ଚରିତ ସେ ଅମ୍ଭଙ୍କୁ କହିଲା । ୪୬ ।
ଦେଖାଇଣ ଏକ ପଟ କଲା ଉଚ୍ଚାଟ ।
ତହିଁରେ ତୋ ଚିତ୍ର ହେଲା ଅତି ଲମ୍ପଟ । ୪୭।
ସାକ୍ଷାତରେ ତାଙ୍କୁ ଭେଟାଇବ ବୋଇଲା ।
ଉଚ୍ଚାଟ କରିଣ ତୋତେ ଅନ୍ତର ହେଲା । ୪୮ ।
ସେ ପୁରୁଷଙ୍କୁ ତୁ ଅବା ସ୍ୱପ୍ନେ ଦେଖିଲୁ ।
ନୋହିଲେ କାହିଁକି ବିର୍ବମାନସ ହେଲୁ । ୪୯ ।
ସଙ୍କେତ ବୁଝିବାଯାଏ ନୁହ ଅତୁର ।
ନିଶ୍ଚେ ଲଭିବା ଅମ୍ଭେ ପୁରୁଷବର । ୫୦ ।
ଏ ବଚନେ ବାଳା ହେଲା ସନ୍ତାପ ଦେଛ ।
ସଖୀସଙ୍ଗେ ନାନା ହାସରସରେ ମଞ୍ଜି । ୫୧ ।
ଚିନ୍ତା କର ଜଗନ୍ନାଥ ପଦ ସାରସ ।
ରସେ ଭଣେ ପଦ୍ମନାଭ ବାଙ୍କୀନରେଶ ॥

---

୪୭—୧-ପ୍ରାଣରୁ ଥଣ ( ଗ ) । ୪୭—ତୋ ସଙ୍ଗେ ଯେ ଥିଲୁ ( ଖ )
୫୧—୨-ନାନା ହାସେ ରସରେ ( ଖ )

# ଦ୍ୱାଦଶ ଛାନ୍ଦ

ରାଗ—କଲ୍ୟାଣ ଅହାରୀ

ଯେଉଁ ଅନ୍ତେ ବାଳା ବିଳାପ କରନ୍ତେ ଋତୁରାଜ ପ୍ରବେଶ ହୋଇଲା
ମଳୟ ମନ୍ଦ ମରୁତ ଧୀର ଧୀର ହୋଇ ମହୀରେ ପ୍ରସରିଲା
ପ୍ରଥମେ, ସହକାର ତରୁ ବଉଳ
ବସନ୍ତ କାନ୍ତ ପ୍ରବେଶ ଜାଣି ବନ-କାନ୍ତ ମଣ୍ଡିଲା କି ମଞ୍ଜୁଳ । ୧ ।

ମଦନ-ରାଜ ରାଜ୍ୟ ଅବସର ଜାଣି ସଖା ପୁଷ୍ପସମୂହ
ବାହାର କଲା ସେ ମହାରାଜ ବିଧି ଯୋଗ୍ୟ ଉପଗ୍ରହ ଅବାଧ
ଅଗନ୍ଧ, କୁରଅନା—ଛତ୍ର ଟେକିଲା
ପଲ୍ଲବ—ତୋରଣା ସ୍ଥିତ କରି ଆଗେ ବିବେକ ଭ୍ରମର ଡାକିଲା । ୨ ।

ବିଧିରେ ଧୀରେ ଧୈର୍ଯ୍ୟ ହରି କଲେ କୋକିଳ ମଙ୍ଗଳ ଆଳାପ
ସୁବାସେ ମଣ୍ଡନ ହୋଇ ସୁରୁଚିରେ ଉତ୍ଫୁଲ୍ଲ ଗଣିକା ସମୀପ
କଳୁଷ,—ଅଙ୍ଗନା ଉଭା ଧରି କର
ରଜତ-ଦର୍ପଣ ଅର୍ପଣ କଲେ କି କପଟ ପୂର୍ଣ୍ଣ ସୁଧାକର । ୩ ।

ଭ୍ରମର ଝଙ୍କାର ତା ଗୁଣ ଟଙ୍କାର ଶୁଣି ଚମକିଲେ ବିରହୀ
ଛଳିଲେ ଅବଶେଷ ଭଳିଲେ ମଦନେ ଚଳିଲେ ଘରକୁ ନ କହି
କ୍ରମଶେ, ପୁଷ୍ପିତ ହେଲେ ତରୁରାଜି
ଗନ୍ଧବହ ଗନ୍ଧ ଯେନି ବହିବାରୁ ବିଯୋଗୀ ଧୀର ଗଲା ଭାଜି । ୪ ।

ଫୁଟିଲେ ଚମ୍ପା ନ କଲେ ଅନୁକମ୍ପା ଭୃଙ୍ଗ ଭଙ୍ଗ ପ୍ରୀତି ହୋଇଲେ
କେତକୀ ଘାତକୀ ରୂପେ କରି ଅଛ ପାତକୀ ବୋଲି ନ ଗ୍ରହିଲେ

କମଣେ, ଫୁଟିଲେ ସକଳ ପ୍ରସୂନ
ତରୁଲତା ଶୋଭା ଦଶିଲେ ବାଳକା ଲଭ ଯେସନ ଯଉବନ । ୫ ।
ଲାଗି ଯା ସୁରଙ୍ଗ ପୁଷ୍ପତରୁବଂଶ ଭଞ୍ଜଲେ ପଲ୍ଲବଶ୍ରାବକୁ
ଅନୁରାଗ ନବ ଯାହାର ସମ୍ପଦ ରକ୍ଷିବ ତ ସେହୁ ଜନଙ୍କୁ
କୋକିଲ, କଳରବ କାଳ ଗରଳ
କଣବାରୁ ପାନ କର୍ଣ୍ଣେ କାମିଜନ ଲଭଲେ ମୋହକୁ ସକଳ । ୬ ।
ଏମନ୍ତ ବସନ୍ତ ସମସ୍ତ ନରେକ୍ଷି ପ୍ରିୟସଖୀ କହେ ବାଳାକୁ
ଅଛ ମଧୁର ମଧୁଋତୁ ପ୍ରବେଶ ଅଣି ନାହିଁ ପଦ୍ମ ମନକୁ
ସମ୍ପ୍ରତି,ଦେଖିବା ଚାଲ ଉପବନ
ଯହିଁରେ ସାକ୍ଷାତ ରତି ଯେନ ସଙ୍ଗେ ବିହାର କରୁଛି ମଦନ । ୭ ।
ସଜନୀ ବଚନ ଶୁଣି ଏଣୀଦୃଗୀ ଚିତ୍ତରେ ହୋଇଲା ହରଷ
ବାଳା ସୀତ୍କାର ଜାଣି ସଖୀମାନେ କଲେ ଯଥୋଚିତ ସୁବେଶ
ଯତନେ, ମାର୍ଗ ପରିଷ୍କାର କରାଇ
କୋମଳ ଚରଣ ପୀଡ଼ା ନୋହିବାକୁ ସେବତୀପାଖୁଡ଼ା ବିଛାଇ । ୮ ।
ସିଞ୍ଚିଲେ ସେଥିରେ ଚୂର୍ଣ୍ଣ ଘନସାର ଚୂର୍ଣ୍ଣକେଶୀ ମୋଦ ଆଶାରେ
ଅତରେ ଭିଜିଣ ଯତନେ ବାସକୁ ପକାଇଲେ ତହିଁ ଉପରେ
ସକଳ, ସଖୀ ଧରି ସର୍ବ ସମ୍ଭାର
ଚନ୍ଦ୍ରକଳାକୁ ଯେନ ଦେଲେ ପ୍ରବେଶ ଉଦ୍ୟାନରେ ଶୋଭା ଅପାର । ୯
ଜଣାଇଲେ ବାଳାମଣି ବିଜେ କର ସମସ୍ତ ତ ଅଛି ହୋଇଲା
ଏ ବାଣୀ ରମଣୀ ହୃଦ କୁମୁଦକୁ ଚନ୍ଦ୍ରମା ପରି ଉଲ୍ଲାସିଲା

୫-୭—ପାଠାନ୍ତର ବୋଲି କି ଚାହିଁଲେ (ଖ)

ଜାଣିଣ, ପ୍ରିୟସଖୀମାନେ ଉଠିଲେ
ଶୀକର ପଇଠ ଙ୍କେ କଟରେ ଦେଉଣ ନ କର ବଳମ୍ ବୋଇଲେ । ୧୦

ପଦଣ୍ଡ ମଣାଇ ସମସ୍ତ ଜଣାଇ କେନ୍ଦ୍ର ଆଗ ହେଲ ବାହାର
ପଥରେ ସଖୀଙ୍କ ସାଥରେ ନାୟିକା ମନ୍ଦରେ ପକାଇ ପୟର
ବାକ୍ୟକୁ, ଯେମନ୍ତ ସଦ୍ଧରଜ୍ଞା ନକର
ପାଦର ନେପୁର ମୃଦର ନାଦରେ ମଣ୍ଡିଲେ କାନନ ଉଦର । ୧୧ ।

କହ ସଜନୀ ରଜନୀକରମୁଖୀ ଶୁମୁରେ କହଇ ପ୍ରେମନ୍ତ
ଚତୁର ଗୃହିଁ। କାନନକୁ କ ଶୋଭା କରଇ ନବୀନ ବସନ୍ତ
କୋକିଳ,—ବଚନେ ରମଣୀୟ ଅଛ
ବଦେଶୁ କାନ୍ତ ଆଗମେ କ ନାୟିକା କହନ୍ତ ମଙ୍ଗଳ ଗାଇଣ । ୧୨ ।

କହ ସଖୀ ଚହିଁ ଆଗହର ହୋଇ କହଇ ଗଜଗମନାକୁ
ଦେଖ ଧବ ପାଶେ ଅତ୍ୟନ୍ତ ହରଷେ ପ୍ରଫୁଲ୍ଲିତ ଛୁରଥନାକୁ
ଚତୁର, ପ୍ରେମନ୍ତ ପ୍ରଣୀତ ହୋଉଛି
ନାୟକ ସଦରେ କ ଅବା ରହରେ ପ୍ରେମ ହରଷକୁ ବହୁଛି । ୧୩ ।

କେବୋଲେ ଆରାମ ଅଛ ଅଭିରାମ ହୋଇଛି ଅବଳା ପ୍ରକାରେ
ଶ୍ରୀଫଳ କୁଚରେ ମନକୁ ମୋହୁଛି ସଙ୍ଗ ହୋଇ ପଲ୍ଲବଳୀରେ
ମନାଗ,—ଅଧରେ ଶୋଭା ପାଉଅଛି
ତମାଲ ପ୍ରକର ଚକୁର ନକର ମାନସକୁ ବଶ କରୁଛି । ୧୪ ।

ପ୍ରଫୁଲ୍ଲ ମଲ୍ଲିକାବଳକା ସୁଷମ କୁସୁମ ହାସରେ ମଞ୍ଜୁଳ
କର କୋରକ କୁନବୃନ୍ଦ ରଦ ସୁନୟନ ନୀଳ ଉତ୍ପଳ

କ ) । ୧୩-୪—କି ଶୋଭା (ଖ) ୧୩-୪—କି ଅବା ରହରେ ବାଳା ପ୍ରେମାଙ୍କୁ ବହୁଛ
ଗ ୧୪-୪—ଅର୍ଥ ମନୋରମ କ

ପଲ୍ଲବ,—ତଙ୍ଗ କରତଳ ରୁଚିର
ଅଙ୍ଗୁଳି ଚମ୍ପକକଳିକା ସୁନଖମାଳିକା କରଜ ପ୍ରକର । ୧୫ ।

କେ ବୋଲେ ଏ ବନ କୁମ୍ଭ ଇନ୍ଦ୍ରଜିତ ସ୍ଥିତୁଁ ଲଙ୍କାପୁରୀ ବଦତ
କୀଚକ ଉଦ୍ଧାମ ନିସ୍ୱନ ଆଶ୍ରମୁ ବଶିଷ୍ଠ ନଗର ସାକ୍ଷାତ
କୁବେର, ଥିବାରୁ ନିଶ୍ଚୟେ ଅଲକା
ସୁରଭ ସଙ୍ଗରୁ ଏ ମୁନି ଆଶ୍ରମ ଦେଖ ଏ ପ୍ରଦେଶ ଭେଣ୍ଟିକା । ୧୬ ।

ଦେଖ ଦେଖ ସଖି ଏ ଶୃରୁକବଶ୍ରୀ ମଣ୍ଡନ୍ତୁ ଅପୂର୍ବ ନାଗରୀ
ନବ ବଧୂମାନେ ଭଜଛନ୍ତି ଦେଖ ପଲ୍ଲବ ରାଗ ଅନୁସରି
କେ ବୋଲେ, ପ୍ରମାଣ ଅଟଇ ଏ କଥା
ନୋହିଲେ ଭୂଷଣ କରନ୍ତେ ଅଙ୍କିତ ହୃଦୟୁ ନୁହଇ ସର୍ବଥା । ୧୭ ।

ସ୍ୱେରୂପ ଅନେକ ରସ କଉତୁକ ପ୍ରେମେ ପ୍ରେମେ ସଖୀ କହିଲେ
ଅଛି ମନୋରମ ଆଶ୍ରମ ମଧ୍ୟରେ ରମ୍ୟନେତ୍ରୀ ଯାଇ ପଶିଲେ
କେ ବୋଲେ, ଦେଖରେ ନବୀନ ବାଳକା
ବିଟପେ ବେଷ୍ଟିତ ହୋଇଛି ବନିତା ପରି ନବ ନବ ମାଳିକା । ୧୮ ।

ଦେଖ ରସାଳ ରସାଳ ପକ୍ୱଗୋଟ ! ରସାଳସୀ ଶିରମଣ୍ଡନା
ବସନ୍ତ କାନ୍ତ ଏକାନ୍ତ ଅଗ୍ରେ କାନ୍ତ ପଲ୍ଲବ-ଶତରେ ଶୋଭନା
ହୋଇଛି, ଅଶାନ୍ତି ତାରେ ଅନୁରାଗୀ
ଯାର ଭ୍ରମର ଭ୍ରମେ ରସ ନ ପାଇ ନିରାଶେ ଯାଉଛନ୍ତି ଭାଗି । ୧୯ ।

ଦେଖ ବକୁଳ ମୁକୁଳ କୁଳବତ ! ଭଜୁଛି ବିକାଶ ଭାବକୁ
ମଧୁପ ମଧୁପାନକୁ ଆଶ କରି କ୍ଷଣେ ନ ଛାଡ଼େ ସମୀପକୁ
ସଦାତ, ଜାଣି ଯଉବନ ସମ୍ପଦ
କାନ୍ତାକୁ କାନ୍ତ ଯେମନ୍ତ ନ ତେଜନ୍ତି ପ୍ରକାଶି ବହୁତ ବିନୟ । ୨୦ ।

ଚଇତ୍ର ଚ ଗର ପଭ ଅପ୍ରୁଣଦ ହୃଅଇ ବରହୀଜନକୁ
ନରେଶ-କୁମାରୀ ଭୁ ଚ ସୁକୁମାରୀ ଯୋଗ୍ୟ ଏ ନୋହେ ଗ୍ରହିବାକୁ
ଯଦ୍ୟାତ, ଅଶୋକରେ କର ଆଦର
ଶୋକ ଦୂର କଷ ଲୋକରେ ଯାହାକୁ ଷଣେ ନ ଛାଡ଼ଇ ଭ୍ରମର । ୨୧ ।

ଦେଖ ନାଗର-ମୋହନୀ ନାଗରଙ୍କ ନାଗରଙ୍ଗଶଛ ସ୍ୱଦଛ !
ଅଳପ ତରୁ ଅନଳପ ଅଟେ ଏ ଅଇଶ୍ୱବତ ନାମେ ଖ୍ୟାତ
ସଦ୍ୟାତ, ଅଙ୍ଖାଚ ଯଉବନ ସ୍ତନ—
ଏଗ ପଲ୍ଲଚରେ ପରିତୋଷ କରେ ରସିକଜନଙ୍କ ନୟନ । ୨୨ ।

ଶଙ୍ଖାଗୋର ! ଅନୁକମ୍ପା କର ଥରେ ଚମ୍ପାରେ ଦେଲେ ଦୃଷ୍ଟିକର
କେ କହେ ଏ ବସ୍ତୁ ନୋହେ ଯା ପାଶକୁ ଦନେ ନ ଆସଇ ଭ୍ରମର
ସ୍ୱେମନ୍ତ, ଶୁଣି କେହୁ ପୁଣି ଭାଷିଲା
ବର୍ଣ୍ଣିରେ ଅଦୃଢ କରିବା ଉଚିତ ଶୁଣି ଏଣୀଦୃଶୀ ହସିଲା । ୨୩ ।

ପ୍ରଫୁଲ୍ଲ ପଲ୍ଲବେ ଅଶେ ଅଳ ଅସେ ଦେଖି କେ ବାଳାକୁ କହିଲା
ବସନ୍ତ କୃତାନ୍ତ ହାରେ ଏ ଠାବରେ ବରହୀଙ୍କି ମାର ଦହିଲା
ସଦ୍ୟାତ, ଦେଖ ଏ ଅନଳ ଜଳୁଛୁ
ଲମ୍ପଟ ଭୃଙ୍ଗ ଗତାଗତ କପଟ ଧୂମ ଭ୍ରମ ଉପୁଜାଉଛୁ । ୨୪ ।

ଶୁଣି ଏ ଉତ୍ତର ରମଣୀ ସତ୍ୱର ହୋଇ ସେ ଠାବରୁ ଚଳଲା
ସ୍ୱଗରେ ନେଇ ଗତାଗତ କରନ୍ତେ ଆଗରେ ପୁନ୍ନାଗ ଦେଖିଲା
ଏମନ୍ତ, ଜାଣି କହିଲା କେଉଁ ସଖୀ
ଆପଣା ଇଚ୍ଛାରେ ଭଜିବା ଉଚିତ ନୁହଇ ଶୁରୁଚନ୍ଦ୍ରମୁଖୀ । ୨୫ ।

ଏ ବଚନକୁ ବବେଚନ ନ କଶ ବୃତ୍ତଗଲା ଲଜ୍ଜା-ହିନ୍ଦୁରେ
ସଖୀ ଅବଲମ୍ବ କର ସେ ନତମ୍ବବତୀ ରହିଲା ଷଣକରେ ।

ସେଠାରେ, କେ ପୁଣି ଏମନ୍ତ ବୋଇଲା
ଘୃଣାହୃଦୟା କରୁଣାରେ ତୋର କରୁଣାକୁ ଦୃଷ୍ଟି ନ ଗଲା । ୨୬ ।

ଏରୂପେ ଲକ୍ଷ୍ୟ ଅଲକ୍ଷ୍ୟ ମୁଖ୍ୟ ତରୁ ତରୁଣୀଏ ବୃନ୍ଦ ଦେଖନ୍ତି
ନାନା ହାସରସ କଉତୁକ ଭାଷ ପରସ୍ପରେ ଛଳ ଭାଷନ୍ତି
ସମସ୍ତେ, ଭୁଞ୍ଜି ହୋଇଣ ହରଷରେ
ସଙ୍ଗେ ଘେନି ନୃପନନ୍ଦନୀଙ୍କ ରଙ୍ଗେ ପ୍ରବେଶ ସରୋବର ତୀରେ । ୨୭ ।

ଦେଖିଲେ ଚିତ୍ର ଘଟନ ବନ୍ଦ୍ରମରେ ଦ୍ରୁମରେ ପ୍ରତିବିମ୍ବ ଧରେ
ବିରଙ୍ଗ ରଙ୍ଗ ଭାବକୁ ଭଜିବାରୁ କୁରଙ୍ଗନେତ୍ରୀ କୁତୁକରେ
ନୟନ,—ପଥେ ପଥିକ କରି ରୂପ
ଉପମା ସୃଷ୍ଟିକି ଦୃଷ୍ଟିକି ଆଣି ସେ ଲୋକନ କଲେ ପୁଣି ଅପ । ୨୮ ।

କେ ବୋଲେ ରଥାଙ୍ଗ କମଳ ଧାରଣୀ କମଳାକାନ୍ତ ପରି ସର
ହଂସ ଗତାଗତି ଦେବାରୁ ଆକାଶ, ଅମୃତ ସ୍ରୁତିକୁ ସୁଭପୁର
ସଙ୍ଘାତ, ସଞ୍ଚାଳରେ ମୀନକେତନ
ରତି ବଢ଼ିବାରୁ ଅବଲୋକନରୁ ରତିସୁରତି ନିକେତନ । ୨୯ ।

ଏ ରୂପରେ ତହିଁ କଉତୁକ କହି ଚଉତର ପଶିଲେ ଉପରେ
ସାର ଅବଗାହ ହୋଇଲେ ପୃଥେହ ଗୃତର ଛୀନ ବସନରେ
ପାଳିଲେ,—କରି ଲୀଳେ ପାଠ ପିଣ୍ଡ ସେ
ମନ୍ଦରନେତ୍ରୀ ମନ୍ଦିରକୁ ବାହୁଡ଼ି ଆସନ୍ତି ଅତ୍ୟନ୍ତ ହରଷେ । ୩୦ ।

ଚନ୍ଦ୍ରକଳା କରେ କର ଦେଇ ଧୀରେ ଗଲାଇ ମନ୍ଥରଗମନୀ
ଦନ ଶୁହିଁ ମନ ଉଛନ ହୁଅଇ ବନ୍ଦରେ ନବ ଯଉବନୀ
ସୁରତ, ତାର ତ ନାହିଁ ଅନୁଭବ
କୋକିଳ ଅଳାପ ଉପଦେଶେ କରି କାମପେ ମାନ ସେ ଉଭବ । ୩୧ ।

୩୧-୪—ନବ କି ମାନସେ ( କ )

ରଜନୀ ଚରିତ ସଜନୀ ସଙ୍ଗରେ ପକାଇ ଶୁଣଇ ଚତୁରୀ
ପ୍ରିୟସଖି ଯାଉଁ ସ୍ୱପନ କହିଲୁ ହେବ କି ସେ ସ୍ୱପନ ପରି
ଯେମନ୍ତ, କହୁ ବାମଚକ୍ଷୁ ସ୍ଫୁରନ୍ତି
ପଦ୍ମଶ୍ରୀ କେତକ କେତକୀଗୋଣୀ ଯାଉଁ ଅଗେ ବେନି ସିଦ୍ଧ ଦେଖିଲି ॥

କରି ନମସ୍କାର କର ଯୋଡ଼ି ଆଗେ ଉଭା ହୋଇ ନୃପଦୁଲଣୀ
ଅତିଥି ପୂଜା ଆରମ୍ଭରେ ଅମ୍ଭେ ଧଉତ କଲୁ ପଦ ପୁଣି
ଆସନ, ଦେଇ ବସନ୍ତୁ କରି ବୋଇଲେ
ସିଦ୍ଧ ଋଷି ଶଶିକଳପନା ବସିବୁ ଆଗେ ତୁମ୍ଭେମାନେ ବସିଲେ । ୩୩ ।

ରମଣୀମଣି-ଚନ୍ଦ୍ରମଣି ଚତୁରଙ୍କୁ ଯେ ବାଣୀ-ଚନ୍ଦ୍ର ଦ୍ରବାଇଲା
ଉଚିତ ଆସନେ ଲୁଣ୍ଠିତକୁନ୍ତଳା ସଜନୀ ସଙ୍ଗତେ ବସିଲା
ସମ୍ମୁଖେ, ସିଦ୍ଧ ବସି ବୋଲେ ଚତୁର !
ନାହିଁକି ବଳ୍ଲଭ କାହିଁକି ଏକାଳେ ଶ୍ରୀଅଙ୍ଗ ଅଙ୍କୁ କୃଶ କରୁ । ୩୪ ।

ଏମନ୍ତ ଶୁଣି ଚନ୍ଦ୍ରକଳା ବୋଇଲା ଅବଧାରି ଆମ୍ଭ ସଜନୀ
ସମାନ ବର ନ ପାଇ ବନ୍ଧୁଗଣେ ଖୋଜୁଛନ୍ତି ବୁଲି ଅବନୀ
ଏ ଯେଣୁ, ବଧିକ ବୁଦ୍ଧି ଦେଉଥିଲି
ଗତ ରଜନୀରେ ସ୍ୱପନରେ ସୁମୁଖୀ ଏକ ପୁରୁଷେକ ଦେଖିଲା । ୩୫ ।

ସେହି କାରଣରୁ ବାରଣଗମନା ହୃଦେ ଜାତ କାମ ବିକାର
ଅଶନ ବସନ ସୁଖ ନ ମଣଇ ବସନ ଗେରି ପରକାର
ସାନ୍ତ୍ୱନା, କଲେ ଶାନ୍ତ ନୋହେ ସନ୍ତାପ
ଶୀକଳକଳ-ଚରନା ନଶିଦନ ନୟନୁ ଗହୁନାହିଁ ଅପ । ୩୬ ।

୩୫-୨—ଖୋଜୁଣ ଥିଲେ ଅବନୀ ( ଖ )
୩୫-୩—ବୃଦ୍ଧି ହୋଇଥିବ ( ଖ )

ସ୍ୱପ୍ନବି ଯେଣ୍ ସେ ପ୍ରବୋଧିଲ୍ କହ ଅବଧି ଉପାୟ୍ କାରଣେ
ଆନମନ ହେବ ବନ ବୃନ୍ଦଗଲେ ଯେନ ଅସିଲୁ ଯେଣ୍ ଯେଣେ
ଉପାୟ୍, କରିବା ବାଞ୍ଛ ନ ଦଶଇ
ସେ ପୁଂସ ଏହାଙ୍କୁ ପ୍ରାପତ କରାଇ ପାରିବ କ ସ୍ୱାମୀ ! କଅଇ । ୩୭ ।

ଏସନ ଶୁଣି ପ୍ରସନ୍ନ ହୋଇ ସିଦ୍ଧ କହଇ କୋମଳ ଉତ୍ତର
ଧଇର୍ଯ୍ୟ ହେଲେ ପ୍ରାପତ କରି ପାରି, ରସିକା ଚିତ୍ତ ସ୍ଥିର କର
ସ୍ୱପନେ, ତୋହେ ସେ ପୁରୁଷ ଦେଖିଛୁ
ବରନ୍ଧ କାତର ସନ୍ତାପ ନକର ତାର ଏହିରୂପେ ହୋଇଛୁ । ୩୮ ।

ଆମ୍ଭ ଶିଷ୍ୟ ସେହୁ ପଦ୍ମାକର ଦେଶ ନୃପବର ପ୍ରିୟ ନନ୍ଦନ
ଯୁବା ବୟସ ପରବେଶ ହୋଇଛୁ ସ୍ୱରୂପ ନନ୍ଦଇ ମଦନ
ସମାନ, କନ୍ୟା ନ ମିଳିବାରୁ କରି
ହୋଇଛୁ ବିଭା ରହିଛୁ ଅଙ୍ଗେ ବିଭା ବିରହକୁ ଅଛୁ ଆଦରି । ୩୯ ।

ତା ରୂପ ଯେହି ସ୍ୱପନେ ତୁ ଯାହାଙ୍କୁ ଦେଖିଛୁ ତହୁ ଜଲକଣ
ଯେହି ଯେବେ ହେବ ଉପାୟ୍ ସହିବ ସତ କହିବୁ ସୁକୁମାର
ଏମନ୍ତ, କହୁ ପଟ୍ଟ ଫେଡ଼ି ସତ୍ୱରେ
ସ୍ମିତ ବଦନରେ ଅନନ୍ଦ ମନରେ ଦେଖାଇ ଦେଲ୍ଲ ବାଲା କରେ । ୪୦ ।

ଶୃହିଁଙ୍କରୁ ଦଣ୍ଡେ ଚହିଲ୍ଲ ଥକିତ ହୋଇ ନ ଚଳିଲ୍ଲ ନୟନ
ପାଶରେ ଅତି ବାସରେ ପଡ଼ିଲେ ଯେକାବେଳେ ବେନ ଖଞ୍ଜନ
ଭ୍ରମର, ସ୍ୱରୂପ ପୂର୍ଣ୍ଣ ସୁଧାକର
ପଡ଼ିଲ୍ଲ ଅମୃତ ଆଶାରେ ଜଡ଼ିଲ୍ଲ ସୁନ୍ଦରୀ ନୟନ—ଚକୋର । ୪୧ ।

କଷ୍ଟମୋହ ସ୍ତମ୍ଭ ଭାବକୁ ଭଜନ୍ତେ ସିଦ୍ଧ ଅଛନ୍ତି ପଟ୍ଟକୁ
ଜାଣିଲେ କୁମାରୀରତନ ସ୍ୱପନେ ଦେଖିଛୁ ଏହି ପୁରୁଷକୁ

କହନ୍ତି, ସ୍ୱମୁଖି କ୍ରିଦରେ କାତର
ଅଣିବାକୁ ତୋତେ ଭେଟାଇବ ମାସ ଲେଖ ଭୁ କିମପି ଉତ୍ତର । ୪୨ ।
ଏହି ବଚନେ ଚନ୍ଦ୍ରକଳା ପ୍ରତ୍ୟୁତ୍ତର କଲ ଅମ୍ଭେ ନାଶ୍ୱ ସହଜେ
ଆଗ ଉଦନ୍ତ ପୁରୁଷକୁ ଲେଖିବା ଏହି କଥା ଉଚିତ ନୋହେ ଯେ
ଏମନ୍ତ, ଶୁଣି ସିଦ୍ଧି କଲେ ଉଚିତ
ଯେଉଁଠାରୁ ତୁମ୍ଭେ ପୁରକୁ ବିଜେ କର ଅଣ୍ ଯାଇଁ ଅମ୍ଭେ ଉଦନ୍ତ ।୪୩।
ଏ ବଚନ ଶୁଣି ସିଦ୍ଧଙ୍କ ମେଲାଣି କରି ରମଣୀ ହରଷରେ
ସଖୀ ସଙ୍ଗତରେ ଆନନ୍ଦ ଚିତ୍ତରେ ପ୍ରବେଶ ହୋଇଲେ ମନ୍ଦିରେ
ଏହି ଛାନ୍ଦ, ବସନ୍ତ କାନନ ଭ୍ରମଣି
ବନ୍ଧନେ ବାଳା ସନ୍ତାପ ବିନାଶ ବାଙ୍କୀଶ ପଦ୍ମନାଭ ଭଣି । ୪୪

---

## ତ୍ରୟୋଦଶ ଛାନ୍ଦ

ରାଗ—କେଦାର କାମୋଦି

ଯେ ଅନ୍ତେ ଜନେ ଶୁଣ ଅପୂର୍ବ ରସ
କୁମର ମୋହ-ନିଦ୍ରା ହୁଅନ୍ତେ ଶେଷ ଯେ ।
ଦେଖିଲା ପାଶେ ନାହିଁ ରମଣୀ ବର
ପଲଙ୍କ ଖୋଜି କାମେ ହେଲା କାତର ଯେ । ୧ ।

ପୁଣି ବିଚାର କରେ ରସିକ ଯୁବା
ସତ କି ସ୍ୱପନରେ ଦେଖିଲି ଅବା ଯେ ।
କାହିଁ ସେ ଦିବ୍ୟପୁର ଗନ୍ଧର୍ବ କାହିଁ
ଯେ ଦେବୀ ବୈଠାଇଲା ସେହି ବା ନାହିଁ ଯେ । ୨ ।

ଯେତେ ବିଚାର ପୁଣି ଚାହିଁ ଚଉକୁ
ଦେଖିଲା ତାରତର ମୋହ ଦ୍ୱାରକୁ ଯେ ।
ଦେଉଛନ୍ତି ଅନୁରାଗେ ବର-ନାଗରୀ
କୁଙ୍କୁମେ ଦିଶୁଅଛି କନକ ପରି ଯେ । ୩ ।

ଚାହିଁ ରସିକ ବୋଲେ ହାହାରେ ବାଳା
ଆଶା ଦେଖାଇ କାହିଁ ଦେଲୁ ତ ଗଲା ରେ ।
ସ୍ୱପନେ ଇନ୍ଦ୍ରପଦ କ୍ଷଣକେ ଦେଇ
ଅନାଥ କରିଗଲୁ ଅନ୍ତର ହୋଇ ରେ । ୪ ।

ଅନୁରାଗ-ରଜ୍ଜୁରେ କରି ବନ୍ଧନ
ଅନୁସରଣ ଯେନ ହେଲୁ ପ୍ରସନ୍ନରେ ।
ଅନୁ[illegible]ସୃକୁ ଛେଡ଼ିଥିଲ ଶ୍ରବଣ
ଅନୁଦିଶ କ୍ଷଣକେ କଲୁ ହରଣରେ । ୫ ।

ସଭୟ ଚଳକରେ ଶୃହିଁଲୁ ଯାହା
ଅଭୟ ଦେଲୁ ମୋତେ ଶିଖାଇଦେହା ରେ ।
ଭରସା କଲି ସେହି ପ୍ରତିଆଶାରେ
ସୁରସାମଣି । ତାହା ହରିଲୁ ଡରେ ରେ । ୬ ।

ଶ୍ୟାମଳକେଶି ! ତୋତେ ଦେଖି ନୟନେ
ଅମର ପଦ ଅଥି ମଣିଲି ମନେ ରେ ।
ଭ୍ରମର ମାଲତୀରେ ବଶ ଯେମନ୍ତ
ସମର ପତି ହେଲି ରଜନୀ ହତ ରେ । ୭ ।

ରହିଲୁ ଧନ ! ଯାହା ହୋଇ ଅନ୍ତର
ଦହିଲୁ କାମ-ଶରେ ମୋର ଅନ୍ତର ରେ ।
ବହିଲୁ ହୃଦେ ଏଡ଼େ ନିର୍ଦ୍ଦୟ କେହି
ସହିଲୁ ପ୍ରୀତି ଭଙ୍ଗ ଚନ୍ଦ୍ରାସ୍ୟହିଁ ରେ । ୮ ।

ଜାଗର କରିଲାସେ କର ମୁଁ ଥିଲି
ନାଗରମୋହି ! ଏଣୁ ତୋତେ ଛୁଇଁଲିରେ
ସାଗର ପର ଥିଲି ପ୍ରତ୍ୟାଶା ମୋର
ଆଗ ଇହିଲୁ ଛାଡ଼ି ରମଣୀବରରେ ରେ । ୯ ।

ନ କଲୁ ମୋତେ ଅନୁଗ୍ରହ କଟାକ୍ଷ
ଥେବ ମୁଁ ଥାନ୍ତି ପାଦେ ସେବକ ହୋଇ ରେ ।
ଯାବକ ଲେଖୁଥାନ୍ତି ତୋର ଚରଣେ
ଲବକ ନ ଛାଡ଼ନ୍ତି ଅନୁସରଣେ ରେ । ୧୦ ।

ତୋ ରମଣୀୟ ତନୁ ହେବାରୁ ହୃତ
ମରମ କାଟୁ ଅଛି ମଦନ—ଶର ରେ ।

ଭରତଅଗ୍ରଜି ! ଅଙ୍ଗୀକାର ନ କଲୁ
କରମ ମନ୍ଦ ଯାହା ଅନ୍ତର ହେଲୁ ରେ । ୧୧ ।

ସଝମେ କାହାକୁ ମୁଁ କହିବି ଏହା
ନ ରମେ ମନ ଆନ ଠାରେ ସ୍ପୃହା ରେ ।
ଭରମେ ଥିବା ଏଡ଼େ ନାଶ କଲୁ
ଦରମେଶଶ ! ପର ପରାୟେ ହେଲୁ ରେ । ୧୨ ।

ଏମନ୍ତ ବୋଲି କର ଶିରରେ ମାରି
ନୟନ ଯୁଗଳରୁ ତେଜନ୍ତି ବାରି ଯେ ।
ଦେଖି ଏମନ୍ତ ପ୍ରିୟ ସଖା ତାହାର
ବୋଇଲେ ତୁମ୍ଭେ କିମ୍ପା ହୁଅ କାତର ଯେ । ୧୩ ।

କରିବା ଲଭିବାକୁ ଉପାୟ ମାନ
କାହିଁ ଆମ୍ଭ ନଗର ସ୍ୱପ୍ନ ଦର୍ଶନ ହେ ।
ବରଣ କରି ପରି ଦେଉଛୁ ହାର
ତରୁଣବର ଏହା ମନେ ନ କର ହେ । ୧୪ ।

ଆରତ ହେଲେ କାର୍ଯ୍ୟ ନୁହଇ ସିଦ୍ଧି
ବରତମାନ ଏହୁ କଥା ଅବଧି ଯେ ।
ବଟୁ ଯାଉଛି ଦେନ ଗୃହୁ ଉତ୍ତର
ସେ ଆସିଲେ କରିବା ଉପାୟାନ୍ତର ଯେ । ୧୫ ।

ଶୁଣି ଏମନ୍ତ ମନ୍ତ୍ରୀ—ନନ୍ଦନ ବାଣୀ
ନରେଶ ସୁତ ହେଲେ ହରଷ ପୁଣି ଯେ ।
ଏମନ୍ତେ ପ୍ରବୋଧନା କରନ୍ତେ ସିନେ
ବଟୁ ଯେହୁ ସମୟେ ହେଲେ ପୁରତେ ଯେ । ୧୬ ।

ଦେଖି ଉଠିଲା ନରପତି—କୁମର
ଦଣ୍ଡ ପ୍ରଣାମ କରି ଯୋଡ଼ିଇ କର ଯେ ।
ଚରଣ ଧୋଇ ଦିବ୍ୟ ଆସନ ନେଇ
ସାଦରେ ମୋଦରେ ଭୂଶଦେ ବସାଇ ଯେ । ୧୭ ।

କୃଶ ଦଶାକୁ ଚାହିଁ ଆର୍ଦ୍ର ହୋଇ
କହନ୍ତି ବତ୍ସ, ଶ୍ରେଷ୍ଠ ସେନେହ ବନ୍ଧୁ ଯେ ।
ନୃପ–ନନ୍ଦନାଠାରୁ ଏଠାରୁ ଶଲ୍ୟ
ଢବ ଚରତ ଯେତେ ରୂପେ କହିଲୁ ଯେ । ୧୮ ।

ଅଚ୍ଛୁ ବନ୍ଧୁର ତୂର୍ବ ଭାଗ୍ୟ ଭ୍ରମର
ଶୁଣିଲା ମାତ୍ରକେ କଲା ସାତ୍ତ୍ୱିକାର ଯେ ।
ଅନ୍ୟା କି ଶୋଭା ଅଟେ ନୃପନନ୍ଦିନୀ
ବଣକୁ ଯିବେ ଅବଲୋକନେ ମୁନି ଯେ । ୧୯ ।

ନୟନ ତରଙ୍ଗ କି କାମ–କୁରଙ୍ଗ
ଚାହିଁଲେ ହତ କରେ ଧୈର୍ଯ୍ୟ–ତୁରଙ୍ଗ ଯେ ।
ମଦନ ଶର ପରି ଅନ୍ତ୍ର ସୃଷ୍ଟିଯ
ଛଟକେ ଫୁଟିଯାଇ ପୁରୁଷ ବକ୍ଷ ଯେ । ୨୦ ।

ଲପନ ଶୋଭା ହେଲେ ଦୃଷ୍ଟି ଗୋଚର
ଦରପ ନ ରହିବ ଦରପଣର ଯେ ।
ଅଥ ଅଧର ଚାହିଁ ହେବ ପଲ୍ଲବ
ବିମ୍ବ ବଧିରେ ନାହିଁ ଢା'ହାସ ଲବ ଯେ । ୨୧ ।

କଣ୍ଠ ଦେଖି ରଞ୍ଜିବ ଦର ଦରକୁ
ମନ ମନର ହେବ କୁଚ ଉଚ୍ଚକୁ ଯେ ।

ପ୍ରଫୁଲ୍ଲ ଚମ୍ପାମାଳ ଶମ୍ପା—ଶୃଙ୍ଖଳ
ତା ବାହୁ—ସୁଷମାକୁ ନ ଥିବେ ବଳ ଯେ । ୨୨ ।

ଶ୍ରୀଫଳ ଦେଖି ପଦ ଶ୍ରୀଫଳ ହେବ
ଢଳଙ୍କ ତାକୁ ନିର୍ମିଣିଛୁ ଦଇବ ଯେ ।
ଈଶ୍ୱର ଅନୁଗ୍ରହ ବିହୁନେ ତାକୁ
ନ ପାଇ କଷ୍ଟେ ଏହା ଘେନ ମନକୁ ଯେ । ୨୩ ।

ଅସଙ୍କଟ ହୋଇଛୁ ଭ୍ରମରଠାରେ
ମୁଦ୍ରିକ କରଅଛୁ ତାର ହୃଦରେ ଯେ ।
ଭୃଙ୍ଗ ବଚନ ଶୁଣି ହେଲା ଆକୁଳ
ଅନୁରାଗେ ନୟନରୁ ତେଜିଲା ଜଳ ଯେ । ୨୪ ।

ଚତୁରୀ ପଣେ ଆଉ ଲେଖନ ଦେଲା
ସଜନୀ ଦ୍ୱାରେ ବହୁ ବିନୟ ହେଲା ଯେ ।
ଚଞ୍ଚାଉ ଆଣ ବୋଲି କହି ଅମ୍ଭଙ୍କୁ
ମେଲାଣି ଦେଇ ବିଜେ କଲା ପୁରକୁ ଯେ । ୨୫ ।

ଏବେ ସକଳ ଚିନ୍ତା ମନରୁ ଛାଡ଼
ହରକଣ୍ଠରେ ଲଭିବା ତା କୁଚ—ଗଡ଼ ଯେ ।
କାମ—ବାଣକୁ ଆଉ ଭୟ ନ ଥିବ
ଏଣିକି ସୁମଙ୍ଗଳ କରିବେ ଶିବ ହେ । ୨୬ ।

ଏବେ ଏକାନ୍ତେ ବସି କର ବିଗ୍ରହ
ଲେଖ ତାହା ପାଶକୁ ବିନୟ ଗିର ଯେ
ଯେତ ରସିକା ନବ—ନାୟିକା—ବାଳୀ
ଶ୍ରବଣେ ଯହିଁରୁ ଯେ ଯିବ ତରଳ ଯେ । ୨୭ ।

ଏମନ୍ତ ଶୁଣି ବସି ଏକାନ୍ତ ସ୍ଥାନେ
ଇଷ୍ଟ ଦେବୀ ଚରଣ ସ୍ମରି ମନେ ଯେ ।
ଆର ଛାନ୍ଦେ କହିବା ତାହାର ରସ
ଭଣନ୍ତି ପଦ୍ମନାଭ ବାଙ୍କି ନରେଶ ଯେ । ୨୮ ।

---

# ଚତୁର୍ଦ୍ଦଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ନରେଶନନ୍ଦନ ବନ୍ଧୁ ବାଣୀ ଶୁଣି
ହରଷ ଲଭି ମନରେ
ଦ୍ୱିଦନ୍ତଗଞ୍ଜକ ଶବନ୍ଧୁ ହୋଇଣ
ଉଦନ୍ତ ଲେଖଇ ଖରେ । ୧ ।

ପ୍ରଥମେ ଗଜାସ୍ୟବର ଭାବି ହୃଦେ
ଗଜାସ୍ୟବରଙ୍କୁ ଭାବେ
ଲେଖେ ରସିକ ଲେଖିବୁ ତୋ ଶୁଭକୁ
ରହିଅଛୁ ମୁହିଁ ଜୀବେ । ୨ ।

ନରେଶକୁମାରୀ ତନୁ ସୁକୁମାରୀ
କନକକେତକୀ-ଗୋରୀ
ମନ୍ଦ-ଗମନା ସରସିଜ-ବଦନା
କୁନ୍ଦଦନ୍ତୀ ସୁକୁମାରୀ । ୩ ।

ଶଶିକରହାସୀ ରସିକ-ବନ୍ଦିକ —
ଚତୁ ମୋହନ ମନ୍ତ୍ର
ରଙ୍ଗପଣ୍ଡିତା ସଙ୍ଗ-ଯୁଦ୍ଧ-ଖଣ୍ଡିତା
ମୋହହାର ମୋ ଗଳାର । ୪ ।

ପରାଣଈଶ୍ୱର ! କେତେ ତପ କରି
ସ୍ୱପନେ ଲଭିଲି ତୋତେ
କରକ-ନନ୍ଦିନା ପରି କରି ସିନା
ନ ଲେଖିଲୁ ଆଗ ମୋତେ । ୫ ।

ଗୃମଦକେଶରେ ! ଅମର ସମ୍ପତ୍ତି
କ୍ଷଣକ ଭିତରେ ଦେଇ
ତରୁଣମୋହନ ! ଅନ୍ତର ହୋଇଲୁ
ଦାରୁଣ ପଣକୁ ବହି । ୬ ।

ଚଖାଇ ଅମୃତ ରଖାଇ ନ ଦେଲୁ
ଭୁଞ୍ଜିବା ଯାଏ ପାଶରେ
ଶରଣ ଜନକୁ ମାରଣ କି ଯଶ
ଘେନିବୁ ଏହା ମନରେ । ୭ ।

ତୋ ପ୍ରତିଆଶାରେ ଦିବସ ନିଶାରେ
ବସି ଥାଇଁ ମୁହିଁ ଧନ !
ତୋତେ ଧ୍ୟାନ କରି ତୋରୂପ ନୟନେ
ଦେଖି ହରୁଥାଇ ଦିନ । ୮ ।

ନିଦାଘେ ଚାତକ ଯେମନ୍ତେ ଘନକୁ
ତେମନ୍ତ ତୋତେ ମୋ ଆଶା
ସପନ ଦେଖାଇ ସପନରେ ଏବେ
କରୁ ତ ଅତି ନିରାଶ । ୯ ।

ଗତି କି ମୋର ଜଗତରେ ବିଶ୍ୱର
ଜୀବଧନ ! ତୋ ବାହାରେ
ମାନସେ ମୋହୋର ଦେଖି ତୋ ରୂପକୁ
ଆନ ଶରଧା ନ କରେ । ୧୦ ।

ବର-ବରନାରେ ବାର ବାର ମୁହିଁ
ମାର ମାରଣକୁ ସହି

ଜୀବନ ରଖିଛୁ ତୋ ସଙ୍ଗ ଲୋଭରେ
ଜୀବନଜ-ଜାତ-ମୁହିଁ ! । ୧୧ ।

ପୁରୁବ ସୁକୃତ ଫଳୁ ତୋର ତନୁ
ସ୍ୱପନରେ ଛୁଇଁଥିଲି
ଦୁର୍ଦ୍ଦଶା ଯୋଗ ତହିଁକି ବଡ଼ ହେଲା
କ୍ଷଣକେ ଅନ୍ତର ହେଲି । ୧୨ ।

ପରମଦୟାଳୁ ହୋଇ ପ୍ରାଣପ୍ରିୟା
ତୁହି ବାରତା ନ ଦେଲୁ
ସ୍ନେହ-ଅଧୀନାରେ ତୋ ବାଞ୍ଛାରେ ଅଟେ
ଜୀଇବ କି ବଞ୍ଚିରଲୁ । ୧୩ ।

ଭୃଙ୍ଗ-ଉରଜାରେ ଭୃଙ୍ଗ କି ବଞ୍ଚିବ
କୁସୁମ-ରସ ବିହୀନେ
ଜଳକୁ ଛାଡ଼ିଣ କୂଳକୁ ଅଇଲେ
ମୀନ କି ରହେ ଜୀବନେ । ୧୪ ।

ରସବତି ! ସେହିମତ ନ ବଞ୍ଚିବି
ତୋ ସଙ୍ଗ ହୋଇଲେ ଦୂର
ବୀଣା ବଚନାରେ ! ଜାଣି କଲୁ ମୋତେ
ଅନୁରାଗେ ଦେଇ ହାର । ୧୫ ।

ପୀରତି-ଘେନା ! ଅଙ୍ଗୀରତ ହୋଇବ
ଏବେ ଦୟା ଦୂର କଲେ
ନ ରଖନ୍ତୁ କି ବନିତା ଘେନ ମନେ
ପାଦେ ଶରଣ ପଶିଲେ । ୧୬ ।

ମୁଁ ଯେ ସେପରି କୋଷ୍ଠଇ ରେ ସୁନ୍ଦରି !
ତୋ ନିଶ୍ୱାସରେ ଜୀଇବି
ଜାଣିଥିବୁ ଏତେ କହୁଛି ବନ୍ଧୁ ମୁଁ
ତୁ ଛାଡ଼ିଲେ ନ ଛାଡ଼ିବି । ୧୭ ।

ଆସିବ ତୋଠାରୁ ନ ରଖିଲେ ତନୁ
ଝାସିବି ଗଙ୍ଗାସାଗରେ
ଏତେ ସାଧନା କରି ତୋତେ ମୁଁ ପାଇବି
ସତେ ଆନ ଜନମରେ । ୧୮ ।

ଶ୍ରୀମର-କେଶିନେ ! ସୁମର ଏ କଥା
ସୁଦୟା କରିବୁ ମୋତେ
ଆନ ନ ଯୋ[illegible] ମନ ପ୍ରାଣ ଦେଇ
ଶରଣ ପଶୁଛି ତୋତେ । ୧୯ ।

ନବୀନବୟସି ! ମତ୍ତପିକଭାଷି
ତୁ ମୋର ଲମ୍ବଟ-ଚନ୍ଦା
କୁରଙ୍ଗ-ନୟନା ! ମୁଁ ତୋର ଅଟଇ
ସୁରଙ୍ଗ ପାଦେ ଅଲତା । ୨୦ ।

ଭ୍ରମର-ସୁକେଶି ! ତାମରସ-ବାସି !
ତୁ ମୋର ଅଟୁ ଦୋଷଡ଼ା
ତୋ ଚିତ୍ତେ କି ଅଛି ଉଚିତ କହୁଛି
ମୁଁ ତୋର ପାନ୍ଧାଡ଼ା-ପଡ଼ା । ୨୧ ।

କି ଯେନୁ ମନରେ ଜୀବନଧନରେ !
ଦେବ ତୁ, ମୁଁ ତୋର ଛାଇ

ପିନ୍ଧିଲି ବସନ ପର୍ଯ୍ୟନ୍ତେ ମୋ ମନ
ଷଣେ ଅନ୍ତର ନୋହଇ । ୨୨ ।

ସ୍ୱପନ ଭେଟରେ ଦେଇନାହୁଁ ମୋତେ
ଯଉବନ କେଳି-ରସ
ଦେଲେହେଁ ମୋ ମନ ତୋଷ କରି ଧନ !
ରଖିଅଛୁ କରି ଦାସ । ୨୩ ।

ରତି ନ ଦେଇଣ ମତିକି ହରିଲୁ
ଗୂଢ଼ ବଚନ ପ୍ରକାଶି
ମାର ଦର ମୋର ଦୂର କରି ଦେଲୁ
ଅଙ୍ଗରେ ଅଙ୍ଗରେ ମିଶି । ୨୪ ।

ଚୁମ୍ବନ ଦେବାରେ ଥାଉ ନ କଲୁ ସେ
ସରସିରୁହ ଲପନ
କର ଧରି ଯହୁଁ ବିନୟୁ କାଢ଼ିଲି
ମିଶି କଲୁ ଆଲିଙ୍ଗନ । ୨୫ ।

ଅଧର ପାନରେ ବୋଧ ନ କରୁ ସେ
ଅଧ କଲୁ ଇନ୍ଦ୍ରପଦ
ସୁଜନୁ ! ଏକା ତୋ ଛନ୍ଦଦାନ ବିନୁ
ଅତନୁ ଦେଲାକ ଖେଦ । ୨୬ ।

ମାଳତୀ କଳରେ ଅଳି ବିନ୍ଧିଗଲା
ପର୍ଯ୍ୟନ୍ତେ ହେଲା ଅଶାନ୍ତି
ଦାହହେମ-ଗୋରି ! ତୋହୋରେ ସେ ହନ୍
ଅହର୍ନିଶି ମନ ଥାଇ । ୨୭ ।

ସରସହୃଦୟା ! ବୁଡ଼ିଲା ନିର୍ଝରେ
ତୋ ରସରେ ମନ ମୋର
ଶିବାଙ୍କୁ ସେବଇ ଦେବାଙ୍କୁ ବନ୍ଦନ
ଝଗ୍ରା ଝିଅରେ ତୋ ବର । ୨୮ ।

ବାର ବା'ର ମୁହିଁ ଶୃର ସେବୁଥାଇ
ତୋର ବାରତା ଆଶରେ
ଭନ୍ ତନ୍ ମୋର ଧନ୍ ଧନ୍ କରେ
ଅତନୁ କୁସୁମଶରେ । ୨୯ ।

ସହି ସେ ସନ୍ତାପ ରହିଥାଇ ଜୀବ
ସହି ! ତୋ ସଙ୍ଗ ଲୋଭରେ
ପୀନ-ଉରଜାରେ ! ପଣ୍ଡି ହେଲା କାମ
ପୀଡ଼ିବାର କଲୁ ମୋରେ । ୩୦ ।

କେତେ ଦାରୁଣ ତୁ ଏତେ ସୁଦୟାରେ
ନ ଦେଲୁ ଯାହା ସନ୍ଦେଶ
ଲାଜ କରିବାକୁ ହେଜ ତୋ ଚିତ୍ତରେ
ମୁଁ ତୋହର କିଣା ଦାସ । ୩୧ ।

ପାଣି ଧରିବାରେ ଜାଣିଛ ଥିବୁ ତୁ
ସ୍ୱପନ ମେଲନ ବେଳେ
ସରଳ-ହୃଦୟା ! ତରଳ ହୋଇଲା
ମୋ ତନୁ କାମ-ଅନଳେ । ୩୨ ।

କାତର ଭାବରୁ ଦେହ କମ୍ପନରୁ
ଅନୁରାଗ ଭୁହ୍ନ କଲୁ

ସ୍ୱେଦସ୍ନିଗ୍ଧା ବକ୍ଷରେ କୋମଳ ଶ୍ରୀଅଙ୍ଗ
ମୋ ଅଙ୍ଗରେ ଲଗାଇଲୁ । ୩୩ ।

ଯେ ଶୀତଳ ପାଇଁ ସୁଖୀ ହେଲ ମୁହିଁ
ଏବେ ତା ତପେଇ କାମ
କୋହ କରୁଅଛୁ ରଜନୀ ଦିବସେ
ଅହନଶି ହୋଇ ବାମ । ୩୪ ।

ପାରଲେ ରଖି ରେ ବାରଜନପୂଜା
କହଲ ନାହିଁ ମୋ ଦୋଷ
ଦାସ ନାଶ ଗଲେ ଜସବନ୍ତ ! ଅରେ
ଶୁଭବ ତୋତେ ଅଯଶ । ୩୫ ।

ଜୀବନ ନ ଯାଉ ଅବନ କର ଗୋ
ଦେଇ ପତ୍ର ଲେଖା ଚିତ୍ରାଉ
ଅନୁକୂଳ କଥ କଣ୍ଠେ ଜୀବ ଅଛୁ
ବେଗେ ତାକୁ ଲେଉଟାଉ । ୩୬ ।

ପ୍ରେମମନ୍ତ୍ର ଲେଖରେ ଲେଖି ସେ ରସିକ
ଅତ୍ତ ଯତନେ ମୁଦିଲ୍
ପିତ୍ର କରେ ଦେଇ ବୋଧ କଥ ତାଙ୍କୁ
ବନସ୍ତୁ ବାଣୀ କହଲ୍ । ୩୭ ।

କହବ ଧନକୁ ଅଶ୍ରା କରବାକୁ
ତାହା ବନୁ ନାହିଁ ମୋର
ପ୍ରଲମ୍ବ-କୁନ୍ତଳା ବଳମ୍ବ ନ କର
ଲେଖିବ ପ୍ରତ ଉତ୍ତର । ୩୮ ।

ଯେମନ୍ତ ଶୁଣି ରସିକ ବଦନରୁ
ଗଲା ଯେ ଉତ୍କଣ୍ଠାରେ ଚଳି
କେଳଚ୍ଛ-କେଳ-ପ୍ରବୀଣା ବୀଣାଭାଷୀ
ଶଶିରେଖା ପାଶେ ମିଳି । ୩୯ ।

ଯେକାନ୍ତ ଦେଖି କାନ୍ତମୁଖୀ କରକୁ
ପ୍ରକୁଷ ଉଦନ୍ତ ଦେଲା
ଦୁର୍ଲ୍ଲଭ ଯୋଗ ପ୍ରାପତ ହୋଇଛି ଯେନ
ବସ୍ତର ଲେଖ ବୋଧିଲା । ୪୦ ।

ଶୁଣି ରସିକନୀ ପାଣିରେଣ ଯେନ
ଲଗାଇଲା ଅଣି ଶିରେ
ମୋଦକୁ ଲଭ କୁମୁଦହାସୀ ତହୁଁ
ମୁଦ ଭାଙ୍ଗିଲା ସତ୍ୱରେ । ୪୧ ।

ଅକ୍ଷରକୁ ଚହୁଁ ଅକ୍ଷି ନ ଚଳଇ
ପକ୍ଷୀ ଯେସନ୍ତ ଅଠା ଯୋଗେ
ପଲକ ନ ଛାଳ ଦ୍ୱକ କର ଚହୁଁ
ପୁଲକ ହୋଇଲା ଅଙ୍ଗେ । ୪୨ ।

ଭୃଷା ଯେଜ୍ଞମାନେ ରସାମଣ୍ଡନାର
କାମେ ତନୁ ଜର ଜର
କମ୍ପ ଭଜବାରେ ଭାବ ଯେନମାନେ
କର ହେଲା ଥର ଥର । ୪୩ ।

ଦମ୍ଭ ଭଙ୍ଗ ହେମ-କୁମ୍ଭ-ଉରଜା ସେ
ସମ୍ମୂର୍ଚ୍ଛି କରି ପଡ଼ିଲା

ମୋ ଲାଗି ଏତେ ବେଦନା ପାଉଛନ୍ତି
ବୋଲି ମାନସେ ଘେନିଲା । ୪୪ ।

କର ଯୋଡ଼ି ପୁଣ ଯତ୍ରଙ୍କ ପୁଛଇ
ପତ୍ରକୁଶଳ ଉତ୍ତର
ସେ ଭାବେ ଆଉ କି କହିବ ଜୀଇବ
ଲେଖିଲେ ପ୍ରତ୍ରଉତ୍ତର । ୪୫ ।

ଏମନ୍ତ ଶୁଣି ରମଣୀ-ଶିରୋମଣି
ଭଆଇ ଶନସ୍ତୁ ଗିର
ରଦିକବର ପାଶକୁ ହରଷରେ
ଲେଖାଇ ପ୍ରଛ ଉତ୍ତର । ୪୬ ।

ରସିକ ଆଉ ଛନ୍ଦରେ ତା ଶୁଣିମ
ଏ ଛନ୍ଦ ହୋଇଲା ଶେଷ
ଭଣନ୍ତି ବାଙ୍କି ନଗର ଅଧିପତି
ପଦ୍ମନାଭ ଏହୁ ରସ । ୪୭ ।

---

## ପଞ୍ଚଦଶ ଛାନ୍ଦ

ରାଗ—ବଙ୍ଗଳା ଶ୍ରୀ

ପୁରୁଷବର ବିନୟ ଶୁଣି ଗିର
            ପଢି ନରେଶ-କୁମାରୀ
ଲେଖି ପ୍ରତ୍ୟୁତ୍ତର ସଖୀଙ୍କ ନାମରେ
            ହୃଦରେ ଚିନ୍ତା ଗହରି । ୧ ।

ନରେଶ-ନନ୍ଦନ ! କାମିନୀ-ମଦନ !
            ରସିକ-ସୁନ୍ଦର-ବର !
ବଂଶ-ଅବତଂଶ କୀରତ୍ତି ବିଶେଷ
            ଧୀର-ବୀର-ସୁକୁମାର ! । ୨ ।

ଆମ୍ଭ ସଖୀ ଦେଖିଲା ବିନୁ ତୁମ୍ଭଙ୍କୁ
            ଉପେକ୍ଷିଲା ସବୁ କଥା
କହିବୁ କାହାକୁ କେ ଯେବେ ବିନୟ
            ଛଡ଼ାଇବ ମନବ୍ୟଥା । ୩ ।

ଦେଖ କୁମୁଦବୃନ୍ଦର ଏକା ଇନ୍ଦୁ
            ବିନୁ ନାହିଁ ଅନେ ମତି
କୋଟି କୋଟି ଦୋଷ ତୁମ୍ଭଙ୍କୁ ମିଳିବେ
            ଆମ୍ଭ ସଖୀର କେ ଗତି । ୪ ।

ଭୃଙ୍ଗ ନାନା ଜାତି କୁସୁମରେ ମାତି
            କେଳି ଆନନ୍ଦେ କରଇ
କୁସୁମ ଭ୍ରମର ବିହୀନେ ମନରେ
            ଆନ କେବେଁ ନ ଇଚ୍ଛଇ । ୫ ।

ତୁମ୍ଭ ଲାବଣ୍ୟ-ଜଳଧିରେ ତା ମନ—
ଶଫରୀ ରହିଛି ବୁଡ଼ି
ଯେଣୁ ଏ ନରେଶ-ନନ୍ଦନୀ ଜାଗ୍ରଣ
କଲେ ନ ପାରଇ ଛାଡ଼ି । ୬ ।

ପଙ୍କଜ ପଙ୍କ ବର୍ଦ୍ଧିନେ କି ପ୍ରଫୁଲ୍ଲ
ଅନଳରେ କେବେ ହୁଅଇ
ଘନରସ ବିନୁ ଚାତକୀ ଆନ କି
ନୀର ପାନରେ ବଞ୍ଚଇ । ୭ ।

ଯେବେ ଥରେ ଆସି ମୁଖ ଦେଖାଇବ
ରହିବ ସଖୀ ଜୀବନ
ଲୁଥ ଚନ୍ଦ୍ରନାହିଁ ନୟନୁ ତାହାର
ଚିନ୍ତା କରି ନିଶି ଦିନ । ୮ ।

ବାହୁଲ ପର୍ଯ୍ୟେ ପୁଥିଲ ଉରଜା
ହୋଇଛି ଅନବରତେ
ବଞ୍ଚିବ କେହି ଏଥିରୁ ଏଥର
ନାହିଁ ଆସ୍ଥାର ପରତେ । ୯ ।

ନୀରଜ-ନେତାର ଅରଜନ ଏହା
ହୋଇଲା ତୁମ୍ଭଙ୍କୁ ଦେଖି
ଯେବେ ନିର୍ଦ୍ଦୟ୍ୟା କରିବ ଏହାଠାରେ
ଏଥି କେ ପାରିବ ରଖି । ୧୦ ।

ଏଣିକି ନୃପତି-କୁମର ଏଥକୁ
ଆସିବ ବଞ୍ଚାଇ ଛର

ଯେମନ୍ତ ହେଲେ ଏ ନରେଶ-କୁମାରୀ—
ଜୀବନ ଯମରାଜାର । ୧୧ ।

ତୁମ୍ଭ ଅନୁରାଗ ଭାବରେ ଭାବିନୀ
ହୋଇଲା ସେ ତନୁ ବଶ
ହରଷ ଭଳେ ମନରେ ନ ଥିବାରେ
ଝୁରି ଝୁରି ହେଲା କୃଶ । ୧୨ ।

ତୁମ୍ଭର ଏବର ଭୁଠାର ହୋଇଣ
ଆମ୍ଭ ସଖୀ ଧୈର୍ଯ୍ୟ-ତରୁ
ଛେଦ ପକାଇଲା ତୁମ୍ଭେ ବଶ ନାହିଁ
ରଖିବ କେହ୍ନ ଏଥିରୁ । ୧୩ ।

ଏବେ ସୁକୁମାରୀ ନରେଶ-କୁମାରୀ
ଆମ୍ଭର ନାହିଁ ସାହସ
ଏହା ପ୍ରାଣ ଅବା ଦେହରୁ ଉଖନ୍ତି
ଯେବେ ତ ନ ଯିବ ସ୍ୱଦେଶ । ୧୪ ।

ନିରତେ ତୁମ୍ଭ ଚରଣେ ଦାସୀ ହୋଇ
ସେବା କରିବାକୁ ମନ
ଅନବରତରେ ଆମ୍ଭ ସଖୀ ଏହି
କଥା କରୁଥାଇ ଧ୍ୟାନ । ୧୫ ।

ସ୍ୱପ୍ନ ପ୍ରାପ୍ତେ ବେଶ ବସନ ଅଙ୍ଗନ
ପ୍ରସୂନହାସୀ ତ ହେଲା
ହାରହିଁ ଯାର ରମଣୀମଣି ମଣି
ଅଛି ଦରେ ଦୂର କଲା । ୧୬ ।

ତୁମ୍ଭ ଅବଧିକ ଅବଧର କର
ରଖିଛୁ ଏକା ଜୀବନ
ଦଣ୍ଡ ଦଣ୍ଡକେ କ ଦଣ୍ଡ ଦେଉଅଛୁ
ଦାରୁଣ ଦୁଷ୍ଟ ମଦନ । ୧୭ ।

ଜୀବମାନେ ତାର ଯିବେ ବୋଲି ଅଧି
ରହିଲେକ ନୟନରେ
ନଦ୍ରା ତାହାକୁ କେବେହେଁ ନ ଆସଇ
ମତ ଷିତ ଶପ୍ନରେ । ୧୮ ।

ବେଳେ ବେଳେ ବୋଲେ ପ୍ରାଣସଖୀମାନେ
ମୃରୁଛ ମୋତେ ଏଥର
ଯେ ଜନମେ ତ ତାହାଙ୍କୁ ନ ପାଇବ
ମରିବା କଲ ନକର । ୧୯ ।

ତାଙ୍କ ନାମ ଧର ଝାସିବ ଅନଲେ
ପାଇବାକୁ ଇଚ୍ଛା କର
ମରଣେ ଅବଶ୍ୟ ଯାହା ଭାବଥାଇଁ
ଦଅନ୍ତି ସେ କଥା ହର । ୨୦ ।

ନୁହଇ ଏ କଥା ଅନ୍ୟଥା କେବେହେଁ
ଶୁଣିଛଇଁ ପୁରାଣରେ
ବୃଥା ରୋଦନ ନ କର ଏ ବିଷୟେ
ପ୍ରତିଆଶା ଛଡ଼ ମୋରେ । ୨୧ ।

କେବଳ ମାତ୍ର ତୁମ୍ଭଙ୍କ୍ ନ ପାଇବ,
ପାଇବ ସକଳ କଥା

ଯେଉଁଥିରୁ ମୋହୋର ଅନ୍ତରରେ
ହୋଉଅଛି ବଡ଼ ବ୍ୟଥା । ୨୨ ।
ଏ କଥା ଶୁଣି ଅମ୍ଭେମାନେ ପରାଣ
ଛାଡ଼ିବାର ମନ କଲୁ
ଯାହାର ଯେତେ ଉପାୟମାନ ଥିଲା
ସେହିଦିନ ଉପେକ୍ଷିଲୁ । ୨୩ ।
କେବଳ ଯେଉଁଜନଙ୍କ ଦୟା ତୁମ୍ଭ—
ଉପରେ ହୋଇବ ପୁଣି
ଆସିବ ଅବା ନ ଆସିବ ଏଥିରୁ
ଲେଖିଲୁ ଏମନ୍ତ ଜାଣି । ୨୪ ।
ଆମ୍ଭମାନଙ୍କର ଯେତେ କୃତ୍ୟ ଥିଲା
ତେତକ ମାତର କଲୁ
ମନ ବୁଦ୍ଧି ଦେଇ ତୁମ୍ଭ ଶ୍ରୀଚରଣେ
ସମସ୍ତେ ଶରଣ ଗଲୁ । ୨୫ ।
ରଖ ବା ନ ରଖ ତୁମ୍ଭର ଅଧୀନ
ଭଜିଲୁ ଅମ୍ଭେ ତୁମ୍ଭରେ
ସୁଦୟା ଥିଲେ ସିଦ୍ଧ ସଙ୍ଗେ ଆସିବ
ଏ ଲେଖ ପରବେଶରେ । ୨୬ ।
କହୁ ତ କଥା ନ ହେଲ ପୁନରାର
ହୋଇଲାନ ଦଶା ଯେତେ
ଲେଖିଲେ ସେହି ନ ସରବ ଦେଖିବ
ଅଇଲେ ଶୁଭ ସଙ୍ଗତେ । ୨୭ ।

ଭରସା କରନ୍ତୁ ସମୁଦ୍ର ପରାଣେ
ନ ନାଶିବ ସ୍ପୃହା ଯେବେ
ପଣ୍ଠ ଭାବନାରେ ଦନ ନେଉଅଛୁ
ମଣ୍ଡ ନାହିଁ ଆନେ ଲବେ । ୨୮ ।

ଧରତୀରେ ବଞ୍ଚିବାକୁ ତୁମ୍ଭର
ହସ୍ତିନେ ନାହିଁ ଶରଣ
କରୁଣା ହୃଦୟ ଘୃଣା ନ କରବ
ଯେନମ ଅନୁସରଣ । ୨୯

ବାର ବାର ବାରତା ଦେବା ଆମ୍ଭର
ହୃଦଇ ଏତ ଉଚତ
ସାର ସାରସଗଡ଼ର ଗଢ ରଚ—
ପଞ୍ଚ କଲ୍ପ ଏବେ ହତ । ୩୦ ।

ପରତେ କରବ ନାହିଁ ପର ପର
କରତେ ଦୁଷ୍ଟ ମଦନ
ବରତେ କେହ ଅବରତେ ଏଥିରୁ
ନରତେ ବିଶ୍ୱରୁ ମନ । ୩୧ ।

ପୀରତ କର କୀରତଙ୍କ ରଖାଅ
ଧରଣୀରେ ନାହିଁ ସାଦ୍ଧ
ହରବ ତାପ ଉଦ୍ଧରବ ଏଥରୁ
କରବ କେ ଅଛୁ ଅନ୍ଧ । ୩୨ ।

କଉକ-ରଦନା ବେଦନା ଯେନା ତ
ତୁମ୍ଭର ନବ ହୃଦଇ

ହରପର-ଦର ଦରପଣ-ମୁଖୀଁ
ଆଉ ସହି ନ ପାରଇ । ୩୩ ।
ନୀର ନିରବଧି ନୀରଜ-ନୟନା
ନୟନରୁ ନ ରହିଲା
ତାର ଧାର ଗଣ୍ଡମଣ୍ଡଳେ ମଣ୍ଡନ
କର କରଗଲି କଲା । ୩୪ ।
ସଟିଲି କାମେ ଲୋଢ଼ିଲି ଅମ୍ଭ ସଖୀ
ଅଧରରେ ଚୁମ୍ବ ସଙ୍ଗ
କୁରଙ୍ଗ ନୟନେ ତରଙ୍ଗ ନ ଥାଇ,
ସୁରଙ୍ଗାଧର ତରଙ୍ଗ । ୩୫ ।
ବହୁଳ-କୁନ୍ତଳା ଅଗ୍ରେ କଲା ଭୂଲା—
ମାଣ୍ଡିକି,ଥିଲା ଏ ଯୋଗ
ଅଛି ଯା କରମେ କେ ଆନ କରିବ,
କରିବ ଯିନା ତା ଭୋଗ । ୩୬ ।
ଚନ୍ଦ୍ର ଚନ୍ଦନ ପନୀର ନୀର ଦେଖି
ଅନଳ ପ୍ରାୟେ ମଣଇ
ମନ୍ଦ ଗନ୍ଧବହ ଲାଗିଲେ ତା ଦେହ
ମୋହ ଅଧିକ ବଢ଼ଇ । ୩୭ ।
କହନ୍ତି ଯାହା ଅନ୍ୟଥା ନ କରିବ
ରସିକ ମୁକୁଟ ମଣି !
ପାଇବୁ ଯେବେ ରଙ୍କନିଧି ପରାଏ
ରଖିଥିବୁଁ ହୃଦେ ପୁଣି । ୩୮ ।

ନୀବଡ଼ ଗୁନ୍ଦନୀ ନଶିରେ କାମିନୀ—
ଚନ୍ଦନ ପାଖକୁ ଆସି
ପଲଙ୍କରେ ଅଙ୍କେ ବସାଇ ରସାଇ
ଯାହା କହୁଅଛ ହସି । ୩୯ ।

ସେହି କଥା ଅମ୍ଭ ସଜନୀମନରୁ
ପାସୋର କେବେ ନ ଗଲା
ଗୁଣି ଗୁଣି ଗୁଣମଣି ! ଏଣୀଦୃଶୀ
ଶଶିକଳାକେ ରହିଲା । ୪୦ ।

ସହିଲା ଏତେ ବେଦନା ତବ ଅଂଶ
ରହିଲା ଅଶାୟୀ ହୋଇ
ଦହୁଛି ଯେତେରୂପେ ଫୁଲ କୋଦଣ୍ଡ
ବଚନେ କହି ନୁହଇ । ୪୧ ।

ନବମ ଦଶାରୁ ନବ ରସିକାର
ନ ବଞ୍ଚିବା ଜାଣିଲୁ
ଭୁବନ ଯାକରେ ଜୀବନଜନ୍ମୁଖୀ
ସମ ଦୁଃଖୀ ନ ଦେଖିଲୁ । ୪୨ ।

ସେବନ କରିଛୁ ଜୀବନ ଏହାର
ଭେନ୍ତରେ ଅବନ କର
ବାଲମ୍ ହୋଇଲେ ରୋଲମ୍-କେଶୀଙ୍କ
ପାଇବ କାହିଁ ନାଗର । ୪୩ ।

ନ ସରଇ ଦନ ହେଲା ଏବେ ସାନ
ଜନ ପଢ଼ ତବ ବନ୍

ଦୁର୍ବଳ ହେବାରୁ ପ୍ରବଳ ହୋଇଣି
କବଳ କଲା ଅତନୁ । ୪୪ ।
ସ୍ପୃହା ତ ନ ଯାଇ ଏହାର କଷଣ
ଦେଖିଲେ ନେତ୍ର-ପଥରେ
ଯୂଥବଣା ଏଣୀ-ଦୃଶୀର ସ୍ଫୁରଣା
କାହିଁ ବକ୍ଷର ଉତ୍ତରେ । ୪୫ ।
କଷ୍ଟେ ଅଜଯାଏ ପସ୍ୱଣ ରଘଣ
ଲକ୍ଷଣବତୀର କଲୁ
ସ୍ୱପନ-ଭେଟ ଦିନରୁ ଜାନ ହେଲା
ଅଭରସା ଅମ୍ଭେ ହେଲୁ । ୪୬ ।
ଇଙ୍ଗିତରୁ ଭାବ ଜାଣି ଏ ଭଗତ
ବହୁତ ଉଦ୍‌ବେଗ ହେଲେ
ନରପତି ଗଣ କରି ନିମନ୍ତ୍ରଣ
ସ୍ୱୟମ୍ବର ମୂଳ କଲେ । ୪୭ ।
ଜ୍ୟେଷ୍ଠ ପଞ୍ଚମୀରେ ଆସି ଏ ନଗରେ
ମିଳିବେ ସର୍ବ ନରେଶ
ଯେବେ ଦୟା ଥିବ ଏହାକୁ ରକ୍ଷିବ
ତୁମ୍ଭେ ହୋଇ ପରବେଶ । ୪୮ ।
ନୃପ ବ୍ୟବସ୍ଥାରେ ତୁମ୍ଭ ନଗରକୁ
ନିମନ୍ତ୍ରଣହିଁ ତ ଯିବ
ଅମ୍ଭ ସଖୀଠାରେ ଅନୁରାଗ ଥିଲେ
ପିତାଙ୍କ ସଙ୍ଗେ ଆସିବ । ୪୯ ।

ଏମନ୍ତ ମତେ ଉଦନ୍ତ ଲେଖି ମୁଦ
କର ବନ୍ଧୁ କରେ ଦେଲେ
ବିଳମ୍ ନ କର ସତ୍ୱର ଯେମନ୍ତ
ଆସିବେ ତାହା କହିଲେ । ୫୦ ।

ଯାହା ଦେଖି ଜାଣି ଗଲି ଜଣାଇବ
ତୁମ୍ଭେ ତାହାଙ୍କ ପାଶରେ
ଆନ କରି ଲବେ ନ କହିବ କେବେ
ଦୁଖ ଯେନ ମାନସରେ । ୫୧ ।

ଏରୂପେ କହି ଚରଣ ତଳେ ପଡ଼ି
ମେଲାଣି ତାହାଙ୍କୁ କଲେ
ବନ୍ଧୁ ଶୁନ୍ଧୁ ବଚନୋତ୍ତର ଯେନ ହର—
ଚନ୍ଦ୍ରା କର ଚଳି ଗଲେ । ୫୨ ।

ହରଷ ହୋଇ ନୃପସୁତ ପାଶରେ
ପ୍ରବେଶ ହୋଇଲେ ଯାଇଁ
ଦେଖି ନୃପସୁତ ଆସନରୁ ଉଠି
ପାଦେ ପ୍ରଣାମ କରଇ । ୫୩ ।

ତଦୁତ୍ତରେ ପୁଣ ଚରଣ ଯୋଡ଼ିଣ
ଆସନରେ ବସାଇଲେ
ଅତି ଉତ୍ସୁକ ଦେଖିଣ ବନ୍ଧୁ ହେତୁଁ
କାନ୍ତା ଲେଖ କରେ ଦେଲେ । ୫୪ ।

ଯେନ ରସିକ ହୃଦରେ ଲଗାଇଣ
ମୃଦୁ ମୋଦରେ ଝାଙ୍କିଲା

ବୁଡ଼ି ଅନନ୍ତ-ଜଳଧିରେ ଅଧୀରେ
ଫେଡ଼ ପଢ଼ି ଅରମ୍ଭିଲା । ୫୫ ।

ସମ୍ପୂର୍ଣ୍ଣ କର ପଢ଼ିବାରୁ କ୍ରମଶେ
ସଙ୍କେତ ହେଲା ଗୋଚର
କହେ ମିତଙ୍କୁ କି ଉପାୟରେ ଯିବା
ଅଟେ ଦେଶ ବହୁଦୂର । ୫୬ ।

ସ୍ୱପର ପରଲୋକେ ଲୋକେ ନନ୍ଦବେ
ପିତାଙ୍କୁ ନ କହି ଗଲେ
ସନ୍ଧକେ ଲ୍ଲଜ ବଳବ ହେଳ ବୃନ୍ଦ
ଯିବାପାଇଁ ଜଣାଇଲେ । ୫୭ ।

କରିବା କି ବୁଦ୍ଧି ଚରବା କେମନ୍ତେ
ମଣିବା ବିରହେ ତାର
ନିକଟ ରହିଲ ସେ କଣ୍ଠ ଦେଇଛି
ହୋଉଅଛି ସ୍ୱୟଂବର । ୫୮ ।

ସିଦ୍ଧ କହିଲ ଅରତ ନୃଦ୍ଧ ଜିନ୍ତୁ
ସ୍ୱର ଲହିଁରୁ ଅସିବ
ନିମନ୍ତ୍ରଣ ପାଇ ତାତ ଗଲେ ତୁମ୍ଭେ
ସଙ୍ଗତେ ତାଙ୍କର ଯିବ । ୫୯ ।

ଏ ବଚନେ ଜନ୍ତୁ ସନ୍ତାପ ତେଜିଣ
ଯିବାକୁ ଉତ୍ସୁକ ହେଲେ
ପ୍ରଦ୍ୟୁମ୍ନ ଆଗ ସ୍କନ୍ଦରେ ବିରଚିବା
ବାକ୍ୟ ନରେଶ ଭାଷିଲେ । ୬ ।

---

## ସପ୍ତଦଶ ଛାନ୍ଦ

ରାଗ—କଲ୍ୟାଣ ଆହାରୀ

ରସିକା ଉଦନ୍ତ ରସିକ ପଢିଣ ଅଧିକ ଉତ୍କଣ୍ଠ ହୋଇଲା
ସ୍ୱରୂପେ ତାତ ସନମତ ହୋଇବ ଯିବାକୁ ସଖାଙ୍କୁ କହନ୍ତି
ଯେମନ୍ତ, ଏକାନ୍ତେ କହନ୍ତେ ବସ୍ତୁର
ସ୍ୱୟଂବରକୁ ଯିବାକୁ ନିମନ୍ତ୍ରଣ ଘେନି ପ୍ରବେଶ ହେଲା ଚର । ୧ ।

ନରେଶ-ମୁକୁଟ ହରଷ ହୋଇଣ ସୁତଙ୍କୁ ସମ୍ଭାବନା କରି
ଭ୍ରମର ସଙ୍ଗ ପ୍ରୟାଣ କରିବାକୁ ମନ୍ତ୍ରୀଙ୍କ କହିଲେ ହକାରି
ଏସନ, ଶୁଣିଣ ପୁରୋଧା କୁମର
ବନ୍ଦନ କରି ହରଷେ ଜଣାଇଲା ଯୁବରାଜ ରାଜ ଈଶ୍ୱର । ୨ ।

ରସିକବର ଏ ଗିର ଶ୍ରବଣରେ ଅତ୍ୟନ୍ତ ହରଷ ହୋଇଲା
ଏକାଳେ ସର୍ବ ସୈନ୍ୟ ସଜହେବାକୁ ନଗରେ ଘୋଷଣା ବାଜିଲା
ସକଳ, ଜନ ଶୁଣି ହେଲେ ଉତ୍ସୁକ
କ୍ରମେ କ୍ରମେ ଅସ୍ତାଚଳକୁ ଚଳିଲେ ଏ ସମୟେ ଛାୟା-ନାୟକ । ୩ ।

ଗୃହେଁ ଗୃହେଁ ସ୍ୱଚ୍ଛଭାବକୁ ଲୁଚାଇ ସୁରଙ୍ଗ ହୋଇଲା ଗଗନ
କି ଦିଗ-ଅଙ୍ଗନା କାନ୍ତ ଅନୁରାଗେ ହେଲାକି କୁଙ୍କୁମେ ଲେପନ
ଏକାଳ, ନୟନରେ ଯହିଁ ଦେଖିଲେ
ଅତ୍ୟନ୍ତ କାତରେ ଦୁଃଖେ ପରାଣରେ କୋକ ଶୋକ ଜଳେ ବୁଡିଲେ ॥

ତରଣି-କାନ୍ତ କାଳଧର୍ମ ଚଳିଲେ ଦେଖି ନେହେ ପ୍ରିୟା-ବିବଶ
ସନ୍ଧ୍ୟାରାଗ ଛଳେ କୃଶାନ ଅନଳେ ସହିତେ ହୋଇଲା ପ୍ରବେଶ
ଅପରେ, ଲଭିବା ସ୍ନେହକୁ ବହି ସେ
ନୋହେ ଏ ପ୍ରକଟ ଦେଖ ଉପରକୁ ଅନ୍ଧକାର-ଧୂମ ପ୍ରକାଶେ । ୫ ।

କ୍ରମେ ଲୀନ ଦିନଶୋଭା ହୋଇବାରୁ ତମ ପ୍ରଚଣ୍ଡପଣେ ବ୍ୟାପିଲା
ଗଗନେ ରଜତ ଦ୍ରବିତ ହୋଇବ ଅଙ୍ଗନେ ଅଗ ଲେପ ଦେଲା
ନେତ୍ରକୁ, କହୁଁ ନୋହିଲା ଗୋଚର
ଥାଉଁ ପଣେ ନ ବିକାଶିଲା କୁମୁଦ, ନ ପାଇ ଭ୍ରମିଲେ ଭ୍ରମର । ୬ ।

କହୁଁ ରସିକମଣୀ ଦେଖି ଏ କାଳକୁ ଉଭା ହୋଇ ପୁର-ଦୁଆରେ
ପଥିକଙ୍କୁ ଚାହିଁ ସଖୀକୁ କହଇ ନୟନ ପକାଇ ମାର୍ଗରେ
ତାରକା, ଏହିକ୍ଷଣି ସବୁ ଦିଶିବେ
ଅନ୍ଧାର ହୋଇବ ପଥ ଶୂନ୍ୟ ହେବ ଆଉ ମୋ କାନ୍ତ ନ ଆସିବେ ॥

ଶୁଣି ଏ ଉତ୍ତର ରସିକ କାତର ହୋଇ ତା ପାଶରେ ମିଳିଲା
କଉଣ ବିନସ୍ତ ଯେନ ଅନନ୍ୟ ରଙ୍ଗରେ ସଙ୍ଗରେ ବଳିଲା
ପ୍ରଭାତେ, ବଦନେ ସବୁ ଚୁମ୍ବ ଦେଲା
ସେନେହ ବଢାଇ ସନ୍ତାପ ଛଡ଼ାଇ ଉଚିତ ସ୍ଥାନକୁ ଚଳିଲା । ୮ ।

କେବଣ ରମଣୀ ହୋଇ ସମୁତ୍କଣ୍ଠା ଯାନ୍ତକୁ ସରକୁଲେ ଚାହିଁ
କହଇ ବଚନ ହୋଇଣ ଉତ୍କଣ୍ଠ ମୁଦ୍ରିତ ପଙ୍କଜ ଅନାଇ
ମୋ କାନ୍ତ, ନଇଲେ ଯିବ କେହୁ ନାଦ
ଆଉ କି ଆସିବେ ଏଥି ଭରିବେ ପ୍ରଫୁଲ୍ଲ ହେଲେନ କୁମୁଦ । ୯ ।

ପଥିକ ଚତୁର ଶୁଣି ବନିତାର ଉପଗର୍ଭ ପ୍ରିୟ ବଚନ
ପାଖରେ ପ୍ରବେଶ ହୋଇଣ ହରଷ କଲାକ ବିନସ୍ତ ରଚନ
ମନକୁ, ମଦନ-ଶରେ ବୁଡ଼ାଇଲା
ରଜନୀ ରଙ୍ଗରେ ହର ତା ସଙ୍ଗରେ ପ୍ରଭାତରେ ପୁଣି ଗମିଲା । ୧୦ ।

କେବଣ ଚତୁର ସଦନେ ଅଭୁକ୍ତ ହୋଇ କାହାକୁ କର କଣ୍ଠ
ସଙ୍କେତ ସ୍ଥାନରେ ମିଳିବା ବେଳରେ ଆନ ଜନରେ ହେଲା ଭେ

ତହିଁରେ, କେହି କାହାକୁ ନ ଜାଣିଲେ
ସ୍ନେହ ଅଲିଙ୍ଗନ ସୁରତ ରଚନ ଅନ୍ତେ ଜାଣି ପ୍ରୀତ ହୋଇଲେ । ୧୧ ।

କେବଣ ପୁରୁଷ କାହାଠାରେ ବଶ ହୋଇଣ ପୁଚ୍ଛଇ ଦୂତୀଙ୍କ
ମୋ ପ୍ରାଣଧନକୁ ଗଜଗମନୀକୁ ଆଣିବୁ କି ମୋର କଣ୍ଠକ
ଚଳନୀ, ଶେଷରେ ଯିବ ବିଦେଶରେ
ଦେଇ ଥାଉ ବସ ଯେବଣେ ଯିବ ନାଥ କାମ-ଭସ୍ମ ପ୍ରଛଦନ ରେ । ୧୨ ।

ଏମନ୍ତ ନଗର ନରନାରୀବର ଉକନ୍ଦ୍ର ଉତ୍ସବ ସ୍ଥଳରେ
କାନ୍ତକାନ୍ତା ପାଶ ମେଲାଣି ହୋଇଲେ ସୁରତ ଶେଷ ଯାମାନ୍ତରେ
ଚୁମ୍ବନ, ପରସ୍ପରେ ଦେଇ ବଦନେ
ରଖିଣ ସେନେହ ଯୋଡି ଦେହେ ଦେହ ଶଙ୍କା ଜାତ କରି ମଦନେ ॥

ଏରୂପେ ରଜନୀ ହତ, ପ୍ରାତ ହେଲା, କୁକ୍‌କୁଟ ରଟ ପ୍ରକଟରେ
ଦିନ ଆଗମନ୍ ମ୍ଳାନଜ୍ୟୋତି ହେଲେ ତାରକା ଚନ୍ଦ୍ର ଗଗନରେ
ଦିଶିଲା, ପ୍ରାଣ-ଅଗ ଆଗ ଅରୁଣ
ଏକାଳେ ନୃପ ଆଦେଶରେ ବାଜିଲା ଯିବାକୁ ନଗରେ ଘୋଷଣା । ୧୪ ।

ସାଜିଲେ ବାଜିଗଜ ନିଜମାର୍ଗରେ ଚହଟେ କମ୍ପିଲା ଅମର
ପନ୍ତ ପନ୍ତ ହୋଇ ପଡ଼ି ଘଣ୍ଟ କରି ପ୍ରବେଶ ହେଲେ ସିଂହଦ୍ୱାର
ଏକାଳେ, କହେ ଜ୍ୟୋତିଷ ଯୋଡ଼ି କର
ଶୁଭବେଳ ଜାଣି ଭର-ଅମାଳରେ ଅନୁକୂଳ କଲେ କୁମାର । ୧୫ ।

ଭାବନା କରି ଭାବରେ ଭାବିନୀର ସ୍ୱପନ ଭେଟ ସ୍ୱରୂପକୁ
ରାଗ ବହି ଆଗ କରି ତା ପାଶକୁ ପ୍ରେରିତ କଲା ମାନସକୁ
ସମସ୍ତ, ବାରଣ କଲେ ବିଜେ କରି
ପଛୁଆର କରି ଚଳ ସବୁ ସନ୍ୟ ମଙ୍ଗଳେ ବାଜିଲା ମହୁରୀ । ୧୬ ।

ନାନା ବାଦ୍ୟ ନାଦ ସଙ୍ଗାଭି ଶବଦ ଗଜ୍ଜଘଣ୍ଟ ଧନ୍ ଝଙ୍କାର
ଖଡ଼୍‌ଗ ଝମକ ଗୃଲବା ଦମକ ଶୁଣି ଅରପୁର ଢାଢର
ନାଗସ୍ତ,—ନସ୍ଵନ ପ୍ରକଟ୍ଟଲା ଅଗ
ଅଗଷ୍ଠଧୀଶର ଛାଗସ୍ତ ଚଣ୍ଡର ହୋଇଣ ହେଲେ ଉଦ୍‌ବେଗ । ୧୭ ।

ଗଦଲେ ଦେବଙ୍କୁ ଦେବ ଲାଗିବାରୁ ବଦଲେ ସ୍ଵେଦ ବଢିଲା
ଚଦଲେ ସିନ୍ଧୁ ଗୋଷଙ୍କୁ ଭୁଜ କର ଦବ ଭୁବଢ ଫୁର୍ତ୍ତି କଲା
ମହତ,—ମହ୍ୱାଚଲ କମ୍ପ ଉଚ୍ଚଲା!
ଅହୃତ ଅହୃ ଚହ୍ନଢ ଶଗୃଘଲେ ଭରଭ୍ରର ଯତ୍ନ ହୋଗଲା । ୧୮ ।

ସ୍ଵର-ଗଗନ ରେଣୁରେ ଅଚ୍ଛାଦଲ୍ଲ ଭୁରଗ ଠାପୁ ଠଙ୍କ ଘାତେ
ଅବନୀ ଅବନୀଲରେ ଲୀନ ହୋଇ ନେଥିଙ୍କୁ ନୋହିଲ୍ଲ ପରତେ
ଷଣଦା,—ଷଣଦାସ୍ପୃମା ସ୍ପେ ଧାରଲେ
ଅଙ୍କିତ କର କଳଙ୍କଙ୍କୁ ଅଙ୍କରେ ସଙ୍କେତଙ୍କୁ ବେଷ୍ଟ ରଖିଲେ । ୧୯ ।

ଧରଣୀ ପୃର ଏପଣ ଯା'ନ୍ତେ ବଲ ଚରଣେ ଅସ୍ତ୍ରଙ୍କୁ ଭଜିଲେ
ବାରୁଣୀ-ବାମ-ବଦନେ ବୁମ୍ବଦେଇ ସୁମେରୁ ଉଦାଡ଼ ହୋଇଲେ
ସରଣୀ, ନେତ୍ରଙ୍କୁ ନୋହିଁ ଗୋଚର
ରହିଲେ ସତେ ସନ୍ୟ ମେଲା ହୋଇଣ ଅବୋଢ ସର ନଦୀ ତୀର ॥

ଇଦ୍ଧନ କେନ୍ଦ୍ର ନେଡ଼ିଲା ପାଙ୍କଧୁ ଇଦ୍ଧନ ହେନ୍ଦୁ ବଢ଼ାଇଲା
ମାର୍ଜନ କଲ୍ଲ ବେ ଅଙ୍ଗ ଅଙ୍ଗଗ୍ରେ ହେଜନ ସ୍ୱେଶ ଶେଷ କଲା
ମକ୍କନ, କଇ ବେ ହଲା ଅବଗାହ
ଶସ୍ପନ କଲା ନେ ଅସ୍ପନ ଶ୍ରମରେ ଅବୋର ମଦା ମହ୍ନାରୁଢ଼ । ୨୧ ।

ପାଶେ ଏକ ବନ ଅଚ୍ଛୁ ଅତି ଘନ ହୋଇଅଚ୍ଛୁ ତରୁଗଣରେ
ସିଂହ ବ୍ୟାଘ୍ର ଇତ ଶବଦ ପ୍ରବଳ ହୋଇଲା ଅର୍ଦ୍ଧ ରଜନୀରେ

ଏ ଦେଖ, ନିଦ୍ରା ନେତ୍ରକୁ ନ ଆସିଲା
ନରେଶ-ନନ୍ଦନ ମନ୍ତ୍ରି-ସୁତ ସଙ୍ଗେ ବସି ନିଶିଙ୍କ ଶେଷ କଲା । ୨୨ ।

ପ୍ରଭାତ ପ୍ରଭାତ ଦଶିବାରୁ ବାଳ ଦଶିବାରୁ ତମ ଭୁଟିଲା
ଅପନ ଅସନ କର ନରବାଜ କର ନରବାଛ ଗର୍ଜିଲା
ଛଆର । ସୁଆର ଶୁଭେ ଏ ଶବଦ
ଏକାଳ ଶୀବର ରୂପ ଭାବ ବାଙ୍କି ନୃପ ନାଶ କଲା ଅପଦ । ୨୩ ।

---

# ସପ୍ତଦଶ ଛାନ୍ଦ

ରାଗ—ବଙ୍ଗଳ ( ଆଷାଢଶୁକ୍ଳ ବାଣୀରେ ଗାଇବ )

ପ୍ରଭାତରେ ଉଠି ମନ୍ତ୍ରି କୁମର । ଜଣାଇଲା ଯୁବରାଜ ଛାମୁର
ଶୁଣିମା ଦେବ ! ହୋଇ ସାବଧାନ । ବନ୍ଧୁ ଜୀବରେ ପୂରିତ ଏ ବନ
ଆଜ୍ଞା ଯେବେ ହେବ । କରିବା ଏଥି ମୃଗୟା-ଉତ୍ସବ । ୧ ।
ଶୁଣି ସଖାବାଣୀ ନୃପ-ନନ୍ଦନ । ବୋଇଲେ ସଜ ହୁଅନ୍ତୁ ସଇନ୍ୟ
ଆଜ୍ଞା ପ୍ରମାଣେ ସମସ୍ତେ ତକ୍ଷଣ । ହୋଇଲେ ହେଲେ ସବୁଦ୍ଧ ଜାଗଣ
ତା ଶୁଣି ଶ୍ରବଣେ । ଭୃଥିର ହୋଇଲେ ପୁଥିର ଗଣେ । ୨ ।
ଲମ୍ବରେ ବାନ୍ଧଲେ କମରେ ଖଣ୍ଡା । ସମରେ ଯେହ୍ନ ହୁଅନ୍ତି ପ୍ରଚଣ୍ଡା
ଡରକସ କଷି କକ୍ଷ ଦେଶରେ । କମଠା ରଖିଲେ ସମଠାବରେ
ବାମେ ତୀଷ ତୂର । ବାହାର ହୋଇଲେ ବରଛ ଧର । ୩ ।
ଭରଦ୍ୱାଜ-ଗଣ ସରନ୍ଧାନରେ । ଶିରରେ ଟୋପର ଶ୍ୟାମ ବେଶରେ
ଅଧ୍ୱ୍ଣ ପୃଷ୍ଠରେ ସାଯୁକ ବାନ୍ଧ । ଲକ୍ଷିଣ କମରେ ଦକ୍ଷିଣେ ଉଦ୍ଧ
କରେ ଧନୁ ଧର । ଖରେ ଧାମନ୍ତି ଗୁଣ ଘୋଷ କର । ୪ ।
ନାଳ ଧର କେତେ ଭଜ ସଦାନ୍ତି । ଭଜ ଅଗକୁ ପଛକୁ ଅସନ୍ତି
ଫାନ୍ଦକାଭ ଏ ଧରଣ ଫଳକ । ସର ଧୂପନ୍ତି ହୋଇଣ ଉତ୍ସୁକ
ଦକ୍ଷ କରେ ଅପି । ପଥରେ ଗମନ୍ତେ ନ ଥରେ ଖପି । ୫ ।
କେ ଭ୍ରାଳ ଧର ଅଗକୁ ବାହାର । କେ ଢାଲ ତଲୁଆର କରେ ଧର
କେ ସଞ୍ଚ ତହିଁ ତେଉଁଣ ଯପଟେ । କେ ବଳୀ ଶାବଳୀ ଧର ତଦଟେ
ଏ ବିଧିରେ ସଜ । ରୁଣ୍ଡ ହୋଇଲେ ସମସ୍ତ ଫଉଜ । ୬ ।

ଦେଖି ନରେଶ-ନନ୍ଦନ ହରଷ । ସତ୍ୱରେ ହୋଇଲେ ହିପାର୍ଶ୍ୱ ନବେଶ
ଅରୋହଣ କଲେ ହୟ ପିଠିରେ । ତାଙ୍କୁ ସମ ଆଉ ନାହିଁ ସୃଷ୍ଟିରେ
ଲକ୍ଷଣେ ସମ୍ପୂର୍ଣ୍ଣ । ବିଶାଳ ନୟନ ପ୍ରଲମ୍ବ କର୍ଣ୍ଣ । ୭ ।

ବର୍ଣ୍ଣ ଅଟଇ ସନ୍ଦଜେ ଧବଳ । କି ଲକ୍ଷ ଦେବା ମନରୁ ଚପଳ
କନକ ଜଉ ବାଣରେ ଭୂଷିତ । ଅନେକ ଅଲଙ୍କାରେ ବିଭ୍ରାଜିତ
ଇଚ୍ଛାରେ କମ୍ପଇ । ମନ କଲେ ଯିବ ସାଗର ଡେଇଁ । ୮ ।

ସଙ୍ଗରେ ଅଛନ୍ତି ଭୃଙ୍ଗଚୟ । ସମରେ ଯେହ୍ନୁ ଅଟନ୍ତି ଅଜୟ
ରଙ୍ଗରେ ଶତଶତ ଏକ ଜାତି । ରଙ୍ଗରେ ପଥରେ ଖରେ ଗମନ୍ତି
ସେ ପଦାତି ସାଥେ । ଆସି ମିଳିଲେ କାନନ-ଭୂମିରେ । ୯

ଦେଖିଲେ ଅତି ମନୋହର ବନ । ମନ ମୋହିତ ନୟନ ରଞ୍ଜନ
ଅନେକ ଜାତିରେ ତରୁ ଅଛନ୍ତି । ଶୁଣ କହିବା କିଛି କିଛି ଜାତି
ଚନ୍ଦନ ଚମ୍ପକ । ଚୂତ ଗୁର କୋଳ ଗୁରୁ ଅଶୋକ । ୧୦ ।

ତରୁଣ ତମାଳ ତାଳ ତେନ୍ତୁଳ । ବରୁଣ ବଣ ବର ବରକୋଳି
କରୁଣା କରଞ୍ଜ କୁଷ୍ମାଣ୍ଡଗନ । କଉକ କରମର୍ଦ୍ଦକ କମନ
ପନସ ପଲାଶ । ବକୁଳ ବନ୍ଧୁ ଜୀବକ ବେତସ । ୧୧ ।

ନଈଜା ନାରଙ୍ଗ ନାଗକେଶର । କଞ୍ଚନ କୁଞ୍ଜଲତା କରବୀର
ମରୁଆ ମଲ୍ଲୀ ମାଧବୀ ମାଳତୀ । କୃଟଜ କ୍ରମୁକ କୁଳକ ଜାତି
ପୁନାଙ୍ଗ ପାଟଳି । ଗମ୍ଭାରୀ ଶାଲବ ଗଙ୍ଗଶିଉଳୀ । ୧୨

ଖଦିର ଖଣଡ଼ା ଖୀର ଝଜ୍ଝୁରୀ । ଜୟନ୍ତ ଜଜାଙ୍ଗ ଜାମ୍ବ ଜରି
ନଗର ସାର ତଗର ତନ୍ତ୍ରୀ । ସରଳ ଶିଶୁ ସୁନାରି ସାକୁଟ
କେତକୀ କେତକ । ପଟୁ ପାଳଧୁଆ ପାରିଭଦ୍ରକ । ୧୩ ।

ସଜନା ସାହାଡ଼ା ଶାଳ ଶିମୂଳ । ଲଉଚ ଲବଙ୍ଗ ଲେମ୍ବୁ ଲଙ୍ଗଳ
କୁରୁବକ କୁରୁଣ୍ଟକ କଦମ୍ବ । ନବମାଳିକା ନାରକୋଳି ନିମ୍ବ
ରଙ୍ଗଣି ରୁଦ୍ରାକ୍ଷ । ଭଲିଆ ବେରୁ ଖଇଲଥା ଭଦ୍ରାକ୍ଷ । ୧୪ ।
ମନ୍ଦାର କକୁଭ କୁନ୍ଦ କଦଳ । ପିଣ୍ଡାଳ ପ୍ରିୟଙ୍ଗୁ କୁମ୍ଭୀ କଙ୍କୋଳ
ଫଣଫଣା ଫଳପୁର ହରଡ଼ା । ବନ୍ଧଦାନ୍ତ ବାସଙ୍ଗ ବାହାଡ଼ା
ଗୋଚନ କଞ୍ଚନ । ଧାତୁକୀ ଯବ ଧୁସ୍ତୁର ଯମନ । ୧୫ ।
କୋଦାଳ ପଣ୍ଡୁଲ ପୁଳ ଗୁନ୍ଦଥା । ଶିରଙ୍ଗା କରସି ଧାରଣ ଗୁଥା
ମହାଜାଲ ମହାକାଳ ମଉଚ । ମଞ୍ଜୁର ପିଅଶାଳ ଅଳାଇଚ
ହାଡ଼ୁରଙ୍ଗ ଫାଶୀ । ଫିରଙ୍କ ମାହାଲ ଅଗସ୍ତି ହଣି । ୧୬ ।
ଅମ୍ଳିଳ ହୁଲ୍ଲାଳ କଣ୍ଟା ସେବତୀ । କୁରଅନା ଛଇଅନା ପ୍ରଭୃତି
ଜାକେଲ ଭୃଙ୍ଗ ଗଙ୍ଗଶିଉଳି । କୁସୁମେ ମଣ୍ଡି ଅଛନ୍ତି ମଉଳି
ବାସେ ମନୋହର । ଫଳେ ପାଦପ ହୋନ୍ତି ରୁଚିର । ୧୭ ।
ଏ ବିଧି ଅନେକ ତରୁ ଅଛନ୍ତି । ଶତସଂଖ୍ୟକ ଷଡଶତ ଜାତି
ନନ୍ଦନ ବନ ପରି ଶୋଭା ତାର । ଶୁକ କୋକିଳ ଧ୍ୱନିରେ ରୁଚିର
ଏ ବନ ମଧ୍ୟରେ । ଅଛଇ ଅଦ୍ରି ଶୋଭା ଶିଖରରେ । ୧୮ ।
ବେନି ଯୋଜନ ଉତ୍ସର୍ଗ ତାହାର । ଦ୍ୱାଦଶ କୋଶ ଅଟଇ ବିସ୍ତାର
ରତନ ଶୃଙ୍ଗ ଗଣେ ଶୋଭା ଅତି । ପ୍ରକାଶ କରେ ଦିନକର ଜ୍ୟୋତି
ମହୌଷଧି ଚୟ । ଥିବାରୁ ତାର ଶୋଭା ଅତିଶୟ । ୧୯ ।
ଜନ୍ତୁଗଣରେ ଜୀବ ଅଛନ୍ତି ପୂରି । ଶାର୍ଦ୍ଦୂଳ ଶୂକର ହରିଣା ହରି
ଖଡ଼୍ଗଙ୍ଗ ଶଶା ଶିଶୁ ସଂପ୍ରେମ୍ଭକ । ପ୍ରଚଣ୍ଡ ଗଣ୍ଡା ଶରଭ ଅପାର
ମୃଗ ବାନ୍ଧୁଛଥା । ଘୋଡ଼ାଙ୍ଗ ନୀଳ ଗବୂଳ ଖରିଥା । ୨୦ ।

କସ୍ତୁରୀ ମୃଗ ଦେଭଣ୍ଡା ଭଲ୍ଲୁକ । କୋଲ୍ଲ ବଣଭୂଅ ଗୁଣ୍ଡ୍ରି ଝିଙ୍କ
ଶୃମଶା ବକ୍ର କାପର ବଲୁଅ । ବାଘଟାପ୍ୟେ ସାଳଅ ବଳଅ
ଏ ବଧିରେ ତହିଁ । ଅନେକ ଜୀବମାନେ ଛନ୍ତି ଅନ୍ନ ୧୧ ।

ସେ ଗିରିକୋଟ ପ୍ରକଟରେ ଭେଦ । ବହଇ ମନୋହର ଏକ ନଦୀ
ଅତି ଶୀତଳ ସୁବାସ ସଲିଳ । ଫୁଟି ଅଛନ୍ତି କୁମୁଦ କମଳ
ଜଳପକ୍ଷୀମାନେ । ବିହାର କରନ୍ତି ହରଷ ମନେ । ୧୨ ।

ରାଜହଂସ ହଂସରାଜ ଖଞ୍ଜନ । ବକ ଦଳ ପକ୍ଷି କୋକ ମିଥୁନ
କାରଣ୍ଡବ ମଚ୍ଛରଙ୍କା ସାରସ । ଜଳକୁକ୍କୁଟ କାମ କୁଞ୍ଚାହଂସ
କାଣ୍ଡେ ପାଣି କୁଅ । କାହୁଅ ଖୁମ୍ପି ଟିଟ୍ଟି ଗେଣ୍ଡାଳିଆ । ୧୩ ।

ଏମନ୍ତେ ନଦୀତଟଙ୍କୁ ଦେଖିଲେ । ସମସ୍ତ ସଇନ୍ୟ ତୁଣ୍ଡ ହୋଇଲେ
ଦେଖି ହରଷ ନରେଶ ନନ୍ଦନ । ବୋଇଲେ ଶିକାର କର ବହନ
ଆଜ୍ଞା ପରମାଣେ । ବେଢ଼ିଲେ ବଳ ଅଚଳ ତକ୍ଷଣେ । ୧୪ ।

ଟମକ ନିଶାଣ ରଡ଼ ଘାତରେ । ଚମକ ପଡ଼ିଲା ଗିରି ଶିଖରେ
ଗଡ଼ିଲେ ଜୀବ ଯେ ଥିଲେ ତଳକୁ । ଛାଡ଼ିଲେ ଭୟେ ବିଷମ ରବକୁ
ତା ଦେଖି ସତ୍ୱରେ । ବନ୍ଧିଲେ ରୁନ୍ଧ ଜାଳ ଧାଡ଼କାରେ । ୧୫ ।

ଛୁରିକାରେ କେହୁ ଫୋଡ଼ଇ ତା ତୁଣ୍ଡ । ମୋଡ଼ି ପକାଇଲା କେ କାହା ମୁଣ୍ଡ
ଧରି କେ କାହାକୁ କଣ୍ଢ଼େଇ ବଳେ । ଫାଶ ଠେସରେ ବନାଣିଲେ ହେଲେ
ହରି ଅଦ୍ଭ ଜୀବ । କଷ୍ଟ ସହିତେ ବନ୍ଦୀ କଲେ ସର୍ବ । ୧୬ ।

ଭେଡ଼ଙ୍ଗ ଶବଦେ ଘୋଡ଼ଙ୍ଗ ହାଣି । ଖଡ଼ଗରେ କେହୁ ଖଡ଼ଗ ନାଶି
ତଳକୁ ଧରି କେ ପଲକୁ ଛେଦ । ନେଶିଲା ସହିତେ ଭୂଷିଲା ବଦ
କେ ବଡ଼ାଇ କରି । ଗୋଡ଼ାଇ ଜୀବଙ୍କୁ କରରେ ଧରି । ୧୭ ।

ଗଢରେ ବେଗଙ୍କୁ ଅଛ ରହସ୍ୟ । କେ ଗଡ ବାନ୍ଧନ୍ତି ମଢ ହରଷେ
ଫୁଟନ୍ତି ବେଲଙ୍କୁ ଫୁଟନ୍ତି ବାଣ । ଛୁଟନ୍ତି ଯାହା ତା ଭୁଟନ୍ତି ପ୍ରାଣ
ଲୋଟନ୍ତି ମହୀରେ । ଭେଟନ୍ତି ଜୀବ ତା କାଳ ଦୂତରେ । ୨୮ ।

ପାଶରେ କେ ଚନ୍ଦ୍ରହାସରେ ମଲେ । ହାସରେ କହିଁ କେ ବନ୍ଦୀ ପଡ଼ିଲେ
ଗରବ କରି କେ ଶରଭ ନାଶି । ଭରବରେ କେହୁ ଶର ବରଷି
ହରବର ହୋଇ । ପରବଶ ତେଜି କେହୁ ପଳାଇ । ୨୯ ।

ଭୁଦାରେ ପଶି ଯେ ଭୁଦାରେ ଥିଲେ । ଗଦାରେ ମାଲେ ତାହାଙ୍କୁ ନାଶିଲେ
ପଦାରେ ଦେଖିଣ ହରିଣଗଣ । ଖେଦାରେ ଭୁକରେ ନେଲେ ପରାଣ ।
କେଦାରେ କେ ଲୁଚ । ଲେଦାରେ ଭାବ ଏ ଅସନ୍ତ୍ର ଧୃଷ୍ଟ । ୩୦ ।

ଶମ୍ବର ଦେଖି କେ କମର ଭିଡ଼ । ଅମରଷେ ଧର ତୋମର ଯୋଡ଼ି
ପାଶିଲା ପଛଙ୍କୁ ଧୂଷ୍ଟିଲା ଅଗେ । ପ୍ରହାର କରନ୍ତେ ମହା ହରଷେ
ଭାଙ୍ଗିଲା ମଧ୍ୟରେ । ବାଞ୍ଛିଲା ଜୀବନ ତେଜିଲା ଖରେ । ୩୧ ।

ଗୁଳ ବାଜ କେହୁ ଠଳ ପଡ଼ିଲା । ଝଳ ଶାବକ କେ ଛଳ ଫିଙ୍ଗିଲା
କୋପରେ ରୋପ କେ ଗୁପତେ ଭଟ । ଢଗରେ ବାନ୍ଧିଲା ଠାଣେ ଓଟାରି
କେ ଦେଖି ତରକ୍ଷୁ । ଯୋଖି ପ୍ରହାରିଲା ଶର ନ ଲକ୍ଷୁ । ୩୨ ।

ସିପାଇ ଭୁଜଙ୍ଗ କମ୍ପାଇ ଖରେ । ଛଡ଼ିଲେ ଯନ୍ତ୍ର ସେ ଉଡ଼ିଲେ ଖରେ
ବ ରଙ୍ଗରେ ଗଲେ କୁରଙ୍ଗ କୁଦ । ଠିଅରେ କାହାକୁ ଶୁଆରେ ଛେଦ
ସର୍ବେ ଏ ବଧିରେ । ଗର୍ବେ ଖର୍ବେ ଜନ୍ତୁ କଲେ ଅଗରେ । ୩୩ ।

ଶ୍ୟେନ ପାରଧିରେ ଛନ୍ନ କେ ହୋଇ । ତନମନ ତରୁ ଶିଖରେ ଦେଇ
ପକ୍ଷୀ ସମୂହରେ ଅକ୍ଷି ନିବେଶି । ଲୁଣ୍ଠାଇବା ଅସେ ଫିଙ୍ଗାଇ ଫାଶୀ ।
ଧରଣୀ ମୂଠାରେ । ଫିଙ୍ଗନ୍ତେ ଲାଗେ ସେ ଯେଝେ ଅଠାରେ ॥

ବାଜନ୍ତୁ କଲ୍ପ କେ ସଜ ସନ୍ତରେ । ଖଣ୍ଡିଲ୍ଲ ଯନ୍ତ୍ରୁଁ ସେ ଛୁଟିଲା ଖରେ
ଗୋଡ଼ାଇ ବନ୍ଧୁକ ଚଡ଼ାଇ ନାଶେ । ଲଢ଼ାଇରେ ଧାର ବଢ଼ାଇ ବଶେ
ତରୁ ମୋଡଚନ୍ତି । ଦୂରୁ ମୋଡ଼ଗଲେ ବନ୍ଧୁକ ବସ୍ତୁ । ୩୫ ।

ଏ ବିଧି ତହିଁ ପାରିଧି ବଢ଼ାଇ । ସକଳବଳ ଏକରୁଣ୍ଡ ହୋଇ
ନଦୀ ତଟରେ ଆସିଣ ମିଳିଲେ । ନୃପନନ୍ଦନଙ୍କୁ ଦର୍ଶନ କଲେ
ବୁଝାଇଲେ ଜୀବ । ରଖିବାକୁ ତହିଁ ନୋହିଲା ଠାବ । ୩୬ ।

ଭକ୍ଷ୍ୟ ଅଭକ୍ଷ୍ୟ ସେଠାରେ ବାଛିଲେ । ଅଭକ୍ଷ୍ୟ ଜୀବ ଦୂର କରି ଦେଲେ
ଯାଦବ-ନନ୍ଦନ ଅନୁରୂପରେ । ମେଦ ବାଣ୍ଟିଦେଲେ ପୂର୍ବ ବିଧିରେ
ସମସ୍ତେ ହରଷ । ସଙ୍ଗରେ ହୋଇଲେ ବାହୁଡ଼ା ବେଶ । ୩୭ ।

ବାରଣୀ-ଅଇରି-ବର-ବାହିନୀ । ଚରଣ ବେନି ମାନସରେ ଘେନି
ସ୍ମରଣ କରି ଯାହାକୁ ଅନେଶ । ଶରଣ ବନ୍ଦିଦୁର୍ଗ ନରଈଶ ।
କୃପା କର ମାତ ! ତୁମ୍ଭ ଅନୁଜ୍ଞାରେ ହେବ ଏ ଗୀତ । ୩୮ ।



# ଅଷ୍ଟାଦଶ ଛାନ୍ଦ

ରାଗ—ମଙ୍ଗଳ ଗୁଜ୍ଜରୀ

ମୃଗୟା ଶେଷରେ ମହା ମହୀନ୍ଦ୍ର-କୁମର
ବଳ ସହିତରେ ବନୁ ହୁଅନ୍ତେ ବାହାର ଯେ । ୧ ।

ଏହି ସମୟରେ ଏକ ରାକ୍ଷସ-ନନ୍ଦନ
ପାତାଳରୁ ବାହୁଡ଼ି ମିଳିଲା ନିଜ ସ୍ଥାନ ଯେ । ୨ ।

ଦେଖିଲା ଅପଣା ରକ୍ଷା ବନ ନାଶଖାର
ଘୋର ରଡ଼ି ଦେଇ ହେଲା ଯୁଦ୍ଧକୁ ବାହାର ଯେ । ୩ ।

ବୋଇଲା ମୋ ପୂର୍ବ କେଉଁ କଲା ଏତେଦୂର
ଗୋଷ୍ଠ ସହିତେ ବିନାଶ କରିବି ତାହାର ଯେ । ୪ ।

କାଳକୂଟ ଖାଇ ଉଠିବାକୁ ଇଚ୍ଛା କଲା
ବଜ୍ରଘାତ ବେଳେ ନେଇ ଶିର କେ ପାତିଲା ଯେ । ୫ ।

ଏତେ କହି ସର୍ବସୈନ୍ୟମାନଙ୍କୁ ଗର୍ଜିଲା
ଯହିଁ ଥିବ ଶୂଳ ବାନ୍ଧ ଆଣିବା ବୋଇଲା ଯେ । ୬ ।

ସ୍ୱର୍ଗେ ତ ମୋ ଶତ୍ରୁ ଇନ୍ଦ୍ର ରକ୍ଷି ନ ପାରିବ
ନର ଛାର କାହାବେଳେ ରକ୍ଷିତ ହୋଇବ ଯେ । ୭ ।

ଏତେ ଶୁଣି ହିଂସ୍ରରଡ଼ି ଦୈତ୍ୟମାନେ ଦେଲେ
ଆଗୁସାର ହୋଇ ଯେଝା ମତେ ବାହାରିଲେ ଯେ । ୮ ।

ଶାଳଶିଳ ଘେନି କେହୁ ଅଗରିବ ହେଲା
ଖଡ୍ଗ କେ ଝମକାଇ ଘୋର ରଡ଼ି ଦେଲା ଯେ । ୯

ଦତ୍ୟବଳ ସକଳ ହୋଇଲେ ଏକଠୁଣ୍ଡ
କେହୁ ପଥର ପକାଇ ପାଚେ ଆଣି ମୁଣ୍ଡ ଯେ । ୧୦ ।

ପଞ୍ଚାଶକୋଟି ପଞ୍ଚଶ ଲକ୍ଷ ବଳ ସାଜ
ଦଇତ୍ୟରାଜା ବଳେ କଲ୍ପ ଛଟି ମହାବାଜୀ ଯେ । ୧୧ ।

କାଳଦଣ୍ଡ କରବାଳ କରେ ଘେନିକରି
ବାମକରେ ମେରୁସମ ଧନୁ ଏକ ଧରି ଯେ । ୧୨ ।

ଭେରୀ ତୁରୀ ବୀର ବାଦ୍ୟମାନଙ୍କୁ ବଜାଇ
କୋଲାହଳ ଶବଦରେ ମେଦନୀ କମ୍ପଇ ଯେ । ୧୩ ।

ଏହା ଶୁଣି ନରେଶ-ନନ୍ଦନ ଷଟେ ଚହି
ଦେଖିଲେ ଅସୁରବଳ ଅସୁଛନ୍ତି ବାହି ଯେ । ୧୪ ।

ତୋ ରେ କାର କରି ବୃକ୍ଷମାନ ଉପାଡ଼ିଲେ
ଅଗିଆଣି ନରେଶ ସୈନ୍ୟରେ ପ୍ରହାରିଲେ ଯେ । ୧୫ ।

ଦେଖି ନୃପ-ନନ୍ଦନ ଖଡ଼୍ଗ ଝମକାଇ
କହେ ଦୁଷ୍ଟ ଦାନବେ ଅସୁଛ କାହା ପାଇଁ ଯେ । ୧୬ ।

କାଳ ମୁଖେ ପଡ଼ ଆଜ ସମସ୍ତେ ମରିବ
ତାଳ ପ୍ରାୟେ ନିଜ କରୁ ମସ୍ତକ ଝଡ଼ିବ ଯେ । ୧୭ ।

ଏତେ ବୋଲି ଦତ୍ୟଙ୍କ ଉପରେ କରବାଳ
ପ୍ରହାର କରନ୍ତେ ସେ ଲୋଟିଲେ ମହୀତଳ ଯେ । ୧୮ ।

ହସ୍ତୀଙ୍କ ଉପରେ ହସ୍ତୀ କଗଡ଼ିଲେ ନେଇ
ରଥୀଙ୍କ ଉପରେ ରଥ ଟେକିଣ ପକାଇ ଯେ । ୧୯ ।

ଏହିରୂପେ କଉଣପ ପଣ ବନାଶିଲା
ଘତବେ ଶୋଣିତ-ମହାନଦୀ ବୁହାଇଲା ଯେ । ୨୦ ।

ଘୋଡ଼ା ହସ୍ତୀ ମଡ଼ା ନକ୍ର ମକର ଅଦ୍ଭୁତ
ଭଗ୍ନରଥମାନେ ଯହିଁ ନଉକା ବଳିତ ଯେ । ୨୧ ।

ବୀରପିଣ୍ଡ ମୁଣ୍ଡ ରୁଣ୍ଡ ହୋଇ ଭାସିବାର
ପ୍ରକଟ ହୁଏ ଝିବା ମଚ୍ଛ କଚ୍ଛପ ନିବାର ଯେ । ୨୨ ।

ଖଣ୍ଡ ଖଣ୍ଡ ନାଳ ଜାଳ-ବ୍ୟାଳ ପଥିରନ୍ତି
ଅନ୍ତ ପିତ୍ତ ପଙ୍କ ପରି ଯହିଁ ଥାଉସନ୍ତି ଯେ । ୨୩ ।

ଶିରୋରୁହ ଶଇବାଳ ଘାସ ଫେନ ବତ
ପୁଷ୍ପମାନେ ଭାସିବାରୁ ହୋଇଛୁ ପୁଷ୍ପିତ ଯେ । ୨୪ ।

ଏବଂଭୂତ ନଦୀ ଦେଖି ପ୍ରେତଚର ଗଲେ
ନଳରାଜ୍ୟ ଆଗେ ଯାଇ ବାରତା କହିଲେ ଯେ । ୨୫ ।

ଶୁଣି ପ୍ରେତ ଧୂପ ଅତି ହରଷ ମନରେ
ବୈକୁଣ୍ଠା ସଙ୍ଗତେ ବହି ଏକାନ୍ତେ ବସିଲେ ଯେ । ୨୬ ।

ଗୃଳଯିବା ମହାନ୍ତ୍ରିଗଣଙ୍କ ଅମ୍ଭେ ଖରେ
ରୁଧିର-ନଦୀଏ ବହେ ଭାଳକ ଗନ୍ଧରେ ଯେ । ୨୭ ।

ଦୀର୍ଘରେ ସହସ୍ରେ କୋଶ ପ୍ରସ୍ଥ ବେନଶତ
ଏହିରୂପ ସେଠାରେ ବହୁଛି ଅବିରତ ଯେ । ୨୮ ।

ଯାଇଥିଲେ ଅମ୍ଭଠାରୁ ଗୃର ଅବକ୍ଷନ
ରୁଧିର-ନଦୀକୁ ଦେଖି ଆସିଲେ ବହନ ଯେ । ୨୯ ।

ଯେତେ ଅଛନ୍ତି ଅମ୍ଭର ପ୍ରେତସୈନ୍ୟ ମାନେ
ସଜ ହୁଅ ଯିବା ପାନ କରିବା ବହନେ ଯେ । ୩୦ ।

ଏତେ ବୋଲି ପ୍ରେତରାଜ୍ୟେ ବାହାର ହୋଇଲେ
ଭେର କୋଷ୍ଟ ଡେଢ଼ର ଲଘ ଯୋଜନ ଚଳିଲେ ଯେ । ୩୧ ।

ହସ୍ତୀ ଘୋଡ଼ା ରାକ୍ଷସ ମଡ଼ାରେ ଅକଳନ
ବହୁଛି ରକତ ନଦୀ ଅଛି ଅଦଭୁତ ଯେ । ୩୨ ।

ଦେଖି ମହା ସନ୍ତୋଷ ହୋଇଲେ ପ୍ରେତପତି
ବୋଇଲେ ଆଜ ସଫଳ ପାହିଥିଲେ ରାତି ଯେ । ୩୩ ।

ଶ୍ୱାନ ଶୃଗାଳ ଶାଗୁଣା କାକମାନେ ମେଳି
ମେଦ ମାଂସ ରକ୍ତ ଅନ୍ତ ଦେଉଛନ୍ତି ଗେଳି ଯେ । ୩୪ ।

ଅସ୍ଥି ରଡ଼ମଡ଼ କରି ଦନ୍ତେ ଚକଟନ୍ତି
ଅଣ୍ଟେ ଚର୍ମ ଶ୍ରମପାଇ ଓଠାରି ଛଡ଼ାନ୍ତି ଯେ । ୩୫ ।

ପ୍ରଚଣ୍ଡ ଚଣ୍ଡିକାମାନେ ମୁଣ୍ଡ ଚକଟନ୍ତି
ଦନ୍ତଘାତେ ଅସ୍ଥିମାନ ଦ୍ରବାଇ ଦିଅନ୍ତି ଯେ । ୩୬ ।

କେତେବେଳେ ରୁଧିର ପିବନ୍ତି ସୁଖପାଇ
ଏହା ଦେଖି ପ୍ରେତେଶ୍ୱର ମହୋଦ୍ବେଗ ହୋଇ ଯେ । ୩୭ ।

ଗଣଗଣ ଗଣା ଯତବଙ୍କୁ ଘେନି ସଙ୍ଗେ
ରୁଧିର ପିବନ୍ତି ଅତି ଆନନ୍ଦେ କ ରଙ୍ଗେ ସେ । ୩୮ ।

ରସରକ୍ତ ମାଂସ ମେଦ ଅସ୍ଥି ମଜ୍ଜା ଆଦି
ଯେ ଯାହା ଇଚ୍ଛାରେ ଖାଇ ହୁଅନ୍ତି ପ୍ରବୋଧି ଯେ । ୩୯ ।

ପିଶାଚ ପେତକେଶ୍ୱର ରାଜାହିଁ ଅସିଲେ
ଉଲ୍‌କ ମନ୍ତ୍ରୀ ସୁଦୈନ୍ୟ ଘେନି ପାନକଲେ ଯେ । ୪୦ ।
ଏମାନେହିଁ ସେହିରୂପେ ଭକ୍ଷି ହେଲେ ତୋଷ
ରାଜାନନ୍ଦନଙ୍କୁ କଲେ ବହୁତ ଆଶୀଷ ଯେ । ୪୧ ।

ଧନ୍ୟ ଧନ୍ୟ ଯୁବରାଜ ! ଯୁଗେ ଯୁଗେ ଥାଅ
ଅରି ମାରି ଅଖଣ୍ଡ ମଣ୍ଡଳାଧିପ ହୁଅ ଯେ । ୪୨ ।

ଘୋରଦନ୍ତା ପ୍ରେତେଶ୍ୱର ବୋଲେ ସମସ୍ତଙ୍କୁ
ଯେଣଥାଅ ମେଦ ମାଂସ ବରଷ ଦଶଙ୍କୁ ଯେ । ୪୩ ।

ସ୍ୱାମାପୂର୍ଣ ଚଣ୍ଡୀପୁତ୍ର ଯଜ୍ଞକାଳେ ହେଲା
ଏମନ୍ତ ରକତ ତହିଁ ଦେଖା ତ ନ ଥିଲା ଯେ । ୪୪ ।

ଏବେ କହୁ ପିଶାଚ-ରାଜା କହିବ ଗଲେ
ସେଠାରେ ପୀରଛ ହୋଇ ମଇନ୍ଦ ହୋଇଲେ ଯେ । ୪୫ ।

ବକ୍ରଦନ୍ତ ଲମ୍ବଦନ୍ତ ଏହାଙ୍କ ଦଶନ
ହାତେ ହାଥେ ଛୁଡ଼ିଗଲା କରନ୍ତେ ଅଶନ ଯେ । ୪୬ ।

ଏହୁରୂପେ ମାତେ ବସି ଗ୍ରାସ ସବୁ କଲେ
ରାଜା ଅଙ୍ଗୀରେ ବିଶେଷ ଶେଷ ବନ୍ଧନେଲେ ଯେ । ୪୭ ।

ଯେ ଯାହା ନଗରେ ଯାଇ ହୋଇଲେ ପ୍ରବେଶ
କୁବେରଙ୍କୁ ଡାକେ କର କଲ୍ୟାଣ ବିଶେଷ ଯେ । ୪୮ ।

ଏଥିଅନ୍ତେ ବୀର ପରବେଶ ବସାଠାରେ
ସ୍ୱବେଶ ଉଲ୍ଲାସି ହୋଇ ଅଛି ହରଷରେ ଯେ । ୪୯ ।

ସେ ଯାହା ସ୍ଥାନଙ୍କୁ ଯାଇ ସୁଖରେ ଅବୋର
ରନ୍ଧନ ଭୋଜନ କରି ବସିଲେ ଶଙ୍ଖା ଯେ । ୫୦ ।

ପ୍ରଭାତରେ ସଜହେଲେ ଯିବା ଉଦ୍ଦେଶରେ
ଭଣେ ପଦ୍ମନାଭ ଶ୍ରୀଚନ୍ଦନ ରସରେ ଯେ । ୫୧ ।

# ଊନବିଂଶ ଛାନ୍ଦ

ରାଗ—କେଦାର ( ଚକ୍ରକେଳି ବାଣୀ—ଶ )

ନୃପତି ନନ୍ଦନ କାଳି ଶେଷରେ । କଲ୍ଲ ଅନୁକୂଳ ଧୀର ବେଶରେ । ୧ ।
କଲା ଅମାତ୍ୟ କତି ଆବେଦନ । ଖଣ୍ଡ ଖଣ୍ଡେଣୀ ସାମନ୍ତେ ଗଣ୍ଡଣ । ୨ ।
ବେଢ଼ି କର ଅସ୍ତୁଅରେ ତୁରଙ୍ଗ । ଗଢ଼ ଚଳିଃ ସାଗର-ତରଙ୍ଗ । ୩ ।

× × ×

ବଳ ଚଳିଯାନ୍ତେ ଏହୁ ଶଧ୍ୟରେ । ମହାରାଜ ରାଜରାଜ ହିଣ୍ଡିରେ । ୪ ।
କ୍ରମେ ବହୁତ ଶେଷ କଲ ବାଟ । କନ୍ୟାପୁରକୁ ହୋଇଲେ ନିକଟ ॥
ରହି ସେଠାରେ ବସି ଏକାନ୍ତରେ । ସିଦ୍ଧ ମନ୍ତ୍ରୀସୁତ ବେନି ସଙ୍ଗରେ ॥
ବାଳା ପାଶକୁ ଲେଖନ୍ତି ସନ୍ଦେଶ ।
ନୃପନନ୍ଦନା କେତକୀ-ଗଉର । ଯୁବା ହୃତ-ବକ୍ତ୍ର-ଚନ୍ଦ୍ର ଚକୋର । ୯ ।
ମୋହ ମତ୍ତ ମୃଗ ବନ୍ଦୀ ପଞ୍ଜର । ଧୈର୍ଯ୍ୟ ପଙ୍କଜ ସମସ୍ତ କୁଞ୍ଜର । ୧୦ ।
ବନ୍ଧ ଅନଳ ଅଙ୍ଗାକୁ ତୋୟଦର । ଚନ୍ଦ୍ରେ ଯାହାଅଛୁ କର ବଗୁର । ୧୧ ।
ଘନ ବରଷେ, ଚାତକ ପିଅଇ । ତାର ଆହ୍ଲାଦେ କରି ଜୀଅଇ । ୧୨ ।
ତାହା ଅନ୍ୟତ୍ର ଅଟଇ ଘନର । ପ୍ରଭୁଆଶା କେବଳ ଚାତକର । ୧୩ ।
ବନ୍ଧୁ, ତୋତେ ମୁଁ ହୋଇଛି ଆଶାୟୀ । ରଖି ନ ପାର ନ ଦେବୁ ଭସାଇ ॥
କଲେ ନିରାଶ ପ୍ରାଣ ନ ରହିବ । କାମ-ହୁତାଶ ଅଙ୍ଗକୁ ଦହିବ । ୧୫ ।
କରଅନ୍ତୁ ତୁ ଯେବେଁ ଅଙ୍ଗୀକାର । ଆନ କରବୁ ନାହିଁ ବିମାବର । ୧୬ ।
ନୃପ ସଙ୍ଗେ ଗଲେ ମୁହିଁ ସଭାକୁ । ଦେଲ ବାରତା ଭେଦ ଜାଣିମାକୁ ॥
ଏତେ ଲେଖି ପତ୍ରିକା କରି ମୁଦ । ବନ୍ଧୁ କରରେ ଦେଲ ଲଭି ମୋଦ ॥
ସେ ଯେ ଗଲା ନୃପସୁତା ପାଶକୁ । କାମେ ବଢ଼ାଇ କୁମର ଆଶକୁ । ୧୯ ।
ଏଣେ ନୃପସୁତ ସୈନ୍ୟ ସଙ୍ଗରେ । ହେଲେ ପ୍ରବେଶ ନଗର ସନ୍ଧିରେ ॥

କନ୍ୟା ତାତ ବନ୍ଧୁର ସଜମାନେ । ପୂଜା କରି ବସାଇ ସିଂହାସନେ ॥
ନୃପଗଣ ଋଣ୍ଡୀଭୂତ ସେଠାରେ । ଗୌଳ କୁନ୍ତଳ କେରଳ ମସୂରେ ॥
ମଘ ଅନଘ ଲୋମଶ ନେପାଳ । ମରୁ ଦ୍ରାବିଡ଼ ଉଦର୍ଭ ପଞ୍ଚାଳ । ୨୩ ।
ଅଙ୍ଗ ସୌରାଷ୍ଟ୍ର ତେଲଙ୍ଗ କଳିଙ୍ଗ । ବଙ୍ଗ ବଦେହ ବାହ୍ଲିକ ଭୋଡ଼ଙ୍ଗ ॥
ଏ ଆଦିରେ ମହାରାଜା ଯେତେକ । କଲେ ପ୍ରଶଂସା ବୀରଙ୍କୁ ଅନେକ ॥
କହଁ ନୃପଜ କୋୟେ ଏହୁ ତନ୍ୟା । ଦେଖି ଏହାଙ୍କୁ ନେଉଁ ନପସୂତା ॥
ଆସି ଅଛୁଁ ଆମ୍ଭଙ୍କୁ ବରିବ । ଲାଜ ହସ୍ତସ୍ଥ ଅମ୍ଭ ଘାଟେ ଦେବ । ୨୭ ।
କେହୁ ବିଗ୍ନ କରଇ ହୃଦରେ । ବାଞ୍ଛ ଯେତେ ଥିଲେ ଏହା ଭୁଲରେ ॥
ନ ଆସନ୍ତାଇ ଏତେ ଦୂର ପନ୍ଥ । ସ୍ୱପୁରକୁ ଯାଆନ୍ତାଇ ଲେଉଟି । ୨୯ ।
କେହି ବୋଲେ ଅମ୍ଭ ଜନକାଙ୍କ୍ଷାଏ । ଅର୍ଘ୍ୟ ଘେନ ଆସିବେ ସ୍ୱାଗଯାଏ ॥
କନ୍ୟା କାହିଁ ପର୍ଯ୍ୟନ୍ତବା ବେଳକୁ । ମୁଖ କରିବା ସେକାଳେ ଭଲକୁ ॥
ଜାଣି ଅଟମ୍ଭିନେ ସେହୁ ଇଙ୍ଗିତ । ହେବ ମରଣି ତହିଁ ଉପସ୍ଥିତ । ୩୧ ।
ଏହିରୂପେ ଏକେ ଏକେ ନରେଶ । କରି ବିଗ୍ରହ ତେଜନ୍ତି ନିଶ୍ୱାସ ॥
କାମ ଭାଙ୍ଗିଲା ସମସ୍ତ ବଡ଼ାଇ । ଦେଲା କନ୍ୟାଲକ୍ଷ ଲୋକ ଛଡ଼ାଇ ॥
ହଜିଗଲା ସର୍ବମୁଖ ନିରସ । ଚନ୍ଦ୍ରଉଦୟରେ ଯଥା ସାରସ । ୩୫ ।
ଖଣ୍ଡିତେଶାଙ୍କୁ ପାଇବେ ଏ ଆଶା । ଦୂରେ ଉଖିଣ ହୋଇଲେ ନିରାଶା ॥
ଲାଜବନ୍ତି ବଧିଛନ୍ତି କେବଳ । ବୀର ପ୍ରତାପରେ ହୋଇ ଅବଳ । ୩୭ ।
କେହୁ ଦେଖିବା ଲୋଭରେ ଅଛନ୍ତି । କନ୍ୟା କେମନ୍ତ ଆନକୁ ପୂଜନ୍ତି ॥
ଏଣେ ବୀରବର ନୃପକୁମାର । ମନ୍ତ୍ରୀସୁତ ସଙ୍ଗେ କରେ ବିଚାର । ୩୯ ।
କହ କରୂପେ ଲଭିବା ବାଳାକୁ । ନ ହଅଇ ନଷ୍ଟ ମୋତେ ମାଳାକୁ ॥
ସେତ ଅଧୀରା ନରେଶ-ତନୁଜା । ଏଥି ଅଛନ୍ତି ମହା ମହାରାଜା । ୪୧ ।
ସ୍ତ୍ରୀଙ୍କ ଚଞ୍ଚଳେ ହିନା ଭୁଲିଯିବ । ଏଥି ଆନ ନୃପ ଜଣେ ବରିବ । ୪୨ ।
ତେବେ ଅମ୍ଭେ ତ ନେଇ ନ ପାରିବା । ମୂଳ ହୋଇବ ଜୀବନ ହାରିବା ॥

ଶୁଣି ମନ୍ତ୍ରିସୁତ ବୋଧ୍ୟ ବଚନ । ସ୍ତ୍ରିଶ୍ରୀ ଅଙ୍ଗୀକାର ଅନ ନନ୍ଦନ । ୪୭ ।
ଦେଖ ଫୁଟେ ପଦ୍ମ ରବି ସ୍ପନ୍ଦନେ । ନୋଏ ବିକାଶ ସନ୍ଧ୍ୟା ଅବସରେ ॥
ନିଶି ପ୍ରବେଶରେ ହୋଏ ମୁଦ୍ରିତ । ଯେଣୁ ସୂର୍ଯ୍ୟରେ ତାର ଦୃଢ଼ବ୍ରତ ॥
ଭୃଙ୍ଗ ଅଛିଲେ ଅଗ୍ରରେ ତହିଁର । ଘେନ ମାନସେ ସେ ଭାବ ଗୃହେକ ॥
ତଥା ବାଳକା ଆନ ନ କରିବ । ନୃପ ଅସ୍ତ୍ରେତ ତୁମ୍ଭଙ୍କୁ ବରିବ । ୪୮ ।
ସ୍ନେହେ ବିଚାର କରନ୍ତେ ମନରେ । ତେତେଣେ ସିଦ୍ଧ ନୃପସୁତା ପାଶରେ ॥
ହୋଇ ପ୍ରବେଶ ନମସ୍କାର ପାଇ । ବସ ବୋଲି ଆସନ ଦେଲେ ନେଇ ॥
ସିଦ୍ଧ ସମର୍ପିଲା କରେ ପଟ୍ଟାର । ଭୃଙ୍ଗ ଉଷାଙ୍କ ବଢ଼ିଲା ଫିଙ୍କାର । ୫୦ ।
ପଢ଼ି ଜାଣିଲେ ଅଇଲା ବାରତା । ମନ ଦୂର ହୋଇଲା ସବୁ ଚିନ୍ତା ॥
ବେଗେ ଲେଖିଲେ ସେ ପ୍ରତି ଉତ୍ତର । ଲେଉଟାଇ ସେହି ଲେଖ ଉପର
ଅନିମିଷେ ଗୃହେଁ ମାର୍ଗ ଭ୍ରମର । କାଷ୍ଠା ନ ଦଶେ ହୋଇବାରୁ ତର ॥
ଗତୁଁ ପ୍ରତିଆଶା କର ବରଦେ । ଅମ୍ଭ ନୟନଯୁଗଳ ନ ବନ୍ଦେ । ୫୫
ରଙ୍କନେହି ସୁଖୀ ନୋହେ କ୍ଷମେଷେ । ଜୀବ ରହିଲା ଭ୍ରମ୍ବ ପ୍ରତିଆଶେ ॥
କଣ୍ଠଗତ ହେଲା ଜାଣ ଭ୍ରମର । ଭାବ ଘେନ, କହନ୍ତୁ ବୀରବର ।୫୭।
ପ୍ରତିପାଦ ଦ୍ୱିତୀୟ ବର୍ଣ୍ଣେ ବୋଧ । ହୋଇ ତେଜିବ ଲେଖ ଅପରାଧ ॥
ଏତେ ଲେଖି ମୁଦ ଦେଲା ବଟୁକୁ । ସେ ଯେ ଗଲା ନୃପସୁତ ପାଶକୁ ॥
ଲେଖ ଦେଇ ସନ୍ଦେହ କଲା ଦୂର । ପଢ଼ି ହରଷ ହୋଇଲା କୁମର ॥
ଏଥିଅନ୍ତେ ଇନ୍ଦ୍ରବଜ୍ର ଈଶ୍ୱର । କଲା ଉଆଣ ବନ୍ଦୁତ ସମ୍ଭାର । ୬୧ ।
ନୃପମାନଙ୍କ ସମ୍ଭାବନା କଲା । ଯେ ଯେମନ୍ତ ସେହିରୂପେ ବିଚାରି । ୬୨
ନିଶି ଅବଶେଷେ ସଭା ମଣ୍ଡାଇ । ମୋଘ ସୁଧର୍ମା ସଭାକୁ ଖଣ୍ଡାଇ । ୬୩ ।
ରାଜାମାନଙ୍କୁ କରାଇ ବିଜୟେ । ଯେସନ୍ତ ଅଟନ୍ତି ଉପୁରେ ଦୁର୍ଜୟେ ॥
ପୁରବର ଉରନାଦେ ଉଚ୍ଛୁଳ । ଅନ୍ତପୁରରେ ଶୁଭେ ହୁଳହୁଳି । ୬୪ ।
କନ୍ୟା ସଜ କର ବେଗେ ଏ ବାଣୀ । ଶୁଣି ଉଷାଙ୍କ ସକଳ ତରୁଣୀ ॥

ଏଥୁ ଅନ୍ତରେ ଭଦ୍ରସେନ ରାଯ୍ୟେ । ନୃପଗଣ ପୁରତେ ଉଭା ହୋଯ୍ୟେ ।
ଧୀରେ କହନ୍ତି କୋମଳ ଉତ୍ତର । ଶୁଣ ସକଳ ଭୂପ ନରବର । ୬୮
ଅଛୁ ମୋହର ଏକଇ କୁମାରୀ । ନାମ ଶଶିରେଖା ଏକ ସୁନ୍ଦରୀ । ୬୯
ଖୋଜି ବୁଲିବାରେ ବର ମଣ୍ଡଳରେ । ସମ କର ଦେଖିଲେ ନାହିଁ ଗୃହେ
ସେହି କାରଣୁ କଲି ସ୍ୱୟମ୍ବର ! ବାଳୀ ବରିବ ଧୀର ଉଦ୍ଧବର । ୭୦ ।
କେହି ମନରେ ଆନ ନ ଧରିବ । ମାଳ! ଯାହାକୁ ଦେବ ସେହି ନେବ
ଶୁଣି ସମ୍ମତ ହୋଇଲେ ସର୍ବ ରାଜା । ଆଜ୍ଞା ଦେଲେ ଆଣ ତବ ତନୁଜା ॥
ଏ ବଚନେ ସନ୍ତୋଷ ନୃପବର । ଅନ୍ତଃପୁରକୁ ଚଳିଲେ ସତ୍ୱର । ୭୪ ।
ଆର ଛାନ୍ଦରେ କହିବା ବରଣ । କର ଶ୍ରୀକୃଷ୍ଣ ଚରଣ ଶରଣ । ୭୫ ।
ଭଣେ ବାଞ୍ଛି ନଗର ଜରଇଂଶ । ପଦ୍ମନାଭ ଶ୍ରୀଚନ୍ଦନ ଏ ରସ । ୭୬ ।



# ବିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଜୀବେଶ ପ୍ରାପତ ଅଶେଷ ସଖୀମାନେ
ସୁବେଶ ବାଳାଙ୍କୁ କଲେ
ଅଟଳ କରଣ ଗୁଚ୍ଛର କେଶଙ୍କୁ
ରଚନା କଲେ କବରୀ । ୧ ।

ଖଞ୍ଜନ-ନୟନେ ରଞ୍ଜନ ଧୈର୍ଯ୍ୟ—
ଭଞ୍ଜନ ଅଞ୍ଜନ ଦେଲେ
କୁନ୍ଦନ-କେତକୀ-ନନ୍ଦନ-ଚନ୍ଦ୍ରେ
ସୂକ୍ଷ୍ମ ଚନ୍ଦନ ଲେପିଲେ । ୨ ।

ଯେ ଅଳଙ୍କାର ଅଳକାର ତାହାଙ୍କୁ
ଅଳଙ୍କାର ଶୋଭା କେତେ
ତଥାପି ପୁରୁଷ ବଶଙ୍କୁ ସଖୀଏ
ଖଞ୍ଜିଲେ ଯଥା ଯୁଗତେ । ୩ ।

ସହର ସଳମା ଅତର ଉତ୍ତୁଣ
ପିନ୍ଧାଇଲେ ବାସ ଜର
ଅମ୍ବରାଙ୍କୁ ଅଗ ପାଶ୍ୱ କାଶ୍ମୀରାଗ
ଶ୍ରୀଅଙ୍ଗରେ ଗନ୍ଧ ଜର । ୪ ।

ଏ ବନ୍ଧୁ ସିଦ୍ଧିରେ ଅଧୀରେକ୍ଷଣୀଙ୍କ
ଓଢ଼ଣୀ କେ ଦୋଡ଼ାଇଲା
ଅଳିକ-ଲଲାଟ-ଫଳକ ନୟନ
ଝଲକ ମାତ୍ର ଦଶିଲା । ୫ ।

ଜନକ ଆଜ୍ଞାରେ ଜଣେ ଦେଲେ ପୁଣ
କନକ-କମଳ-ମାଳ
ମଙ୍ଗଳେ ମଙ୍ଗଳ ହୁଳହୁଳି ଦେଇ
କହ୍ଲାଇଲେ ଅନୁକୂଳ । ୬ ।

ଶୋଭାବତୀ କର ଲୋଭରେ ଧରି କେ
ଉଭା ମଞ୍ଚରେ କରାଇ
ଶୁଣାଇ ସୁଭାଷା ଜଣାଇ ସମସ୍ତ
ମଣାଇ ପଦ୍ମଶ୍ରୀ ନେଇ । ୭ ।

ବରଣ ସଭାକୁ ଶୁଭିଲା ସନ୍ଦେଶ—
ଚରଣ-ନୂପୁର ନାଦ
ଚେତାଇ ତାହା ଆରମ୍ଭ କଲା କାମ
ମତ୍ତାପଣ ପରମାଦ । ୮ ।

ସଙ୍ଗ ନରପତି ଗଙ୍ଗ ଭୂତ କଣ
ଯେ ସ୍ୱୟଂବର କଲେ ମୂଳ
ତା ଜୀବ ସଫଳ ହେବ ବାଳାମଣି
ଯାହା କଣ୍ଠେ ଦେବ ମାଳ । ୯ ।

ଯେମନ୍ତ ବଗ୍ରୁରୁ ସିଦ୍ଧ ପ୍ରଭାକର
ଯେଉଁ ଯୋଗିନୀ ପ୍ରବେଶ
ବାଳା ପାଶେ ଡିଣ୍ଡି କହେ "ନବବାଳ !
ଏ ଯେତେ ଯେତେ ନରେଶ । ୧୦ ।

ଅଟିନ୍ତି ତୋର ବରଣକୁ ଅନ୍ତ—
କରଣରେ ଲୋଭ ବିହ

ନାମ ଶୁଣିବାରୁ ଏବେ ଦେଖିବାରୁ
କାମେ ଦେଉଛନ୍ତି ଦହି । ୧୧ ।

ତାହାଙ୍କ ଦେଶ ବୟସ ବଳ ଯଶ
କହିବା ପ୍ରକାଶ କରି
ବିଭବ ପ୍ରଭବ ଅଣ୍ଢ ବଂଶ ଇତି
ଯେ ଯେମନ୍ତ ଦଣ୍ଡଧାରୀ । ୧୨ ।

ମହତ ମହିମା ଅଦ୍ଭୁତ ହିତ ଯେ
କହିବା ଭିନ୍ନ ଭିନ୍ନ ରେ
ଯେ ମନକୁ ଚୋର ଅଛିବ ସତ୍ୱର
ମାଳା ଦେବୁ ତାହା ଉରେ" । ୧୩ ।

ଏମନ୍ତ କହି ଆଗଭର ହୋଇଣ
କହେ ଯୋଗିନୀ ଉତ୍ତର
"ବିଧୁବଦନା ! ନେତ୍ରଯୁଗେ ଦେଖ ଏ
ମଧୁବନ ନରେଶ୍ୱର । ୧୪ ।

ସୁନ୍ଦର ସୁଗୁଣ-କନ୍ଦର ଭୂପ ପୁର—
ନଗ ରସିକ ବର
ଚତୁରୁ ଗଲେ କୁଞ୍ଚିତ-କୁନ୍ତଳାରେ !
ବର କର ଏହା ବର । ୧୫ ।

ତୁଙ୍ଗସ୍ତନି ! ଦେଖ ଦେଖ ଏ ପ୍ରଦେଶ
ଅଙ୍ଗ ଦେଶ ନୃପ ଶ୍ରେଷ୍ଠ
ଗଇତିଙ୍କ ଗୋତ୍ର ! ପ୍ରତାପୀ ଅଟେ ଏ
ବଇରି-ବଂଶକୁ ରାହୁ । ୧୬ ।

ଭୟ ନ କର କାମରୂ କାମିନୀ ରେ !
ନୟନରେ ଗୃହାଁ ଥରେ
ମନକୁ ଆସିଲେ ଆନକୁ ନ ପୁଚ୍ଛି
ମାଳ ଦଅ ଏହା ଉପରେ । ୧୭ ।

ଚମ୍ପାଗୌର ! ଅନ୍ୟ କଥା ଥିଲେ ତୋର
ଚମ୍ପାବତୀ ନୃପଠାରେ
ବାଲାମଣି ! କାମଜ୍ୱାଲାକୁ ବିନାଶ
ମାନକୁ ଦେଇ ଏ ଦ୍ୱାରେ । ୧୮ ।

ପଞ୍ଚାଳ କାମ ନ କରିବ ଦେଖ ଯେ
ପଞ୍ଚାଳ ଦେଶ ନୃପତି
ତୁ ଯେଡ଼େ ସୁନ୍ଦରୀ ସେ ତେଡ଼େ ସୁନ୍ଦର
ହେବ ଅନୁରୂପ ପତି । ୧୯ ।

ପାଞ୍ଚ ମାନସରେ କାଞ୍ଚୀଶୋଭନରେ !
କାଞ୍ଚିଦେଶ ନୃପବର
ସାର ଦିନା ମଧ୍ୟେ ସାରସଗତି ! ତୁ
ମାଇ—ପିଣ୍ଡ ଦେବୁ ପାର । ୨୦ ।

ହାଟକଗୌର ! ସଂପୁଟକ ସ୍ତନାରେ !
ଲାଟ ଦେଶ—ରାଟ ଯେହୁ
ବଳଲେ ତତ୍ ହିବଲଶୋଭନା ! ତୁ
ମାଳ ଦଅ ଦେଇ କହୁ । ୨୧ ।

ଅଙ୍ଗନାମଣି ! ନ ଭାଙ୍ଗ ବାଣୀ ଦେଖ
ବଙ୍ଗଦେଶ ନୃପବର

ଶ୍ରେଷ୍ଠ ଅଟେ ଏହୁ ହୁଷ୍ଟ କାଶନନ୍ଦଣେ
ଅଷ୍ଟବିଂଶ ସମ୍ବତ୍ସର । ୨୨ ।

ସାହାକୁ ଯେବେ ତୁ ସ୍ନେହାକୁ କରୁ
କାମ—ଭାମ ନାଶ ଯିବ
ବ ଅଛୁ ତୋ ମନେ ଭୁହ ତାହା ଜାଣି
ଅମ୍ଭ କହିଲେ କହିଲେ କି ହେବ ॥

ରସବନ୍ତରେ ! ବିରସ ନୃପ ଦେଖ
ରସ ତରଙ୍ଗ ନରେଶ
ଅରୁଣ ସମ ପ୍ରତାପେ ତାପେ ଅତ
ତରୁଣ ଅଟେ ବୟସ । ୨୪ ।

ମୂରତି ସୁନ୍ଦର କୀରତି ସ୍ନେହାର
ଧରଣୀରେ ପୂରିଅଛୁ
ବରଣ କର ବରି ନ କର ଇଚ୍ଛା
ଯେ ତୋ ମନକୁ ଆସୁଛି । ୨୫ ।

କେଶରକଣ୍ଠ ! କେ ସର ତୋତେ ଦେଖି
କେଶବୀ—ବଶ—ନରେଶ
ସୁଯୋଗ ଥିଲେ ସୁଯୋଗ ହୁଅ ଏଣେ,
ରଣ ପ୍ରତାପ ବିନାଶ । ୨୬ ।

କୁଞ୍ଜର ଗତି ! କୁଞ୍ଜଗଲ — ପତି ଏ
ପୀଡ଼ାକାର ସ୍ନେଣେ କର
ମୋତେ ଅଭିସ୍ମୃଛି ଚିତ୍ତେ ଭାବ ଥରେ
ତୋତେ ଅଟଇ ଏ ବର । ୨୭ ।

ଅମୃତ–ବେଷ୍ଟିତା ! ଜମ୍ବୁକଣ୍ଠି ! ଶୁଦ୍ଧିବା
ଜମ୍ବୁନଦ ପୁର ରାଜା!
ଯାହାରେ ଅଭ୍ର ନୃପ ଝଙ୍କନ୍ତି ଅମାପ
ପାଦେ କରୁଥାନ୍ତି ପୂଜା । ୨୮ ।

ବରିବୁ ଯେବେ ନ କରିବୁ ଲବେ ତୁ
କାମଙ୍କୁ ରମ୍ଯ ଚିତ୍ତରେ
ସୁବାଣି ! ଯେଣ ମୋ ବାଣୀ ହୃଦ କରି
ମାଳା ଦିଅ ସ୍ନେହା ଭରେ । ୨୯ ।

ମଛନେତ୍ରୀ ! ତୁଷ ପଛକର ଦେଶ
ମଛଦେଶ ନୃପ ସ୍ନେହ୍ଭ
ବାମନେତ୍ରି ! ହେମ ଦାମ ଦିଅ ସ୍ନେହଣ
କାମ ଅପସର ରହୁ । ୩୦ ।

ବନ୍ଧୁ ଦେଖ ସିଖ-ସିନ୍ଧୁ ଭୁ ସଦନେ
ସିନ୍ଧୁଦେଶ ନୃପ ଶୋଭି
ମନେ ଥିଲେ ମାଳା ଦିଅ ସ୍ନେହା ଗଳା
ହୋଇନାହିଁ ସ୍ନେହ ବର୍ତ୍ତି" । ୩୧ ।

ସ୍ନେମନ୍ତ ଅନେକ ନରେଶମାନଙ୍କ
ନାମକୁ କହ ବାଳାକୁ
ପୁଣ କହ ସ୍ନେହେ—" ଭୁଚ ତୋଷଚିତ୍ତେ
କାହିଁ ନ ଦେଲୁ ମାଳାକୁ । ୩୨ ।

ମୋହ କହିବାରେ ତୋହ ଶୁଣିବାରେ
ମହା ମହାରାଜା ଗଲେ

ସୃଷ୍ଟିର କର୍ତ୍ତା ଯଉଁମାନେ ଅନ୍ତର
ଦୃଷ୍ଟିର ଯୋଗ୍ୟ ନୋହିଲେ । ୩୩ ।

କହିବା କଥା ସେ ଅଯୁତ ଅମ୍ବର
ଅପ୍ରଭାଷି ! ଇଚ୍ଛା ତୋର
ଯେଉଁଥିରୁ ସଫାର ଶୋଭାସାର ଯେତେ
ସାରସାରି ! ମନେ କର । ୩୪ ।

ପୁଷ୍କର କଥା ଲଭିବା ଦେଖ ଯେତେ
ପୁଷ୍କର-ଦ୍ୱୀପ-ଭୂପରେ
ତହିଁରେ ଅଖ୍ୟାତ ସାକ୍ଷାତରେ ଖ୍ୟାତ
ପୁରବର ପଦ୍ମାକର । ୩୫ ।

ନରେଶ ତହିଁଏ ସୁରେଶଙ୍କୁ ବଳ
ଦୂରେ ଶଙ୍କ ନାଶ କରେ
ନାମକୁ ଶୁଣିଲେ ଯମଙ୍କୁ ଅଧିକ
ଅରି-ନରବର ଡରେ । ୩୬ ।

ଯାହାର ପ୍ରତାପ-ତପନ-ଆତପ
ଅମାପ ତାପେ ସଂଗତ
ଶୁଚିତର ପୂର୍ବ ସଞ୍ଚିତ ସଲିଳ
ବଞ୍ଚିତ ହେଲା ସହର । ୩୭ ।
ବିପକ୍ଷ ଲକ୍ଷ ପକ୍ଷ୍ମଳାକ୍ଷ ଈକ୍ଷଣ—
ଅଶ୍ରୁଜାବିଲ କମଳ—
ପ୍ରବାହ ସଂପୂର୍ଣ୍ଣ ହୋଇବାରୁ ବର୍ଣ୍ଣି
ଅଦ୍ୟାପି ଦେଖ ଶ୍ୟାମଳ । ୩୮ ।

ଏହାଙ୍କ ସକଳ ଦ୍ୱୀପ ଭୂମିପାଳ
ଲଙ୍ଘି ନ ପାରନ୍ତି ଛଳେ
ସ୍ୱସୈନ୍ୟ ସଙ୍ଗତେ ଯେନ ଅବରତେ
ସେବଥାନ୍ତି ସର୍ବକାଳେ । ୩୯ ।

ଦୟାସାଗର ନାମ ବୀର-ଉତ୍ତମ
ଦେଖ ତାହାଙ୍କ ପାରୁଣେ
କୁମର ବର ବରବେଶେ ବସିଛୁ
ବରବରନା ତୋ ଅଂଶେ ।

ଏହାର ସଙ୍ଗତେ ବିହାର ହୋଇବ
ଯାହାର ସର୍ବଦା କାଳେ
ଚନ୍ଦନତମ୍ବା ! ସେ ଭୁଚ୍ଛିକର ଦେବ
ଶ୍ରୀକନ୍ଦପଦ ପଦତଳେ । ୪୧ ।

ବାଳକ ଦନରୁ କାଳକ ପର୍ ଭୁ
ଶୁଣୁଥାନ୍ତି ଏହା ନାମ
ଯୁବା ହୋଇବାରେ ତେତାଇ ତା ବାରେ
ପୀଡ଼ା ଦେଉଥିଲ୍ଲ କାମ । ୪୨ ।

ସ୍ୱପ୍ନ ପଠ ଭେଠ ବରଦ ଉଚ୍ଚାଠ
ଭୁ ରଦରେ ଟହାଉ ପର୍
ଅଣାଇ ଅଛୁ ଭୁ ମଣାଇ ପର୍ ଗୋ
ଦେଉ ଲେଖ ପଉଂପର୍ । ୪୩ ।

ସୁବେଣି ! ଜନ୍ମିଛୁ ଜୀବେଣୀ ହେବୁ ଭୁ
କବେଣି ନୟନ ତରୁ

କଳିକା-କମଳସ୍ତନା ! ବେଗେ କର
ମାଳିକା ସ୍ୱେଦ୍ୱାରେ ଦନ୍ତ୍ର " । ୪୪ ।

ଏମନ୍ତ ଯୋଗିନୀ ବଦନରୁ ଶୁଣି
କାମେ କାମିନୀ ପୁଲକ
ଜ୍ୟେଷ୍ଠ ତୃଷିତ ଗୃହକୀ ଚିତ୍ତ୍ ଯେସ୍ନେ
ନୀରଦ ଦେଖି ଉତ୍ସୁକ । ୪୫ ।

ଲଜ ଭୟ ଅନୁରାଗ ପୂର୍ଣ୍ଣ କଷ
ଆଗତର ହୋଇ ବାଳା
ସେ ନବକିଶୋର ମଦନ-ସୁନ୍ଦର
କଣ୍ଠେ ଦନ୍ତ୍ କଲ ମାଲା । ୪୬ ।

ସେ କ୍ଷଣେ କ୍ଷଣେ ଲକ୍ଷଣ ଚଭୂଷ୍ମ୍ୟୁ
ତେଜନ୍ତେ ନାଚ ଅନୁରାଗ
ତରଗତ ଦୁଃଖ ବିନାଶ ହୋଇଣ
ସୁଖନଦୀ ବୃଦ୍ଧି ବେଗ । ୪୭ ।

ପୂର୍ଣ୍ଣ ମନୋରଥ ସ୍ୱର୍ଣ୍ଣଗୋଣୀ ହୋଇ
ତୃପ୍ତି ପୂରକ୍ ଲେଉଛି
ସେ ସଙ୍ଗେ ସଙ୍ଗେ ନୃପତନୟ ମନ—
ନୟନ ଗଙ୍ଗ ପାଉଛି । ୪୮ ।

ସଖୀ ମେଳ ହୋଇ ଅଖିଳମୋହନୀ
ପୁରେ ହେଲା ପରବେଶ
ଦଶିଗଲା ସର୍ବ ନୃପ ମୁଖ ଯେହ୍ନେ
ଶଶି ଉଦୟେ ସାରସ । ୪୯ ।

ବଧୂରେ ଲାଜ-ଜଳଧିରେ ବୁଡ଼ି ସେ
ଅଧୀରେ ସଖୀଙ୍କୁ ଗଲେ
ଅଛ ମାନବତରେ ମଧ ବିରସରେ
ଯେ ଯାହା ପୁରେ ମିଳିଲେ । ୫୦ ।

ହରଷ ସହିତ ପରଶ ପରସ୍ପେ
କନ୍ୟା ପୁର ନର ନାରୀ
ଯେ ଯହିଁକି ଯୋଗ୍ୟ ତାକୁ ଯେ ପ୍ରାପତ
ମନେ ପ୍ରେମନ୍ତ ବିଗ୍ରହ । ୫୧ ।

ନୃପ ମନ୍ତ୍ରୀ ମେଳ ହୋଇ ଅନୁକୂଳ
ବିବାହ ପାଇଁ ବୁଝିଲେ
ଆର ଛନ୍ଦରେ ସୁଜନେ ତା ଶୁଣିମ
ବାଙ୍କ ନରେଶ ଭାଷିଲେ । ୫୨ ।

———

# ଏକବିଂଶ ଛାନ୍ଦ

ଚକ୍ର କେଳି ବାଣୀରେ ଗାଇବ ( ଡ-ଷ )

ରାଗ—ବରାଡ଼ୀ ( ଖ )

ଏଥୁଅନ୍ତେ ଶୁଣ ଜନେ ସୁରସ । ଯହୁଁ ଚରଣ ବିଧି ହେଲା ଶେଷ । ୧
ତାଙ୍କ ମନ୍ତ୍ରୀଙ୍କ ଇନ୍ଦୁବନ୍ତୀ ନୃପ । ଯତ୍ନେ ମଣ୍ଡାଇଲେ ବିଭା-ମଣ୍ଡପ । ୨ ।
ପୁର ମାର୍ଗକୁ ମଣ୍ଡି ଏ ରୂପରେ । ସମ ନାହିଁ ମହୀ ନାଗ ନାକରେ ॥
ଦେଖି ହରଷ ହେଲେ ନୃପବର । ନୋହେ ଇତର ଉଅଣ ସମ୍ଭାର ।୩।
ପ୍ରତିଦ୍ୱାରେ ରମ୍ଭାତରୁ-ତୋରଣ । ନାନା ମଙ୍ଗଳ ବିଧାନ ବାଜଣା । ୪ ।
ହାଣି ପ୍ରବେଶେ ଗନ୍ଧଷଣ ବିଧି । ଦାସୀଗଣେ ନୂତନ ବାସ ପିନ୍ଧି । ୬ ।
ଦେନ ନାପିତ୍ତ ସୂର୍ପ ନାରକେଳ । ଖର ବଦସ୍ଥ ପଞ୍ଚ ଦୂର୍ବାଦଳ । ୭ ।
ହେଲେ ବାହାର ହୁଳହୁଳି ଦେଇ । ନାନା ବିଧି ବାଦ୍ୟମାନ ବଜାଇ ॥
ବାସଭୂଷା ଦେଇ ଦେବୀ ମଙ୍ଗୁଳ । ବୃଦ୍ଧ ସାମନ୍ତ ଗୃହ ଜଳ ତୋଳି ।୯।
ବର ମନ୍ଦିରେ ପ୍ରବେଶ ହୋଇଲେ । ଗନ୍ଧଷଣ ବିଧିକି ଆରମ୍ଭିଲେ ।୧୦।
ସେହି ସଙ୍ଗେ ବରଦାସୀ ବାହାର । ଅଟି ପରବେଶ କନ୍ୟା ନବଙ୍କ ୧।
ତହିଁ ଦେଇ ବହୁ ବାସ ଭୂଷଣ । କଲା ଯଥା ବିଧିରେ ଗନ୍ଧଷଣ ।୧୨।
ବେଗେ ବାହୁଡ଼ି ମିଳିଲେ ମନ୍ଦିରେ । ସେହି କଥା ପକାଇ ପରସ୍ପରେ ॥
ଯେତ୍କ ଦାସୀ ଆରକକୁ କହଇ । ଉଲ୍ମ ସୁନ୍ଦରୀ ଜନ୍ମିଥିଲା କେହି ॥
ସେବେ ଏହାକୁ ପାଇବ ମଦନ । ନଷ୍ଟେ ତପଭଙ୍ଗ ହେବେ ଈଶାନ ॥
ଯେବେ ହେବ ସେହି ଦୃଷ୍ଟି ଗୋଚର । ହେଲେ ନାଶ ଯିବ ଯୁବା ସଂସାର ॥
କଲା ରଚନା ବିଧାତା କି କର । ଦେଖି ରହିଲା କେହି ଧୈର୍ଯ୍ୟ ଧର ॥
କଉଁ ପୁରୁଷ କାହିଁ ତପ କଲା । ଏହା କର ଧରିବା ଯୋଗ୍ୟହେଲା ॥
ଏ ରୂପରେ ଦାସୀ କଥା ହେବାରେ । ଶୁଣି ନୃପସୁତ କର୍ଣ୍ଣ ତହିଁରେ ॥

ଶୁଣି ଅଙ୍ଗେ ପୁଲକ ଜାତ କଲ । ତାଙ୍କୁ ପାଇବି ଧନ୍ୟ ମୁଁ ବିଚାରି ॥
କନ୍ୟାପୁରେ ଏପରି ଶବ୍ଦ ଘୋଷା । ନୃପ ସୁତଙ୍କ କରନ୍ତି ପ୍ରଶଂସା ।୨୧।
କେହୁ ବୋଲେ ଧନ୍ୟ ଅମ୍ଭ ସଖୀର । ପାଉଅଛୁ ଏହାଙ୍କୁ କରି ବର ।୨୨।
ଦୁହେଁ ଦୁହିଁଙ୍କ ଉତ୍ତମ ଦିଶିବେ । ଯେକ ଆସନରେ ଯେବେ ବସିବେ
ଶୋଭା ବୋଲୁ ଯେ ଥାନ୍ତି ଅନଙ୍ଗଙ୍କୁ । ସମ ହେବ କି ସେ ଏହା ଅଙ୍ଗଙ୍କୁ
ଦେଖିବାରୁ ଚେତନା ବୁଡ଼ିଗଲା । ମନ କଷ୍ଟୁନ ତାଠାରେ ରହିଲା ॥
ଶୁଣି ଏ ବାଣୀ ନୃପସୁତା ତୋଷ । ସେ ମୋ ପ୍ରଭୁ ହେବେ ଭାବ ହରଷ ॥
ଯେମ୍ଭେ ଅନ୍ତେ ନିଶି ଶେଷେ ବାଳାଙ୍କୁ । ସଖୀ କରାଇ କୋମଳ ସ୍ନାନଙ୍କୁ ॥
ଦଧି ଗୁଡ଼ ଭକ୍ତଙ୍କୁ ଭୁଞ୍ଜାଇଲେ । ବର ସ୍ମରରେ ଯେମ୍ଭରୂପେ କଲେ ॥
ଲୁଣଚଉଁରୀ କନ୍ୟାଙ୍କୁ ପୂଜାଇଁ । ନାନାଜାତି ବାଦ୍ୟମାନ ବଜାଇ ॥
ସେ ସମୟେ ନୃପସୁତ ହରଷ । ଅଛି କୁତରେ ହୋଇ ବରବେଶ ॥
ମନ ଅଧିକ ଉଲ୍ଲାସ କରଇ । କାମ ସମ୍ମୋହନ ଶ୍ୱର ଧରଇ ॥
ଯେମ୍ଭେ କନ୍ୟା ତାତ ନିଜ ପୁତ୍ରଙ୍କୁ । ପଠାଇଲେ ବର ଆଣିବାକୁ ॥
ସେ ଯେ କଲ କଲ୍ଲୁ ଅନୁସରଣ । ବାଟେ ଦେଖିଲେ ବାଟବରଣ ॥
ତହୁଁ ଅଧିକ ହୋଇଲେ ଉଛାଟ । ଆସି ପ୍ରବେଶ ମଣ୍ଡପ ନିକଟ । ୩୪ ।
ଯେମ୍ଭକାଳେ ଜ୍ୟୋତିଷ ଜଣାଇଲ । ବିଭା ଅନୁକୂଳ ବେଳ ହୋଇଲ ॥
ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀ ସୋମବାର । ଭୁଲ ଚନ୍ଦ୍ରମା ସ୍ୱାତି ନାମେ ତାର ॥
ଶୁଭ ଯୋଗ ଦିନ ଦଶ ଦଣ୍ଡରେ । ରବି ବୃଷରେ ବୁଧ ମିଥୁନରେ ।୩୭।
ଶୁକ୍ର ମୀନ କକଡ଼ା ଲଗ୍ନ ହୋଇ୍ୟେ । ଲଗ୍ନ ସଙ୍ଗେ ସୁରଗୁରୁ ଉଦୟେ ॥
ଚନ୍ଦ୍ର କେନ୍ଦ୍ରରେ ତୁଲେ ଶନୈଶ୍ଚର । ରହୁ ଅବୋର ମଙ୍ଗଳ ମକର ॥
ଯେମ୍ଭବହୁତ ଶୁଭଯୋଗ କ୍ରମରେ । ବର ବିଜୟେ ବିଭା ମଣ୍ଡପରେ ॥
ଲକ୍ଷ ଲକ୍ଷ ମୁଖ ଶଙ୍ଖ ଶବଦ । ଘଣ୍ଟ ପଟହ ଭୂରି ଭେରୀ ନାଦ । ୪୧ ।
ତାଳ ମୃଦଙ୍ଗ କର୍ଣ୍ଣାଳ କାହାଳ । ବଡଘୋଷ ବୀଣା ରବା ମର୍ଦ୍ଦଳ ।୪୨।

ଏ ଅବସରେ ବାଦ୍ୟମାନ ଉଚ୍ଛୁଳ । ଅନ୍ତଃପୁରରେ ଶୁଭେ ହୁଳହୁଳ ॥
ପଢ଼ି ମଙ୍ଗଳାଷ୍ଟକ ଜଉବଷ । ବନ୍ଦୀ ବନ୍ଦନା କରନ୍ତି ସୁଯଶ । ୪୯ ।
ବେଦଜ୍ଞ ପୁରୋହିତ ସେଠାରେ । ବାକ୍ୟ ଉଚ୍ଚାର କରନ୍ତି ଉଚ୍ଚରେ ॥
ଯେ ସମୟରେ ପ୍ରିୟସଖୀମାନେ । କଲେ ପ୍ରବେଶ ବାଳାକୁ ଯତନେ ॥
ଉଭା କରାଇ ହୁଳହୁଳି ଦେଲେ । ଲୁଣ ଚଉଁରୀ ଅର୍ଥରେ ଅଛିଲେ ॥
ବାଳା ଅନ୍ତରବାସ ଅନ୍ତେ ରହି । ନେତ୍ର ପ୍ରାନ୍ତରେ କାନ୍ତକୁ ଅନାଇ ॥
ଦୃଷ୍ଟି ପଡ଼ି ଜଡ଼ କାନ୍ତ ମୁଖରେ । କଲା ଶ୍ରୀଦାର ଅତ୍ୟନ୍ତ ସୁଖରେ ॥
ବାଳା ପକାଇଣ ଲୁଣ ଚଉଁରୀ । ବନ୍ଧୁ ପ୍ରାନ୍ତେ ବାହୁଡ଼ିଲା ଗୃଭୁରୀ ।୫୦।
ଅଛ ଅଧିର ପୁରୁଷ ହୋଇଲା । ବଡ଼େ ଉଚ୍ଚାଟ ନୂଳ ପକାଇଲା । ୫୧ ।
ହେମା ପୁରକୁ ଅସନ୍ତେ ନେଉଛି । ଗଲା ନୃପସୁତ ମନ ପାଉଛି ।୫୨।
ପ୍ରାଣ ହୋଇଲା ଅଧିକ ଚଞ୍ଚଳ । କଣ୍ଠ ଦେଶରେ କଲା ଅନୁକୂଳ ॥
ସ୍ନେହ ଲୋଭରେ ରହିଲା ନ ଯାଇ । ବାଳା ପୁଣି ଆସିବା ଆଶା ପାଇ ॥
ପୁଣ ପାଣିଗ୍ରହଣକୁ ଚତୁରୀ । ବେଗେ କରାଇଲେ ନୃପ କୁମାରୀ । ୫୩ ।
ବାଳା ପ୍ରବେଶ ବିଭା-ମଣ୍ଡପରେ । ତନୁ କମ୍ପଇ ଯେ କାମ କାତରେ ॥
ଉଭା ହୋଇ ଲଜ୍ଜାରେ ଅଧୋମୁଖୀ । ପାରୁଶରେ ଅଛନ୍ତି ବେନି ସଖୀ ॥
ବେଗେ ବସାଇଲେ ବର ସମୀପେ । ଅଙ୍ଗ ଉତ୍ଫୁଲ୍ଲ ହୋଇଯେ ପୁଲକ୍ୟପେ
କର୍ମ ଆରମ୍ଭିଲେ ବେଦ ବିଧିରେ । କୁଳ ପଣ୍ଡିତେ ଆଦି ହିଜିରେ ॥
କୁଶରଜ୍ଜୁରେ ବରକନ୍ୟାଙ୍କର । କଲେ ନିବିଡ଼ ବନ୍ଧ ଦ୍ୱିଜ ବର ।୬୦।
ହୋମ ଅନ୍ତରେ ଆସି ବିପ୍ର ସ୍ୱତା । ଫେଡ଼ିଦେଇ ହଟଲା ମନ୍ତ୍ର ଚିନ୍ତା ॥
କୁଇଁ କୁମର କୁମାରୀ ଚରଣ । କାମଦେବଙ୍କୁ ବ ପଶିଲା ଶରଣ । ୬୧ ।
କନ୍ୟାଦାନ ସଙ୍କଳ୍ପେ କମ୍ପୁନାର । ବାକ୍ୟ ଉଚ୍ଚାର ଦେଲେ ବଡ଼ ଜର ॥
ବିଭାବିଧି ଏ ରୂପରେ ବଢାଇ । ବର କନ୍ୟାକୁ ଅନ୍ତଃପୁରେ ନେଇ ।୬୪
କୃତ ଖେଳାଇଲେ ମନ ତୋଷରେ । କୃତ କୁମର କୁମାରୀ ରସରେ

ଦେଖି ବରଙ୍କୁ ଅନ୍ତପୁର ନାରୀ । କାମ କୁସୁମ ଶରେ ହେଲେ ଘାରି ॥
କ୍ଷୀଣ ଭଗ୍ନୀ ହନ୍ତେ ଏତେ ଈଶ୍ୱର । ଦିଅନ୍ତେ କି ଅମ୍ଭଙ୍କୁ ଦାସୀ କରି ॥
ଲାଗୁଥାନ୍ତା ଅଙ୍ଗ ସେବାବେଳେ ତ । ଏତେକେବେହେଁ ହୁଅନ୍ତା କୃତାର୍ଥ
ବୃଦ୍ଧା ଭାଳିଲେ ଗଲା ତ ବୟସ । ନ ଦେଲେହେଁ ଯାଆନ୍ତାଇଁ ଅବଶ୍ୟ ॥
ଗୃହେଁ ତରୁଣୀ ଯେତେ ବଞ୍ଚୁଗନ୍ତି । ନିଜ ଅମ୍ଭଙ୍କୁ ସଙ୍ଗେ ନ ଦିଅନ୍ତି ॥
ଦେବୀମାନଙ୍କୁ ଯାଚନ୍ତି ଉପାଧି । ଖାଇଦାସୀ ହୋଇବା କରି ବୁଦ୍ଧି ॥
ଭୋଗ ନୋହିଲେହେଁ ଯୋଗ ରହିବ । ନେତ୍ରେ ନେତ୍ରେ ନିତି ଭେଟ ହୋଇବ
ଏଥିଅନ୍ତେ ନୃପସୁତା ସଙ୍ଗରେ । ବର ବିଜୟ ଭୋଜନ ନବରେ । ୭୩ ।
ହରଷରେ କରି ପଞ୍ଚଗରାସ । ପଞ୍ଚଶର ସନ୍ତାପ ହେଲେ ନାଶ । ୭୪ ।
ଏଥିଅନ୍ତେ ଖାଇ ବଳେ ବାହାରେ । ମହା ଆନନ୍ଦକୁ ଲଭି ମନରେ ॥
ଏଣେ ଦାସୀଗଣେ ଅତି ହରଷ । ହୋଇ ଭୋଜନାକୁ କରନ୍ତି ପ୍ରବେଶ ॥
କେତେ ସଖୀ ମଧୁଶଯ୍ୟା ପୁରକୁ । ଗଲେ ଯତ୍ନେ ମଣ୍ଡଣି କରିବାକୁ ॥
ତାହା ଶୁଣିମ ରସିକ ଅପରେ । ଭାବ ଶ୍ରୀକୃଷ୍ଣପଦ ହୃଦୟରେ । ୭୮ ।
କହେ ବାଙ୍କି ନରେଶ ଏହୁ ରସ । ହେଲା ଏକବିଂଶ ଛାନ୍ଦ ଶେଷ ।୭୯।

# ଦ୍ୱାବିଂଶ ଛାନ୍ଦ

ରାଗ—ବଙ୍ଗଳା ଶ୍ରୀ

( ବୃତ୍ତ:—ପର୍ବତ ଭେଦନ ଲୁଚେ ଏ ବାଣୀରେ )

ଏଥୁ ଅନନ୍ତରେ ରସ ଶୁଣି ପୁରସିକେ
ନରେଶ-ନନ୍ଦନ ବସି ମାନସ ଉଛୁଟେ । ୧ ।

ଦିବସ ନାଥଙ୍କୁ ଚିତ୍ତେ କରଇ ବିଗ୍ରହ
ଦିନକର ସୁରତରେ ଯୋଡ଼ି ବେନିକର । ୨ ।

ବୋଲଇ ହେ ତରଣି ! ସରଣି ବେଗେ ଚଲ
ତରୁଣୀମଣି ଅଚରେ ଭଜୁ ମୋହୋ କୋଲ । ୩ ।

ବିଲମ୍ବ ନି କର ସାଥ ପଟେମରୁ ଉହାଡ଼ି
ରଙ୍କୁ ବନ୍ଧୁ କାମୁ ମୋତେ ଦେଇ ଲୁଚ ଗଡ଼ି । ୪ ।

ସେହୁ ସମସ୍ତେ ଭରମଗିରିଙ୍କ ରବି ଦକେ
ମୁଦ୍ରିତ ହୋଇଲେ ଶ୍ରୀହିଁ ସରେ ସରସିଜେ । ୫ ।

କ୍ରମଷ କ୍ରମଷ ଅସ୍ତ ପ୍ରଶସ୍ତରେ ହୋଇ
ଶ୍ରୀହିଁ ନୃପ-ନନ୍ଦନ ଅନନ୍ଦ ମନ ହୋଇ । ୬ ।

ସେକାଳେ ସଖି ସଜନୀ ମଧୁଶଯ୍ୟାପୁର
ମଣ୍ଡନ କଲେକ କଣ ଅଭ୍ୟନ୍ତ ରୁଚିର । ୭ ।

ଗଜଦନ୍ତ ନିର୍ମିତ ପଲଙ୍କ ପକାଇଲେ
ହଂସତୁଲୀ ଉଜ୍ଜ୍ୱଳ ତଥିପରେ ବିଛାଇଲେ । ୮ ।

ଅଚ୍ଛାଦ ସୂକ୍ଷ୍ମୀନ ବସନକୁ ତଥିପରେ
ପୁଣି ବାସ ପକାଇଲେ ଉଷ୍ଣିଣ ଅତରେ । ୯ ।

ତଥିପରେ ଶେଯାଇ ସେ ଯାଈ ସୁମନସ
ରଖି ମୃଚ୍ଛଳକ ପୁଣ ଅଚ୍ଛାଦିଲେ ବାସ । ୧୦ ।

ସେହି ବିଧିରେ ସଜନୀ ଶେଯକୁ ସଜଡ଼ାଇ
ନୃପ ନନ୍ଦନଙ୍କୁ ବଳେ କହାଇଲେ ନେଇ । ୧୧ ।

ବସି ଯୁବାବର ବର ପଲଙ୍କ ଅଙ୍କରେ
ପ୍ରତିକ୍ଷଣେ ଚାହିଁ ଚନ୍ଦ୍ରକର ଗବାକ୍ଷରେ । ୧୨ ।

ସନ୍ଦେହେତ କାମ ବାମନୟନା ଅଭାବେ
ଯୁବା ଜୀବନକୁ ଅସ୍ଥ କରୁନାହିଁ ଲବେ । ୧୩ ।

ବିଳମ୍ବ ଦେବାରୁ ଲକ୍ଷ କରି ଲକ୍ଷ ଶର
ଅନୁକ୍ଷଣେ ତୀକ୍ଷଣ ସେ କରଇ ପ୍ରହାର । ୧୪ ।

ଚାହିଁ ଚନ୍ଦ୍ରକର ଯୁବାଚିତ୍ତ ଚନ୍ଦ୍ରଶିଳ
କରଗଳ ବନ୍ଧୁ କଲ ନେତ୍ରକ ତରଳ । ୧୫ ।

ସେହିଣୁ ଅନ୍ୟଆନ ନ ଦର୍ଶିଲା ନୟନରେ
ସେକା ବାଳା ଆନ ନ ଦଶିଲା ନୟନରେ । ୧୬ ।

ବିଚାରଇ କେବେବେଳେ ଆସିବ ବାନ୍ଧବୀ
ମଦନ ଦହନ ହୃଦୟରୁ ଯିବ ଲିଭ । ୧୭ ।

ଦେଖେ ଦେଖେ ମୁଖ ଯେବେ କହିବ ଚାଲକୁ
ଉଠି ପାଶେଚ୍ଛ ମୁଁ ବେଗେ ଧଇବ କରକୁ । ୧୮ ।

ବଳେ କୋଳେ ବସାଇଲେ ଅସ୍ଥ ସେ ନୋହିବ
ଛଳଙ୍କେ ନ ରହି ଅଙ୍କ-ପଲଙ୍କେ ଭହିବ । ୧୯ ।

ସେମନ ବଶ୍ରର ଯୁବା କରୁ ହୃଦୟରେ
ମଦନ କାତରେ ତନୁ ଥରେ ଥରେ ଥରେ । ୨୦ ।

ଯେତେଣେ ସର୍ବ ସଖୀ କରୁ ବାଳାକୁ ସୁବେଶ
କବରୀ ରଚନା କଲେ ଫେଡ଼ି ଗୁରୁ କେଶ । ୨୧ ।

ମୂଳେ ଖୋସି ଜମ୍ବୁନଦ କେତକ ଦଳକୁ
ପତନ୍ନ ଅର୍ପିଲା ଗର୍ଭ ବେଢ଼ାଇ ତଳକୁ । ୨୨ ।

ଅଳକ ଉପରେ ଚନ୍ଦ୍ରରଶ୍ମି ଖଞ୍ଜିଦେଲେ
କେଶ-ରାହୁ ରସନା ପ୍ରକଟ ଛବା ଭଲେ । ୨୩ ।

ଖଞ୍ଜିଲେ ଅଳକା ବେଢ଼େ ଝିଲମିଲି ମାଳ
କବା ସରଦିକେ ଜଡ଼ ଶଂଶୁଭ୍ରଙ୍ଗାବଳ । ୨୪ ।

କାମ ଜମ୍ବୁ-ସଦନ ତୋରଣା ଛବି କପେ
ମାର-ମୁକୁରେ କି ମରକତ ରେଖା ବସେ । ୨୫ ।

ଦେଲେ ଖଞ୍ଜି ହୀରକ ଚାଟକ ଶ୍ରୁଧ ପାଶେ
ଗୁରୁ କବ ଉଦ୍ଧେ କି ଚନ୍ଦ୍ରମା ବେନ ପାଶେ । ୨୬ ।

ତଥିତଳେ ପ୍ରଳକୁ ତୁଳନା ଆଉ ନାହିଁ
ଝଲକା ଯୁଗଳ ଦେଲା ପଲକ ପଳାଇ । ୨୭ ।

ମଲ୍ଲୀକଢ଼ି ଖଞ୍ଜି ନାସାଭୂଷଣକୁ ନାଶେ
ଦେଲେ ସେ ଉପମା ଅଛୁ ଜଗତେ ନ ଦିଶେ । ୨୮ ।

କଣ୍ଠେ ହେମକଣ୍ଠି ମୋତି ଗୁପସବି ଦେଲେ
ହରଷେ ହୃଦରେ ଅତି ହାର ଲମ୍ବାଇଲେ । ୨୯ ।

ଭୁଜେ ହେମ ରତନ ନିର୍ମିତ ତାଡ଼ ଯୋଡ଼ି
ମର୍କତ ଗୁଞ୍ଜର ପାରୁଶରେ ଖଞ୍ଜି ଚୂଡ଼ି । ୩୦ ।

ତତଣେ ବାଙ୍କେଣୀ ବଳା ଝୁଣ୍ଟିଆ ପ୍ରପଦେ
ସ୍ୱର ମୁନି ଧ୍ୱଂସ କରଇ ଯେସ୍ତୁ ନାଦେ । ୩୧ ।

ଗୋଳ ଘୃଷ୍ଟଚନ୍ଦନ ଚନ୍ଦ୍ରେ କେନ୍ଦୁ ବୋଳ
ବାସ ଚିହ୍ନିବାକୁ ଉଭା କରାଇଲେ ବାଳୀ । ୩୨ ।

ଉଡ଼ କନ୍ତୁ ନବଡ଼ ମାଖାଙ୍କ ବାନ୍ଧି ଆଗ
ଉକ୍ତି କେ ଅଧରେ ଲୁଷ୍ଟିଦେଲା ଶେଷଭାଗ । ୩୩ ।

ଯେ ଯହିଁ କ ଭୂଷଣ ତା ସଖୀ ଅନୁସର
କଲେ ଯଥୋଚିତ ବେଶ ନରେଶ କୁମାରୀ । ୩୪ ।

ଯେଉଁକାଳେ କେଳି ମନ୍ଦିରେ ବୀର ବକ୍ଷେ କର
ବାଳା ଆସିବାକୁ ବେନ କର୍ଣ୍ଣ ଅନ୍ତ ଡେରି । ୩୫ ।

ସେକ୍ଷଣେ ସଙ୍ଗ ସଖୀ ମେଳ ନୃପସୁତା ପାଶେ
କରଯୁଗେ ଭୂଷଣ କରାଇ ପରିହାସେ । ୩୬ ।

କେ ବୋଲିଲା ଉଠ ମଠ ନ କର ଚଞ୍ଚଳି !
କାନ୍ତ ଚାହିଁଛନ୍ତି ତୋର ପଥ ଅନୁସରି । ୩୭ ।

କଳମରୁ ଲୋଳମୃଗନୟନା ! କାହିଁ ଯେହୁ
ମନୋରଥ ପୂର୍ଣ୍ଣ ନୋହୁ ନାଶି ଯିବ ଯାହୁ । ୩୮ ।

ଯେତେକ କହୁ କର ଧରି ଉଭା କରାଇଲେ
ପଦଶ୍ରୀ ମଣାଇ କେଳିପୁରକୁ ଆଣିଲେ । ୩୯ ।

ଖେଳରେ ସ୍ତନଙ୍କୁ ମନ୍ଦ କରାଇ ଚରଣ
ଲୀଳ ବଳ ଥାଇ ତାକୁ କଲାକ ବରଣ । ୪୦ ।

ସଖୀ ପରିହାସରେ ଅଧିକ ଉତ୍ସୁକ
ହୋଇବାରୁ କାତର ଭାବକୁ ଭଜେ ଚନ୍ଦ୍ର । ୪୧ ।

ଯେରୂପରେ ସଖୀ ଆଣି ନୃପନନ୍ଦନାକୁ
ଶୁଭିଲା ବାକ୍ୟେଣୀ ବଳା କାନ୍ତ ଶ୍ରବଣକୁ । ୪୨ ।

ବସ୍ତ୍ରଭଙ୍ଗ ମଦନ ଙ୍କ ଡିଣ୍ଡିମ ବଜାଇ
ଅପ୍ରଅଷ୍ଟ ମୋହ ଉପରକୁ ଧାଡ଼ି ଦେଇ । ୪୩ ।

ପୁଣି ସେ ଚଞ୍ଚଳ ଚିତ୍ତ କ୍ଷଣେ କରି ସ୍ଥିର
ଜାଣିଲ୍ଲି ମୋ ପାଶକୁ ଆଶଇ ସୁମାବର । ୪୪ ।

ବଳେ କମ୍ପାଇଲେ ସଖୀ ଦ୍ୱାର ପାଶେ ନେଇ
ଲଜ୍ଜାବଶୁଁ କେବେହେଁ ଦେହଲୀ ନ ବଳଇ । ୪୫ ।

ବଳେ ପ୍ରିୟସଖୀ ମେଲ ହୋଇ ପେଲି ଦେଲେ
କାନ୍ତକୁ ଶୁଭଇ ଯେ ବଚନ ପ୍ରକାଶିଲେ । ୪୬ ।

ଯେତେହେଁ ଅତି ପ୍ରଚଣ୍ଡ ହେଲେ ଚଣ୍ଡକର
କେବେହେଁ ମ୍ଳାନକୁ ନାକ କରେ ପଦ୍ମିନୀର । ୪୭ ।

ତୁମ୍ଭେ ତ ରସିକବର ପରମ ଚତୁର
କୁସୁମ ଭ୍ରମର ପରି ରସ ଭୋଗ କର । ୪୮ ।

ଆମ୍ଭମାନଙ୍କ କହିବା ଅଧିକ ଅଟଇ
ଯେ ଏହାର ତାହା କଥା ତାହାକୁ ଲାଗଇ । ୪୯ ।

ଅମ୍ଭର ଅଯତ୍ନ ଥିଲା ଯେତେ ବେଳ ଯାଏ
ଗଲୁ ଯେବେ ସମର୍ପି ଦେଇଣ ତୁମ୍ଭ ପାଏ । ୫୦ ।

ଯେତେ କହି କବାଟ ଦେଇଣ ସଖୀଜନେ
ଅନ୍ତର ହୋଇଲେ ଯେ ଯାହାରେ ତୋଷ ମନେ । ୫୧ ।

ଏଥୁ ହସ୍ତରୁ ତସ ଆନ ଛନ୍ଦେ ଶୁଣ ନର
କହେ ପଦ୍ମନାଭ ବାଙ୍କି ନଗ୍ର ନୃପବର । ୫୨ ।

## ତ୍ରୟୋବିଂଶ ଛାନ୍ଦ

(ଅଷ୍ଟକୋଇଲା ବାଣୀରେ)

ଅନ୍ତର ହେଲେ ସଖୀ ଜନେ ଯହୁଁ । କାନ୍ତର ମନ ସୁଖ ହେଲା ତହୁଁ
ସତ୍ୱର ହୋଇ ପଲ୍ୟଙ୍କୁ ଉଠିଲେ । ଇତର ପ୍ରାୟେ କାମକୁ ମଣିଲେ ସେ
ଉତ୍ତର କିଛି ନ କହୁ ଯେ
ଚତୁର ବର ଯେ ଚତୁରୀ କରକୁ ଆତୁରେ ଧଇଲେ ଯାଇଁ ଯେ । ୧ ।

ଅଙ୍କରେ ଆଣି ବସାଇ ତୁରିତ । ରଙ୍କରେ କି ଧନ ହୋଇଲା ପ୍ରାପତ
ଶଶୀର କରେ କୁମୁଦ ଯେମନ୍ତ । ବନ୍ଧୁର ସଙ୍ଗମ ଲଭି ତେମନ୍ତ ସେ
ହୋଇଲେ ନୃପନନ୍ଦନ ଯେ
ଧଇଲେ ଚିବୁକ ମୋହିଲେ ତା ମନ ଚହିଲେ ଶଶୀବଦନ ଯେ । ୨ ।

ରଖ ରଖ ଅଗୋ ! ଜୀବନ ସହି ! । ଦେଖ ରମଣି ହୁଞ୍ଚେ ହେଲି ଦହି
ଶିଖରଦନ୍ତି ! ମୁଁ ଅଛି ନିରେଖି । ମୁଖର କାମଶରୁ ବେଗେ ରଖ ହେ
ମୁଖ ରସବତି ! ତୋଳ ଗୋ
ଅଖର ତୋର ମୁଁ ପାଖର ସେବକ ନଖର ମୋ ଅଙ୍ଗେ ଗୁଳ ଗୋ ॥

ଥରୁଛି ବିରହ-ଜ୍ୱରେ ମୋ ତନୁ । କରୁଛି ତହିଁ ଶୋଷ ଫୁଲଧନୁ
ଧରୁଛି କରେ ବିଶିଖ ସାୟକ । ହରୁଛି ମୋ ଧୃତି ଅଛି ଯେତେକ ଗୋ
ସରୁଛନ୍ତି ମୋହ ବଳ ଗୋ
ସରୁଛି ସଜନ ! ସରୁଛି ରଜନୀ କରୁଣା ବାରେ କୋଳ ଗୋ । ୪ ।

ଦହନ କରୁଛି ମାର ମୋ ତନୁ । ବହନ ଅଙ୍ଗେ ମେଘ ଚମ୍ପାତନୁ ।
କହ ନବୀନା କଳ ମୃଦୁବାଣୀ । କୋହ ନ କର ରସିକ ରମଣୀ ରେ
ନୂହ ମଉନ ଜୀବନ ! ଗୋ
ରହଇ ନାହିଁ ଧଇର୍ଯ୍ୟ ଧରସ୍ତନୀ ! ନୃହଇ ମୁଁ ତୋର ଭିନ୍ନ ଗୋ । ୫ ।

ଅନେକ ମୂଳ୍ୟ ଅର୍ଜିତ ସ୍ୱକୃତେ । କନକଭନୁ ! ମୁଁ ପାଉଛି ତୋତେ
ମନେ କରୁନାହିଁ ମୋ ଦୁଃଖ କଷ୍ଟ । ଯାନେ ଦୟା କଲେ ସ୍ୱକୃତ ଅଛିରେ
ଛନ୍ଦେ ହୋଇଛି ମୁଁ ଯାହା ଗୋ
ଅନେକ ପୀରତ ଅନେକ ସୁରତି ଦାନେ ଦିଅ ମୋତେ ସାହା ଗୋ ॥

ନ କର ମୁଞ୍ଜ-ସେତକର ଅଧ । ମକରକେତୁ ପ୍ରକାଶିଛି କ୍ରୋଧ
ଶୀକର ମୋ: ଅଙ୍ଗେ ଲାଗୁ ତୋହୋର । ନାକରାଜା ପଦ ହୋଉ
ମୋହର ଗୋ
ସରସ-ବାଚନା ଧନ ରେ
ବରଷ ହାସକୁ ଭରସ ମୋଠାରେ ହରଷ ହୋଇ ବଦନ ଗୋ । ୭ ।

ହେବ କାହିଁ ଯଶ ବଳମ୍ବ କଲ । ନେବ ସିନା ଜୀବ ଶମନ-ଅଳ
ଅବନ କର ଗୋ ଜୀବନ ଥାଉ । ହେ ବନଜାକ୍ଷି ! କ କହିବ ଆଉ ଗୋ
ଯାବକ-ଗୁରୁ-ଚରଣାରେ
ସେବକ ଜନରେ ନବ କାଶହାସି ! ଅବକାଶ ନାହିଁ ଶୁଣା ଗୋ । ୮ ।

କହୁଁ କହୁଁ ସ୍ନେହା ବକ୍ଷସ୍ଥ ଅଗେ । ଶୁଣୁଁ ଶୁଣୁଁ କାମ ଯୋଡ଼ିଲା ବେଗେ
ତହୁଁ ଶ୍ରୁତି ଛିଡ଼ ଅବଗାଇଶ । ଲଭିଲା ବୟୁସୀ ଉତ୍କଣ୍ଠ ବାସ ଯେ
ଦୂର କଲା ବେଗ କର ଯେ
ନୂର କଲା କାପଡ଼ର ସପଦକୁ ଧୀର ଆଲିଙ୍ଗନ କର ଯେ । ୯ ।

ମଣ୍ଡନ ମଦରେ ନୃପନନ୍ଦନ । ବଦନରେ ତାର ଦେଲା ଚୁମ୍ବନ
ସଦନ କରିଥିଲା ଲାଜ କୁଚେ । ରଦନ ଯତରେ ପଛକୁ ଘୁଞ୍ଚେ ସେ
କାଦ ନୟନ ଭାଜିଲା ଯେ
ତରଙ୍ଗ-ନୟନା କମ୍ପେ କାମେ କବା କୁରଙ୍ଗ ଫାଶେ ପଡ଼ିଲା ଯେ ।୧୦

ଭଡ଼ିଲା କାନ୍ତ ସ୍ନେହ ହୋଇ ଭୋଳ । ଛିଡ଼ିଲା ବର୍ତ୍ତୁଳ ମୁକୁତା ମାଳ
ପୀଡ଼ିଲା ଆଶ୍ଲେଷି କରେ ଉରଜ । ବୁଡ଼ିଲା ଯେତେକ ଥିଲା ଧଇର୍ଯ୍ୟ ସେ

ଅଡ଼ିଲା ମଦନ ଯେତେ ଯେ
ପୋଡ଼ିଲା ତା ମୁଖ ପଡ଼ିଲା ବିପତ୍ତି ଛାଡ଼ିଲା ଧନୁ ଭୁରତ ଯେ । ୧୧ ।

ଏଣୀନୟନା ଉରଜ ଯୁଗଳ । ପୁଣି ମର୍ଦ୍ଦନ କର ମହୀପାଳ
ଶୁଣିମାଙ୍କୁ ସମା ଜଳ ବଚନ । ଗୁଣି ଗୁଣି ମନେ ହୋଇ ଉଛନ୍ନ ଯେ
ପୁଣି ଚୁମ୍ବ ମୁଖେ ଦେଲା ଯେ
କ୍ଷଣେନେଲା ସମାପଣି କାନ୍ତମନ ଜାଣି ଚୁମ୍ବନ ଗଣ୍ଡିଲା ଯେ । ୧୨ ।

ଏସନ ଶ୍ଳେଷ ପାଇ ନୃପସୁତ । ପ୍ରସନ୍ନ କଲେ ସେ ଚଞ୍ଚଳ ଚିତ୍ତ
ରସ ନ ଲଭଲେ ବାଦ୍ୟରେ ଯନ୍ତ୍ରୁଁ । ବସନ ହରଣେ ଉସ୍ତୁକ ତନ୍ତ୍ରୁଁ ଯେ
ହୋଇଲେ କାମେ କାତର ଯେ
କହିଲେ ବନତ ମୋହିଲେ ତା ମନ ଧଇଲେ କରରେ କର ଯେ ୧୩

କଟକ ଶୋଭନା ନାବି ଦେଶରେ । ଝଟ କର କର ଦେଲେ ସଧୀରେ
ଛଟକନେତ୍ରୀ ଛନ୍ଦନ୍ତି ତା ବଳେ । ଅଟକ କାନ୍ତମନ ନେଇ ହେଲେ ଯେ
ହାଟକ ଅଙ୍ଗୀ ତା ଜାଣି ଯେ
ଝଟକର କାନ୍ତ କଟକ କରନ୍ତୁ ନଷ୍ଟ କଲା ଦୋଷ ଜାଣି ଯେ । ୧୪ ।

ସ୍ତନଯୁଗ୍ମା ବାଳା ଛାମୁରେ ପୁଣି । ବିନୟ କହନ୍ତି ରସିକମଣି
ଶରଣ ପଶୁଛି ଚରଣେ ତୋର । ଅରୁଣଅଧର ! କରୁଣା କର ରେ
ଦାରୁଣ ନିଦ୍ର ମୋଠାରେ ଗୋ
ତାରୁଣ୍ୟବୟସି ! ତୋରୁ ତନା ବାରେ ମାରୁଅଛି କାମ ମୋତେ ଗୋ ॥

ପ୍ରଲମ୍ବକେଶି ! କଳକଣ୍ଠଭାଷି ! । ବିଲମ୍ବ କଲେ ମୁଁ ଗଲେଣ୍ଟ ଭାସି
କଲମ୍ବ ପଡ଼ୁଅଛି ତଡ଼ପଡ଼ । ହେଲମ୍ବନେତ୍ରି ! ଦେଖି ତୋ ପ୍ରେମ ସଡ଼ଗୋ
ଆଲମ୍ବନ ଭୁଜ ସିନା ଗୋ
କାଲ ପର ହୋଇ ହାଲ କର କାମ ଭାଲ ମାରୁଅଛି ସିନା ଗୋ ।୧୬।

ତୋ ବିନୁ ମୋର ପରବାଣ ନାହିଁ । ଜୀବନ ଅଧିକ ସେନା ତୁ ସହି !
ସହି ତ ମୋ! ଦୁଃଖ କି ଦେଖ ଚିତ୍ତେ । ବହୁତ କାଳରୁ ବାନ୍ଧବ ! ତୋତେ ମୁଁ
କରୁଛୁ ବହୁତ ଆଶା ଗୋ
ଧରୁଛୁ ତୋ କର ଅନେକ ସୁକୃତେ ଖଞ୍ଜନ-ଗଞ୍ଜନ-ଦୃଶା ଗୋ । ୧୭ ।

ଆଦରେ ନାୟିକ ପ୍ରେମନେତ୍ରେ କହି । ପାଦରେ କର ନିବେଶିଲେ ନେଇ
ସାଦରେ ବକ୍ଷେ ନୃପ କୁମାରୀ । ହୃଦରେ ଉଦୟ ସୁଦୟା କରି ସେ
ମଦରେ ମଦନେ ରସି ଯେ
ବାଦରେ ବଦନେ ନଦରେ ଚମ୍ପିଲା ନାଦରେ ନୋହି ଅଳସୀ ଯେ ॥

ରସାଇ ପ୍ରେୟସୀ ତାଙ୍କୁ ନୃପସୁତ । ବସାଇଲେ ଆଣି ଅଙ୍କେ ତୁରିତ
ଖସାଇ ଦେଇ ଉରଜୁଁ ବସନ । ମିଶାଇ ଭୁଜେ ଉଡ଼ିଲେ ବଦନ ସେ
ଚୁଷଣ କରଜଘାତ ଯେ
ଦଶନ ଛଟେକ ତାଡ଼ଣେ ତା' କୁଚେ ଘର୍ଷଣ କଲେ ତୁରିତ ଯେ । ୧୯ ।

ବୁଡ଼ିଲା ପ୍ରେୟସୀ ତା ଧୃତି ଯେତେକ । ଉଡ଼ିଲା କାନ୍ତକୁ ହୋଇ ଉତ୍ସୁକ
ଜଡ଼ିଲା ଘନେ ବଲ୍ଲୀ ପଦ୍ମେ । ଛାଡ଼ିଲା ନାହିଁ ଅନ୍ତରେ ଟିକିଏ ସେ
ପ୍ରେୟସୀ ନୃପତି-କୁମାର ଯେ
ଫେଡ଼ିଲେ ତା' ଗୁରୁ ନବୋଢ଼ା ନୀବିକି ବୁଡ଼ି ଉତ୍ସୁକୁ ଜଳର ଯେ ।୨୦।

ଜାଣି ବେଗେ ପ୍ରୌଢ଼ା ନୃପକୁମାରୀ । ଅଟିକର ନିବାରିବା ବଗୁର
ବଳ ଗଳାଣି ସେ କାଳକୁ କଥା । ଛଳନା ରସପୂର୍ଣ୍ଣି ଘଟ ଯଥା ସେ
କାତର ହୋଇଲା ବାଳୀ ଯେ
ଅନ୍ତର ରସ ପ୍ରେମକାନ୍ତର ଭାବରେ କାନ୍ତର ମାନସ ବଳ ଯେ । ୨୧ ।

କାମ—ସଦନ ଚଳଦଳ ଶୋଭା । କାମୀ ମାନସ ପଡ଼ିହେଲା ଲୋଭା
ଚିତ୍ତ କରବର ପ୍ରମତ୍ତ ହୋଇ । ରତ ହେଲା ସେ କାହାକୁ ନ କହି ସେ

ଉଭ ପରେ ଜାନୁ ଯୋଗ ଯେ
ପୁରୁଷ ଉତ୍ତମ କରି କାମଶରେ ରତିରସ କଲେ ଭୋଗ ଯେ । ୨୨ ॥

ବାଜିଲା ବାଜେଣୀ ବଳା ସେକାଳେ । ଭାଜିଲା ଲଜ୍ଜା ନ ରହୁ ଚପଳେ
ସାଜିଲା ନୂତନ କେଳି କଳାପ । ଭାଜିଲା ଚିତ୍ତରେ ସୁଖ ଅମାପ ସେ
ବୁଜିଲା ନୟନ ବାଳା ଯେ
ତର୍ଜିଲା କାମକୁ ବର୍ଜିଲା ସୁଖକୁ ସର୍ଜିଲା ନାନ୍ଦୃକ ଲୀଳା ଯେ । ୨୩ ॥

ଅଧୀର ହୋଇ ପୁଣ ନୃପସୁତ । ବଧୂର ଅଧର ଚୁମ୍ବି ତୁରିତ
ମଧୁରସ ଆସ୍ୱାଦନ କରନ୍ତେ । ସଧୀର ଚୁମ୍ବନ ଦେଲା ସେକାନ୍ତେ ଯେ
କି ଧୀର ରହିବ କେଶ ଯେ
ଅଧୀର ନେବୀଭ କହେ କାନ୍ତ ଭାବକଥିବ ମୁଁ କଣାଦାସ ଗୋ । ୨୪ ॥

ପରସନ୍ନ କନ୍ୟା ବୋଇଲା ସନ୍ତୋଷେ । ପରଶରେ କାହିଁ ବିବେକ ପାଶେ
ପରଶମଣି ତୁ ମୋ ହୃଦେ ହୁଅ । ପରଶକର ପରିରମ୍ଭ ହୋଅ ରେ
ନ ରସ ଆଉ କାହିଁରେ ଗୋ
ବରଷପର ଲବକ ହୋଇଅଛି ବରଷ ଦାସ ମୋ ପରେ ଗୋ । ୨୫ ॥

କଳ ବଚନ କହୁ ତାକୁ ଏତେ । ଗଳପରି ରମ୍ଭ ଛଳେ ଭୂପତେ
କୋଳ କରିତାକୁ ଉଠେ ରସିକ । ଲୋଳ-ନୟନାଙ୍କ କଲେ ଉତ୍ସୁକ ସେ
କଳସସ୍ତନା ଚଉଷ୍ଠି ଯେ
ଅଳସରେ ଅଙ୍ଗ ଢାଳି କରି ମଣ୍ଡିପାଳ ମାନସକୁ ହରି ଯେ । ୨୬ ॥

କେଳିରସେ ପୁଣି ନୃପ କୁମାର । ଶୁଳ ଦେଲେ ଚନ୍ଦ୍ରସ୍ନାନ ତାହାର
ଝଳିଗଲା ଦମ୍ଭ ଥିଲା ତା ଯେତେ । ବଳିଲା ଏଣୁ ସୁରତେ ଉଦ୍ଧତେ ସେ
ଗୃଳିଲା କଟାକ୍ଷ ରଙ୍ଗେ ଯେ
ପାଳିଲା କାମକୁ ବଳିଲା କାହିଁ ସେ ଗଳିଲା ପୁଲକ ଅଙ୍ଗେ ଯେ । ୨୭ ॥

ଲଭି ଶେଷେ ଯୁବା ଅଶଙ୍କତରେ । ହତବଳେ ରହି ବାଳା ଛତରେ
ଅରୁଣାଧରୀ ସ୍ନେହରେ ସେ କାଳେ । କରୁଣା କରି ବସାଇଲେ କୋଳେ ସେ
ମୁଞ୍ଚିଲେ ସକଳ ଦୁଃଖ ଯେ
ସଞ୍ଚିଲେ ମୁଖକୁ ବଞ୍ଚିଲେ ପଣନ୍ତେ ଧଞ୍ଚିଲେ ପଞ୍ଚ ବିଶିଖ ଯେ । ୨୮ ।

ଭୁଞ୍ଜିଲେ ରଜନୀ ଏହି କାଳରେ । ରଞ୍ଜିଲେ କୁକ୍କୁଟ ପ୍ରିୟା ମେଳରେ
ଫାଟିଲେ ତମ ଉଦୟେ ଦନେଶ । ଫୁଟିଲେ ଜଳେ କମଳେ ସାରସ ସେ
ମନ୍ଦ ପବନ ବହିଲେ ଯେ
ସାତ୍ତ୍ୱିକ ଅପାଙ୍ଗ ଦେଖି ଏ ସମୟେ କାମୁକ କୋପିଁ ଉଠିଲେ ଯେ ।୨୯।

ସ୍ନେହରେ କେହି କାହାକୁ ନ ଛାଡ଼ି । ଦେହରେ ଦେହ ଯାଉଅଛି ଜଡ଼ି
ସଖୀବଚନ ଶୁଭିଲେଣି ସ୍ୱେଣେ । ରଖି ନ ଦେଲେ ଲଜ୍ଜା ସ୍ୱେଣୁ ଷଣେ ସେ
ରସିକ ଚୁମ୍ବନ ଦେଇ ଯେ
କହିଲେ ବିନୟ ବଚନ ବାଳାକୁ ଚହିଲେ ମେଲେଣି ହୋଇ ଯେ । ୩୦ ।

ପ୍ରବେଶ ହେମା ସଖୀଙ୍କ ପାଶରେ । ଅବଶ ହୋଇ ବସିଲେ ସତ୍ତ୍ୱରେ
ନ କଲେ ପରିହାସ କଲେ କେହି । ଦେଲେ ବନ୍ଦନ ନୀଡକ ବଢ଼ାଇ ସେ
ବର ବିଜୟ ବାହାରେ ଯେ
ହର ହୁଦେ ଭାବ ଶେଷ କଲେ ଛନ୍ଦ ବାଙ୍କି ନୃପତି ରସରେ ଯେ ।୩୧।



# ଚତୁର୍ବିଂଶ ଛାନ୍ଦ

ରଜନୀ ଶେଷେ ନରପତି ନନ୍ଦନ
ଡକାଇ ମନ୍ତ୍ରି-ସୁତଙ୍କୁ
କହିଲେ ବନ୍ଦନ ସୈନ୍ୟ ସଜ କର
ଯିବା ଅମ୍ଭ ନଗରକୁ । ୧ ।

ପାଇ ଏ ଆଦେଶ ତାଙ୍କ ତୁରିତ୍
ସଜ୍ଜିତ ନାଗରୀ କଲେ
ଶୁଣି ସର୍ବଜନେ ପୁଅର ସହିତେ
ଛଆର ହୋଇ ଆଇଲେ । ୨ ।

କନକ ଦୋଳା ସଜ କରି ନୃପ
ପ୍ରେମଭେ ହୋଇ ବନ୍ଦନ
କନ୍ୟାକୁ ବସେ କରାଇ ସ୍ୱପୁରକୁ
ସଂଯୋଗେ କଲେ ଗମନ । ୩ ।

ସରବ-ସୁତ ସମସ୍ତ ଯଉତୁକ—
ଦ୍ରବ୍ୟ ସଙ୍ଗତେ ଘେନାଇ
ଅବୋଉ ପଞ୍ଚପଞ୍ଚଆରେ ରହିଣ
ସୈନ୍ୟ ସମ୍ଭାରେ ଚଳାଇ । ୪ ।

ପଥରେ ଚତୁର୍ଥୀ ସପ୍ତମଙ୍ଗଳା
ଯାଉଁ ଯାଉ ହେଲା ଶେଷ
ଦଶ ଦିବସରେ ଯାଇ ନିଜ ପୁରେ
ସମସ୍ତେ ହେଲେ ପ୍ରବେଶ । ୫ ।

ବନ୍ଦାପନା ବିଧି ବଢ଼ାଇ ସେଠାରେ
ଅବରୋଧରେ ମିଳଲେ
ସମସ୍ତ ଜନଙ୍କୁ ମେଲାଣି ଦେଇଣ
ଦମ୍ପତି ରସେ ରହିଲେ । ୫ ।

ତହୁଁ ଶୁଭଦିନ ଅନ୍ତେ ନୃପସୁତ
ଲଭିଲେ ତାତ-ପଦବୀ
ଅନୁରୂପେ ସେ ତହିଁର ଶଶିରେଖା
କୁହାଇଲେ ମହାଦେବୀ । ୭ ।

ଦିନୁ ଦିନୁ ସିତପକ୍ଷ ଚନ୍ଦ୍ରପ୍ରାୟେ
ବଢ଼ିଲା ଦୁହିଙ୍କ ପ୍ରୀତି
ଭୋଜନ ଶୟନ ଭିନ୍ନ ନୋହି ବସେ
ଯେଣିକ ସ୍ଥାନେ ନିତି ନିତି । ୮ ।

ଅମର ପଦ ଲଭିଲା ପ୍ରାୟେ ନୃପ—
କୁମାର ସନ୍ତୋଷ ମନ
ଅଙ୍ଗେ ଅମନ୍ଦ ସୁଗନ୍ଧ ଭରୁଁ ଦୂର
କଲା କର୍ପୂର ଚନ୍ଦନ । ୯ ।

ଅଧର ମଧୁ ଅମୃତ ପାନ କରି
ସୁଧାରୁ ଆଦର ତେଜି
ମୋକ୍ଷ ତା ନାମ ମୋକ୍ଷକୁ ମନେ କରି
ରହିଲା କର୍ଦ୍ଦିରେ ମଜି । ୧୦ ।

ବରତ ବରତମାନ ଯେହ୍ନେ ତନୁ
ଅନ୍ତର ନୋହିବ ଲେଶେ

ସୁରତେ ସୁର ଚେତନ କୋଷ୍ଠ ପୁଣି
ଚତୁର ହୋଇ ଅଭ୍ୟାସେ । ୧୧ ।

ଶରଦେ ଭୂଜ ଶୃଙ୍ଗାରେ ବଢ଼ନ୍ତ
ଜାଣି ଚନ୍ଦ୍ରକରେ ସୁଖୀ
ସଦନ ଦ୍ୱିଦେ ଦୁହିଙ୍କ ହୃଦ କର
ମଦନ ପଦ ନ ରକ୍ଷି । ୧୨ ।

ହିମ ଜଣାରେ ଜଣାରେ ଅନାଦର
କର କରନ୍ତି ଶୟନ
କ୍ଷଣଦା ବୃଦ୍ଧିକି କ୍ଷଣେ ନ ଲେଖନ୍ତି
କଷାହୁଁ ଜୋଡ଼େ ନୟନ । ୧୩ ।

ଶିଶିର ପ୍ରବେଶେ ମିଶି ବେନି ଜନେ
ଗାଢ଼ ଆଲିଙ୍ଗନେ ରସି
ଅଗୁରୁ ଧୂମେ ଧୂପିତ କରି କେଶ
ପ୍ରିୟା ପ୍ରିୟ ମନ ତୋଷି । ୧୪ ।

ବସନ୍ତେ ବସନ୍ତ ବସନେ ଅଧିକ
ବେନି ଜନେ ଅନୁରାଗ
କୁସୁମ ବନେ ବଢ଼ନ୍ତି ପ୍ରକାଶ—
କନ୍ଦର୍ପ ଦର୍ପରେ ରଙ୍ଗ । ୧୫ ।

ଗ୍ରୀଷ୍ମେ ଫୁଟିବା ଦେଖି ଉଲ୍ଲସିତ,
ବୈଶାଖେ ଜଳେ କେଳି
ଅତର ଚନ୍ଦନ ପନୀର ମିଶାଇ
ହୋଉଥାନ୍ତି ବୋଳାବୋଳି । ୧୬

ନୀରଦ କାଳରେ ଦ୍ୱିରଦଗଣ୍ଡଙ୍କ
ଯେନ୍ନ ଜଗଣ୍ଡ ସହାର
ଜାଣି ଦିବସରେ ରସରେ ଦିନଙ୍କୁ
ହରଇ ଚମ୍ପକବର । ୧୭ ।

ଛଡ ନ ପାରନ୍ତି ବୃଦ୍ଧ ପ୍ରେମ-ଜାଲେ
ଯେଣେହେଁ ବୁଡନ୍ତେ ଦୁହେଁଙ୍କି
ପ୍ରୀତି-ଧନ ଯେନ୍ନ ଭାବରେ ବାଳାଙ୍କୁ
ପୁରୁଷ ହୋଇଲା ବନ୍ଧ । ୧୮ ।

ଜୀବନ ବନ୍ଧୁଙ୍କୁ ଛାଡ଼ ଯିବ ନାହିଁ
ଜୀବନେ ଯୁବା ବଦେଶ
ମନ୍ତ୍ରର ବଶ ପଶ୍ୱେ ବେନ୍ନ ଜନେ
ଅନ୍ତ୍ର ନୋହିଲେ ଲେଶ । ୧୯ ।

କେତେବେଳେ ଗୀତ ଗାଯ୍ନେ ରସନ୍ତି
ପ୍ରେକାନ୍ତ ସ୍ଥାନରେ ବସି
ଭାବେ ପରହାସ ରଚନାରେ ମାନ—
ନଯ୍ନା ଅଙ୍ଗରେ ମିଳି । ୨୦ ।

କେତେବେଳେ ପଂଶା ଶକ୍ଳଠା ଗଞ୍ଜପା
ନ୍ୟାନ୍ତବଲ ଖେଳବାରେ
ସ୍ୱରତ ହ୍ମଡକୁ ଭାଙ୍ଗି ପାହୁଡ଼କୁ
ଦେଖାଏ ବାମା ସତ୍ୱରେ । ୨୧ ।

ଶୁଣି ରସିକ ଇଙ୍ଗିତକୁ ରଚନ୍ତେ
ସଙ୍ଗୀତପଠନୀ ବାଳା

ଖେଳ ଦୂର କର କୋଳ କର ତାଙ୍କୁ
କରୁଥାଉ ନାନା ଲୀଳା । ୨୨ ।
କୁସୁମବନେ କୁସୁମ ତୋଳବାରେ
ଧନେ ଧନେ ଉଛ କର
ଅଙ୍ଗରୁ ବାସ ପ୍ରବାସୀ ନ ଛେକଇ
କବଡ଼ ଲକ୍ଷ୍ମୀ ଅବୋଉ । ୨୩ ।
ନୃପନନ୍ଦନ ଭାବଇ କେହ୍ନେ ସ୍ନେହ୍ନା
ସଙ୍କୋଚ ଛଡ଼ାଇ ଦେବ
ଧନେ ଗ୍ରୀଷମେ ସରୋବରେ ନଣ୍ଡିବେ
ଜଳବାଦ୍ୟାଉ ରଞ୍ଜିବ । ୨୪ ।
ସ୍ନେହମନ୍ତ୍ରେ ଭାବ ପ୍ରିୟାଙ୍କୁ ସଙ୍ଗେ ଘେନ
ଦନ ଶେଷେ ଯୁବାବର
କୁସୁମ ବନ ଦେଖିବା କଉତୁକେ
ପ୍ରବେଶ ସରସୀତୀର । ୨୫ ।
କବେ କର ଧର ସଲୀଳ ବଣରେ
ସଲୀଳରେ ଯାଇ ପଶି
ପକାଇ ତହିଁ ତରୁଣୀ ଥାଲଙ୍ଗନେ
ବେଳ ଜନେ ରସେ ରସି । ୨୬ ।
ଦୁହିଙ୍କ ମନ ଦୁହିଙ୍କି ବଳବାରୁ
ବସନ ଦରଲ୍ଲା ପୁଂସ
ପୀରଦ୍ଧ ବଢ଼ାଇ ସ୍ମରଦ୍ଧ ରଚଲ୍ଲ
ବେଳ ଜନେ ହେଲେ ତୋଷ । ୨୭ ।

କେସର ପିନ୍ଧି ପ୍ରସନ୍ନମୁଖୀ ତହୁଁ
ଭୃଙ୍ଗ ହେଲା ଅହି କୂଳେ
ପୁଣ ତ ରସିକ ପଣନ୍ତ ଓଠାଇ
ବସାଇଲା ଅଣ୍ଟୋ କୋଳେ । ୨୮

ମଦନ ଭସ୍ମକୁ ଯେ ଦନ୍ ଢେଙ୍କିଲା
ବଦନରେ ଚୁମ୍ବ ଦେଇ
ସୁବାସ ପିନ୍ଧି ପୁଟରେ ଅସି ମିଳଲେ
ପୀରତି ରସ ବଢ଼ାଇ । ୨୯ ।

ପରାଣ ପ୍ରେମୀକୁ ନ ଛାଡ଼ିଲା ପର
ନ ଛାଡ଼ଇ ତାକୁ ଯୁବା
ମନକୁ ଅନାଇ ରଜନୀ ଦିବସେ
ବସେ କରଥାଇ ସେବା । ୩୦ ।

ଅନୁଗତ ହୋଇ ଭାବ ଯୁବା ପ୍ରେମ
ଅନୁସରଇ ନିରତେ
ପ୍ରେମନ୍ତେ ରସିକ ଆନ ନ ବାଞ୍ଛିତ
ମାନ ନ କରବ ମୋତେ । ୩୧ ।

ଦୁର୍ଦ୍ଦଶା ଯୋଗେ ଏ ଦଇବ ବଶରୁ
ହନେ ପ୍ରେମନ୍ତ ହୋଇଲା
ଅନାଗେ ରସିକବର ପାରୁଶରେ
ରସିକା ଆସି ମିଳିଲା । ୩୨ ।

ଜୀବନ ବୋଲି ନିରବଧି ଡ଼ାକଇ
ସେ ହନ ବୋଇଲା ଧନ

ମୋତେ ଛାଡ଼ି ଅବା ଆନକୁ ଡ଼ାକିଲେ
ବୋଲି କଲି ମନେ ମାନ । ୩୩

ସବୁକେ କୋପନା ସାରସ—ଲପନା
ସ୍ନେହ କଳନା ନ କରୁ
ରଦନ କର୍ଣ୍ଣର ମଦନ-ମୁକୁର—
ବଦନକୁ ଅଧ କରୁ । ୩୪ ।

ବସିଲି ବାମେ ରସିଲି ଅଧିକ
ଭୁଷିଲି ପ୍ରସନ୍ନ ହୋଇ
ଦୁଃଖରେ ମଣ୍ଡିବ ନଖରେ ଚିରଲି
ପ୍ରଖରେ ଶ୍ୱାସକୁ ବହି । ୩୫

ଗଣ୍ଡରେ କରକୁ ଗଣ୍ଡରେ ନବେଣୀ
ନେତ୍ର ନୀର ଜାତ କରୁ
କଣ୍ଠ କୁଣ୍ଠିତ ଭାବକୁ ଚକିବାକୁ
କ୍ରୋଧେ ଦଇବ ସୁମରୁ । ୩୬ ।

ଦେଖି ରସିକ ବସ୍ତୁରଲି ଏ କାଳେ
ଏ ଦଶା ପଡ଼ିଲା ମୋତେ
ଏମନ୍ତ ଭାବ ବନସ୍ତ କହିବାକୁ
ମିଳିଲା ବାଳା ସୁରତେ । ୩୭ ।

କର ଯୋଡ଼ି ଅଗେ କରକଦମ୍ବୀକ
କରଭ ଦହନା ଅଛ
ରସିକେ ଆର ଛାନ୍ଦରେ ତା ଶୁଣିବ
ଭଣିଲେ ବାଙ୍କି ନୃପତି ୩୮ ।

---

# ପଞ୍ଚବିଂଶ ଛାନ୍ଦ

ରାଗ—ବରାଡ଼ି

କାମିନୀ-ରତନ ! ମୋରେ          କି ଦୋଷ ଧର ଚିତ୍ତରେ
ଅକାରଣେ କରିଅଛୁ ମାନ
କଲି ଯେବେ ଅପରାଧ          କଲୁ ତ ବଦନ ଅଧ
କାମେ ନାଶି କରିଁ ପ୍ରୟୋଜନରେ
ପ୍ରାଣେଶ୍ୱରି !
କାଳକ ସେବନ୍ତି ପାଦେ ତୋର
କସ୍ୱିତ କଥାରେ କରୁ ଯେତେ ଦୂରରେ ।୧।

ଖଞ୍ଜନ-ଗଞ୍ଜନ-ନେତ୍ରି !          ଅଞ୍ଜନ କେଶି ! ସ୍ୱପାଣି !
ଗଞ୍ଜନ କରୁଛି କାମ ମୋତେ
କ୍ଷୀଣ-ଉଦରି ! ତୋ ଆଉଁ          ଜାହାକୁ କହିବି ଅଉ
ଜର୍ଗ ଜାହାଁକ କଲୁ ମୋତେ ରେ
ପ୍ରାଣେଶ୍ୱରୀ !
ଖଳବଚନକୁ ଚିତ୍ତେ ଧର
କ୍ଷଣକରେ ନାଶ କରୁଛ ନାଗରୀ ରେ ।୨।

ରୂପରେ ପୀବର ବର          ତୋ ସଙ୍ଗେ ରଙ୍ଗେ ବନ୍ଧର
ଗୁଣମଣି ! ନେଲୁ ଜଣି ଦିନ
ଶରବ ସରଳ ଯେବେ          ମାର ମାରୁଅଛି ଜୀବେ
ଧନ ! ମୋତେ କଲୁ ଯେବେ ଭିନ୍ନ ରେ
ପ୍ରାଣେଶ୍ୱରୀ !
ତନ୍ତ୍ର ଜୀବ ରହିବ କି ଆଉ
ଗୋରି ! ହେଲୁଟି ଜରେଖ ତୋହୋ ଥାଉଁ କରେ

ଯେଜନ ଥିଲି ମୋତେ ସହି ଯନ ରଞ୍ଜନ ଦେଇ
ଯନ୍ତ୍ରଣା- ଉରଜା ! କର ଦାସ
ଯାଣି ହୋଉଅଛୁ ସ୍ନେହେ ଯେନୁ ନାହୁଁ ଦୁଃଖ ଲେବେ
ବୃଥା କଷ୍ଟ କରୁଅଛୁ ରୋଷରେ
ପ୍ରାଣେଶ୍ୱରି !
ଯନ ବନ୍ଧ୍ୟ ଗୃହକ ଲ ଅନେ
ଯଉଏ ଜୀଇବ ବଶ୍ୟ ରିହୁ ମନେ ରେ । ୪ ।
ରସ୍ତୁ ଭ ଭୁ ଏଡ଼େ ବୋଲି ଜାଣି ନ ଥିଲି ଛଇଳ !
ନବୀନବୟସି ! ନୃପକେମା !
ନଜ ପରିଶ୍ରମ ଠାରେ ନରଣ କ ପ୍ରଭୁ କରେ
ଦୋଷ ଥିଲେ ତ ଉଚିତ କ୍ଷମା ରେ
ପ୍ରାଣେଶ୍ୱରି !
ନାରଦେ ଯେ ଥାଇ ଅନ୍ତଃପୁର
ନଳନାକ୍ଷି ! ତାକୁ ଅନ୍ତର ନ କରି ରେ । ୫ ।
ଚଞ୍ଚଳନେତ୍ରି ! ତୋ ପଞ୍ଚାଳ କରେ ଅତନୁ
ଅଞ୍ଚଳ ଯୋଡ଼ାଇ ବାରେ ରଖ
ଚତୁର ! ନବ ନାଗରୀ ଚତୁରେ କ କ ବଶ୍ୟ ରେ
ତଳକୁ କରନ୍ତୁ ଶଶିମୁଖରେ
ପ୍ରାଣେଶ୍ୱରି !
ଚରଣ-ସେବକ ତୋର ମୁହିଁ
ଚମ୍ପକାଙ୍ଗୁଳୀ ! ଦାସକୁ ନ ଦହରେ । ୬ ।
ଛନ୍ଦଣ ବୟସି ! ମୋରେ ତୋ ଅଙ୍ଗେ ମାର ମାରେ
ଗତକାଳ ରୋଷ ବନ୍ଧ ମନେ

ଛଡ଼ିବୁ କି ସତେ ମୋତେ          ନ ଚାହିଁ ଛ ନେହାଅନ୍ତେ
ତୋ ସ୍ନେହ ସ୍ୱାଦ ନ ଥିଲା ତ ଦିନେ ରେ
ପ୍ରାଣେଶ୍ୱର !
ଛାତ ଫାଟିଯିବ ସିନା ମୋର
ଛଟକାଷି ! ଜାଣି ନୈରାଶ୍ୟ ଦୋହରରେ । ୭ ।

ଯାହା ବହ୍ନିରେ ଯାହାର          ଗଢ଼ ନାହିଁ ଗ୍ରାମାବର !
ତାକୁ କି ସେ ସ୍ନେହେଦୂର କରେ
ଜାଣିମାରେ ଥିଲେ ଦୋଷ          ନ କର ଦାସକୁ ନାଶ
ବିବେକ ତୁ ଶତ୍ରୁର ହୃଦରେ ରେ
ପ୍ରାଣେଶ୍ୱର !
ଜୀବନରେ ପ୍ରଭୁ ମୋର ତୁହି
ଯେ ଇଚ୍ଛା ତା କର ଜଣାଉଛି ସହରେ । ୮ ।

ଝଳ କନକବରନା !          ଝମ୍ପନେଶି ! ସୁରଦନା !
ଝସ କେତୁ—ସନ୍ତାପ ନାଶିନ !
ଝର ନୟନରୁ ନୀର          ଉରଜ ଭିଜିଲା ତୋର
ଝରଣରେ ନ ଥିବ ଅବନରେ
ପ୍ରାଣେଶ୍ୱରି !
ଝଗଡ଼ା କଥାରେ କି କାରଣ
ଝୀନବସନା ! ମୁଁ ତୋହର ଶରଣରେ । ୯ ।

ନ ଛୁଇଁ କାହିଁକି ମୋତେ          ନାଗଗ୍ରାମଣୀ ସ୍ୱଚ୍ଛନ୍ଦେ
ନ ବସାଇ ହୃଦପ୍ୟା କାହିଁକି
ନ ଦେଖିଲେ ମୁଁ କି ତୋତେ          ଛଡ଼ାବ ଦେନଛୁ ସ୍ନେହେ

ବାଳ କାଳୁ ହୋଇଅଛୁ ହଜରେ
ପ୍ରାଣେଶ୍ୱର !
ନାହିଁ ବ ମନରେ ଯେବେ ହୋର
ନଖାନା ମୁଁ ସିନା ତୋହ ପରଶ୍ଚରଣେ । ୧୦ ।

ଝଙ୍କଧର ସେବା କର          ଝାଣ୍—ଜ୍ୱରଜା ! ତୋହଙ୍କ
ପୀରଣ୍ଡ କ ଲଭଅଛୁ ମୁହିଁ
ଝକଏ ଯେବେ ସେନେହ          ନ ପାଇଣ ମୋର ଦେହ
କାମାନଳେ ହୋଉଅଛି ଦହରେ
ପ୍ରାଣେଶ୍ୱର !
ଝାଣ ମୋର ଭାଙ୍ଗୁଅଛୁ ମାର
ଝଳନ୍ତ ଜୀବକୁ ବାରେ ରଷା କରରେ । ୧୧ ।

ଠିଆ ହୋଇ ତୋ ଛମୁରେ          ଠିକେ କହୁଅଛ ବାରେ
ଠଜ୍ୱାଇ ଅଛୁ କରି ଦୋଷ
ଠୂଳେ ନ ବୁଝି ଯେମାନ          କରଛୁ କାହିଁକ ମାନ
ରସିକା ମୁଁ ତୋର କଣାଦାସରେ
ପ୍ରାଣେଶ୍ୱର !
ଠକାର—ଅକାର—ଶଶିମୁଖି !
ଠାକୁରାଣୀ ହୋଇ ହୋଉ ଛ କେ ଦୁଃଖୀରେ । ୧୨ ।

ଡୋଲା ପ୍ରଚ୍ଛମା ଉତ୍ତମା !          ରାମା ! ଭୁ ମୋ ପ୍ରେମଧାମା
କ୍ଷମାକର ଥିଲେ ଅପରାଧ
ଡ଼ମ୍ବରୁମଧ୍ୟମା ! ବୋଧ          ନ ଘେନ ଯା କରୁ କ୍ରୋଧ
ଶଯ କଲୁ ଅନଙ୍ଗଭ ବଧ ରେ
ପ୍ରାଣେଶ୍ୱର !

ତନ୍ଦ୍ରା ଯେଉଁକାବେଳେକେ ତ କଲୁ
ଓଙ୍ଗର ମଦନ ହାତେ ମୋତେ ଦେଲୁରେ । ୧୩ ।

ଚାହୁଁଛୁ ଯେ ବସି ଅମ୍ଭ ନୟନୁ ଉରଜ—ଶମ୍ଭୁ—
ପରେ କମ୍ବୁ କଣ୍ଠି ! ଯେଉଁଭ କନ୍ଦ
ଉକ ଘିବନ୍ତୁ ପରାଣ ଭମ ନୂହଇ ଯେଉଁ ଜାଣ
ଅଛି ହଁ ଦାରୁଣ ଆଜ ନୂହରେ
ପ୍ରାଣେଶ୍ୱର !
ଚାଲେ ଟେହିଁ ନରାଶ କରବୁ କ
ଚାଳ କଣ୍ଠରେ ନ ଗୃହ୍ଣୁ ତ ଯେଉଁଭ ରେ । ୧୪ ।

ଅଣିମାଦ ସୁଖ ଯେତେ ଗଣଇ ନାହିଁ ମୁଁ ଯେଉଁତେ—
କହ କହିଗଲ ! ଲଭ ତୋତେ
ଏଣୀ ନୟନା ! ଛ ଜାଣୁ ଅବଧାନଙ୍କୁ ନ ଆଣୁ
ଜଣାଇଲ ବନସ୍ତରେ ଯେଉଁତେ ରେ
ପ୍ରାଣେଶ୍ୱର !
ଏଣୋଭ ନ କର ଏତେ ସରି
ଅଣୁକହିଁ ମନୁଅଛୁ ଯୁଗ ପଡିରେ । ୧୫ ।

ତାରଣ ନ କଲେ ଭୁହ, ଶରଣ ଭ ଅନେ ନାହିଁ
ଚରଣ—ଅଧୀନ ହେଲ୍ଲ ନାଶ
ଭୁ ପର ଦାସ—ବତ୍ସଳା ହେଲଙ୍କୁ ତ କରୁ ହେଲା
ବାଳାମଣି ଲଭରୁ କ ଯଣରେ
ପ୍ରାଣେଶ୍ୱର !
ଦେଜ ବନ୍ଧୁ ! ମୋହଠାରୁ ଦୁଃଖ
ତରୁଣୀମଣି ! ମୁଁ ତୋର ସିନା ରଖରେ । ୧୬ ।

ଥିଲା ନାହିଁ ମନେ ମୋର    କରିବୁ ବୋଲି ଅନ୍ତର
ଏବେ ଅନୁଭବେ ଗଲା ଜଣା
ଥାଇ ଛଇ ପଥ ପାଶେ    ଚୋଦ୍ଧ ଅନୁରାଗ ବଶେ
କହ କାହିଁପାଇଁ କରୁ ଊଣାରେ
ପ୍ରାଣେଶ୍ୱର !
ଥିବ ମାତ୍ର ପୀରତି କ କଥା
ଅରେଦ୍ୱୈତ ଯେନ୍ତ୍ରନାଙ୍କୁ ଏମୋ ବ୍ୟଥାରେ । ୧୭ ।

ହନେ ତ ଚୋର ସ୍ୱେ ମାନ    ଦେଖି ନ ଥିଲରେ ଧନ
ଦଶାକୁ ହୋଉଛି ସବୁ ଆସି
ଦ୍ୱିରଦ ବରଗମନା !    ହେବୁ ଯେବେ ଭୁ ବମନା
କାମ-ଜଳେ ଯିବ ସେନା ଭାସିରେ
ପ୍ରାଣେଶ୍ୱର !
ଦରପକ ଦରପ ନ ରଖ
ଦର୍ପଣ-ବଦନା ! ହେଲଣି ନରେଖରେ । ୧୮ ।

ଧର ତୋ କର ଚରଣ    ପଶିଥିଲି ମୁଁ ଶରଣ
ମଦନ ବାଣଙ୍କୁ ଉଦ୍ଧ କର
ଧରଣୀମଣ୍ଡନା ଭୁହୁ    ସ୍ୱଦୟା ମନରେ ବହୁ
ରଖିଥିଲୁ ଅଙ୍ଗୀକାର କରି ରେ
ପ୍ରାଣେଶ୍ୱର !
ଧାତା ଏବେ ବାମ ହେଲା ମୋତେ
ଧୀରାମଣି ! ଯାହା ଲୁଷାଇଲା ତୋତେ ରେ । ୧୯ ।

ନ କଲେ ଭୁ ଅଙ୍ଗୀକାର    ନାଶ ଯିବ ପରସ୍ପର
ନୁହଇ କଏ ବେଦନା ତୋର

ନିଷ୍ଠୁର ହେଲୁ ତୁ ଏତେ          ନ ଯେନୁ କହିଲେ ଯେତେ
ପ୍ରଭୁ ପଣକୁ ଏ ଅସୁନ୍ଦର ରେ
ପ୍ରାଣେଶ୍ୱର !
ନାହିଁ ପ୍ରତିକାର ମୋ ବାହାରେ
ନାଶିବଟି ପାତକର ଯେଉଁ, ବାରେ ରେ । ୨୦ ।

ପରମ ଦୟାଳୁ ହୋଇ          ପରଜନ୍ମରେ ଦୟା ନାହିଁ
ପରମଦା ! ନନା ଯେ କାହାକୁ
ସ୍ତ୍ରୀଭକତ କଲେ ନାଶ          ହେବ କାହାକୁ ଅଯଶ
ପ୍ରାଣବନ୍ଧୁ ! ବଗ୍ର ମନକୁ ରେ
ପ୍ରାଣେଶ୍ୱର !
ପର ପର ହୋଉଛ ଦାରୁଣ
ପଙ୍କଜନୟନା ! ମୁଁ ତୋର ଶରଣ ରେ । ୨୧ ।

ଫେଡ଼ କହୁଅଛୁ ସହି          ଫରୁଣା ନୋହିଲେ ଭୁଞ୍ଜ
ପରାଣ ପିଣ୍ଡରେ ନ ରହିବ
ଫଳକ-ନିତମ୍ବା ଯେନ          ଫୁଟିଯିବ ମୋ ନୟନ
ଯେବେ ତୋ ବଦନ ନ ଦେଖିବ ରେ
ପ୍ରାଣେଶ୍ୱର !
ଫଳେ ରମ୍ଭା ତରୁବର ପର
ଫରୁଣାକୁ ତେଜ ବସିଲୁ ତ ଗୋର ରେ । ୨୨ ।

ବାନ୍ଧବ ! ତୋ ଅଙ୍ଗୀକାରେ          ବରଷି ଥିଲି ସଂସାରେ
ଷାଣାଭ୍ରାନ୍ତି ଏବେ ପରକଲୁ
ବସନ ପର ତନ୍ତ୍ରରେ          ଜଡ଼ାଇ ଥାଉ ସ୍ନେହରେ
ବୋଲକୁ ଏ ଦଶା ଅଣି ଦେଲୁ ରେ

ପ୍ରାଣେଶ୍ୱର !
ବସି ବସି ସରୁନାହିଁ ଦିନ
ସ୍ୱପ୍ରାପ୍ତେ ହେଲା ଅଶନ ବେଶନ ରେ । ୧୩ ।

ଭରସା ତୁ ମୋର ସିନା      ଭାଙ୍ଗିବାକୁ ପ୍ରୀତି ଅନା
ଭାସିଗଲା ମଦନ — ସରିତେ
ଜୀବନ ! ଭାବ-ଧନରେ      କିଣି ରଖିଥିଲୁ ମୋରେ
ସେମାନ କି ପଡ଼ୁନାହିଁ ଚିତ୍ତେ ରେ
ପ୍ରାଣେଶ୍ୱର !
ତୁରୁଶୋଭିବନ୍ତ ନାଗବର
ତୁରୁମଣି ମୋତେ ଘେନ୍ନା ତୁ ନ କର ରେ । ୧୪ ।

ମଞ୍ଜୁଳା ମଞ୍ଜୁମଣ୍ଡନା      ମଦନ-ଚାପ-ଖଣ୍ଡନା
ମନ୍ଦର—ନୟନା ମଦାଳସି !
ମନ୍ଦାର ବିମ୍ବ,ଅଧର !      ମୋଠାରେ ସ୍ନେହକୁ ଧର
ମଞ୍ଜୁକୁ କରନ୍ତୁ ମୁଖ-ଶଶିରେ
ପ୍ରାଣେଶ୍ୱର !
ମୁଁ ତୋର କେମନ୍ତେ ତୁ ତ ଜାଣୁ
ମନରେ ସୁଦୟା ରଖ ଏ ନ ଅଣୁରେ । ୧୫ ।

ଯାମିନୀ ଦିନ ଚତୁର !      ଯହିଁ ତୋତେ ଅନୁସର
ଥାଇ ତାହା ନ ଘେନିଲୁ ଲବେ
ଯାବକ ମଣ୍ଡନା ହେଲେ      ନିଷ୍ଠୁର ହେଲୁ ଏ କାଳେ
କରୁଣାକୁ ଊଣା କର ଏବେ ରେ
ପ୍ରାଣେଶ୍ୱର !

ଜଳବନ୍ଦୁ ଗଣ୍ଡ ଶୃଙ୍ଗକର
ଜବାଧର ! ଅଟେ ଅଚ୍ଛ କି ବିଗ୍ରହ ରେ । ୨୬ ।

ରମଣି ! ମୋ ଜାଣିମାରେ    ରଞ୍ଚ ଦୋଷ ନାହିଁ ତୋରେ
ରୋଷକୁ ବହିଲୁ କି ବିଗ୍ରହ
ରଚନାଯୂକ ସାଯୂକ    ପ୍ରହାର ମାରେ କାଯୂକ
ଅନାୟାସେ ପକାଇ ବଦାର ରେ
ପ୍ରାଣେଶ୍ୱର !
ରଦନା ମଣ୍ଡନେ ଅଜ ଷଣେ
ରସିକା ଶରଣ ତୋ ରଙ୍ଗ—ଚରଣେ ରେ । ୨୭ ।

ଲବଣୀପିଭୁଲା ବାଲା    ଲଳଚନ୍ଦ୍ରାସୀ କୋମଳା
ଚଳଦଚଢରେ ଯେକା ଯେତେ
ଲଜ୍ଜାବୟସି ! ଦସି    କଉତୁକେ ମଦାଲସି
ଧନ ବୋଲି ଡାକିଲି ମୁଁ ତୋରେ ରେ
ପ୍ରାଣେଶ୍ୱର !
ଲସାଉଛୁ ଅବା ଦେନ ତାହା
ଲବ ଦୋଷ ନାହିଁ ଏ ବିକ୍ରୁ ସ୍ୱ ସ୍ପେନ୍ହାରେ । ୨୮ ।

ବନ୍ଦତା ସ୍ୱଖ—ଜନ୍ତତା    ବରାଙ୍ଗୀ ନରେଶସୁତା
କହିଲି ଯେ ଥିଲି ତୋ ଛମୁରେ
ବାନ୍ଧବ ! ରଖ ନ ଚଃଖ    କାମେ ସଚିଳିଣି ଦେଶ
ଏତେ କହି ପଡ଼ି ଚରଣରେ ସେ
ଯୁବାବର
ବନୟରେ ଧର ଥାର ପାଦ
ବିହ୍ୱଳତ ହୋଇ ହେଲା ଗଦଗଦ ସେ । ୨୯ ।

ସୁଜାଣ ରମଣୀମଣି    ବିନଇ ମନକୁ ଆଣି
ଅନୁରାଗ ବହୁ ଯୁବାଠାରେ
ସେନେହ ବଶରେ କର    ଛଡ଼ାଇ ଦୃଢ଼ ଭୁଜର
ଚୁମ୍ବନକୁ ଦେଇ ବଦନରେ ସେ
ନୃପସୁତା
ସରସ ବଚନ ପୁଣି କହି
ଶୀଘ୍ରେ ଯୁବା ତାପ ହୃଦୟରୁ ଦହି ସେ । ୩୦

ସରାଗ ଜାଣି ବାଳାର    ଧନ୍ଦୁର ପୁରୁଷବର
ବସାଇଲା କୋଳରେ ବନ୍ଧନ
ସପ୍ରେମରେ କହି ତାକୁ    ପରାଣ ଗଲେ କାହାକୁ
ପରାଣବନ୍ଧୁ କରନ୍ତୁ ମାନରେ
ପ୍ରାଣେଶ୍ୱରି !
ସେବାବେଳେ ଥିଲି ପରା କହି
ସୁମୁଖି ! ମୋ ଦୋଷ ନ ଘେନମା ପାଇଁ ରେ । ୩୧ ।

ସେ ଏବେ ପାସୋର ଗଲ    ନିରାଶ ମୋଠାରେ ହେଲ
ଏହିପରି ସବୁ ନିନ୍ଦ କରୁ
ସୁବାଣି ! ମୋ ତୋ ବାହାରେ    ଭରସା ନାହିଁ ଆନରେ
ଅଧିକ ତୁ ମୋହ ଜୀବନରୁ ରେ
ପ୍ରାଣେଶ୍ୱରି !
ସୁରତି ଦେଇଣ ଜୀବ ରଖ
ସାରସଗମନା ! ହେଲୁଟି ନିରେଖ ରେ । ୩୨ ।

ହରିଣନେତ୍ରା ଏ ବାଣୀ    ହରଷ ହୋଇଲା ଶୁଣି
କେଳିରସେ ଯୁବା ମନ ହରି

ଦୂର—ବଇରହ ଲବେ ଶଙ୍କା ନ କରଣ ଭାବେ
ନାନାଭଙ୍ଗେ ରଜନୀ କ ଦୂର ସେ
ବେନଛନେ
ହୃଦରୁ ଛଡ଼ାଇ ସବୁ ତାପ
ଦେଇ ଛାତି ପୁଣି ସେନେହ ଅମାପ ଯେ । ୩୩ ।

ଯେମେ ରସିକ ବନତା ଛଡ଼ିଣ ମନରୁ ଚିନ୍ତା
ଦୂରନ୍ତି ଏ ଅନ୍ତେ ଦିନମାନ
କ୍ଷମାଶୀଳା ଯେଣୁ ବାଳା ଯୁବାରେ ସକଳ୍ପ କଲା
ଜୀବ ଥିଲେ ନ କରିବ ମାନ ସେ
ପୁଂସବର
କ୍ଷଣେ ଛଡ଼ି ନ ଯିବ ବିଦେଶ
ସ୍ୱାମୀ ବନ୍ଧୁରୂପ କହଇ ଏ ରସ ଯେ । ୩୪ ।

---

# ଷଷ୍ଠବିଂଶ ଛାନ୍ଦ

ରାଗ—ମଙ୍ଗଳ

ଏଥି ଅନନ୍ତରେ ରପ ଶୁଣ ହେ ସୁବୃଦ୍ଧି
ଇନ୍ଦ୍ର ଉତ୍ସବଙ୍କୁ ଶଶିରେଖା ଯିବା ବୁଦ୍ଧି । ୧ ।

ଯିବାପୁରୁ ଗୃହ ଯନ୍ତ୍ରୁ ପ୍ରବେଶ ହୋଇଲା
ଉଚ୍ଚାଟ କାତର ନୃପନନ୍ଦିନୀ ହୋଇଲା । ୨ ।

କେସନେ କାନ୍ତଙ୍କୁ ଏ ସନ୍ଦେଶ ଜଣାଇବି
ସେ ଜୀବନେ ରହିବେ ମୁଁ ଜୀବନ ରଖିବି । ୩ ।

ନ ଗଲେ ଜନନୀବ୍ରତ ବିଫଳ ହୋଇବ
ଗଲେ କାନ୍ତଠାରେ ଅତି ନିଷ୍ଠୁର ଦଶିବ । ୪ ।

ଏସନ ବିଗ୍ରହ ମାନ ଭାବି ହୃଦୟରେ
ନୃପସୁତା ଲୋତକ ପୂରେଇ ନୟନରେ । ୫ ।

ଏକାନ୍ତ ସ୍ଥାନରେ ବସି ଭାଳଇ ସୁମୁଖୀ
ପ୍ରତିକ୍ଷଣେ ବିରହ କାତରେ ହୋଇ ଦୁଖୀ । ୬ ।

କ୍ଷିନ୍ନକଣ୍ଠ ପୀନସ୍ତନୀ ଦିନୁଦିନ ହେଦ
ଯୁବାଠାରେ ଯେଣୁ ଅଛୁ ଅତ୍ୟନ୍ତ ସେନେହ । ୭ ।

ଏହିରୂପେ ଦିନ ପାଞ୍ଚ ସାତ ବଳିବାରୁ
ଦୁର୍ବଳ ହୋଇଲା ହେମ-ଲତା-ରମ୍ଭୋରୁ । ୮ ।

ଜାଣି ଏହା ଯୁବାବର ବସି ପ୍ରିୟା ପାଶେ
କହଇ ଅନେକ ଗୂଢ଼ ମନର ବିଶ୍ୱାସେ । ୯ ।

ପରାଣ ଈଶ୍ୱରି ! କି କାରଣେ ଦୁଖୀ ହୋଇ

ନ ତୋତେ ଅପୂର୍ବ ହେଲା ମୋତେ ତ ନ କହୁ । ୧୦ ।
ପ୍ରତ୍ୟକ୍ଷରେ ମଳନ ନନ୍ଦନମୁଖ ତୋର
ସ୍ୱର୍ଣ୍ଣଗୋର ପୂର୍ଣ୍ଣ ହୋଏ ନୟନରେ ନୀର । ୧୧ ।
ଏମାନ ଦେଖିଲେ ଡରେ ମୋ ଜୀବ ରହିବ
ପାଶରେ ଭୁ ଥାଉଁ ଥାଉଁ ମଦନ ଦହିବ । ୧୨ ।
ଯେବେ ତୋ ହୃଦୟ୍ୟା ବନ୍ଧୁ ମୋହଠାରେ ଅଛୁ
କହ ଏ କାରଣ ନୋହ ଚରଣ ଧରୁଛୁ । ୧୩ ।
ଏତେ କହି ଯୁବା ତାଙ୍କୁ ଲଗାଇ ହୃଦରେ
ଘଡ଼ ସନ୍ଧ ଚୁମ୍ବଦେଲା ଗଣ୍ଡମଣ୍ଡଳରେ । ୧୪ ।
ଦେଖି ଏ ସ୍ୱାଭାବ କାମେ କାମିନୀ କାତର
ଅନୁରାଗେ କାନ୍ତର ସେ ଧଇଲା ଶ୍ରୀକର । ୧୫ ।
ବଚନ ବକ୍ଷରୁ ଅତି ଗଦଗଦ ହୋଇ
କହଇ ମନର ଦୁଃଖ ବ୍ୟାକୁଳ ହୋଇ । ୧୬ ।
ଶୁଣ ପ୍ରାଣନାଥ ! ମୋହ ବିବାହ ହେଉରେ
ମାତା ସତ୍ୟବ୍ରତ ପାଳିଥିଲେକ ପୂର୍ବରେ । ୧୭ ।
ଯେବେ ମୋ ନନ୍ଦନୀ ଦିବ୍ୟନାୟକ ଲଭିବ
ବିଧିରେ କରିବ ମୁହିଁ ଇନ୍ଦ୍ରମହୋତ୍ସବ । ୧୮ ।
ସେ ସଙ୍କଳ୍ପ ଅଳପ ଦିନରେ ପୂର୍ଣ୍ଣହେଲା
ଅନୁରୂପ ଦଇବ ତୁମ୍ଭଙ୍କୁ ମୋତେ ଦେଲା । ୧୯ ।
ଏଣୁ ମୋ ଜନନୀ ଅତି ଆନନ୍ଦ ହୋଇଲେ
ବାସବ ଉତ୍ସବ କରିବାର ମନ କଲେ । ୨୦ ।

କରୁଅଛନ୍ତି ଅନେକ ସମ୍ଭାର ଉଆଣି
ମୋ ଯିବା ନିମନ୍ତେ ନେଉଅଛନ୍ତି ନିମନ୍ତ୍ରଣ । ୨୧ ।

କି କରିବ ଯିବ କି ନ ଯିବ ମୋତେ କହ
ମୋର ତ ଅସ୍ୱତ୍ୱ ନାହିଁ ତୁମ୍ଭର ଏ ଦେହ । ୨୨ ।

ଶୁଣି ଯୁବା କହେ ସେ ରହିଲା କେତେଦିନ
କଉଁ ମାସେ କି ପ୍ରକାରେ କେମନ୍ତ ବିଧାନ । ୨୩ ।

ଗଲେ ଆସିବାର କେବେ ଦିବସେ ପଡ଼ିବ
କହ ଧନ ! ଯଉଁ ରୂପେ ସନ୍ଦେହ ଛାଡ଼ିବ । ୨୪ ।

ଶୁଣି ନୃପସୁତା କହେ ରହସେ ବହୁତ
ଭାଦ୍ରବ ପୂର୍ଣ୍ଣିମୀ ଇନ୍ଦ୍ରଉତ୍ସବ ବିହିତ । ୨୫ ।

ଲେଖିବାରେ କାର୍ତ୍ତିକ ଏ ଏଗାର ମାସରେ
ଶେଷଦେବ ବ୍ରତବିଧି ସମସ୍ତ ପ୍ରକାରେ । ୨୬ ।

ଆଶ୍ୱିନ ବିରଷା ଦୁର୍ଗା ପୂଜାବିଧି ଯେନ
ସେ ମାସକ ମୋତେ ଛାଡ଼ି ନ ଦେବେ ଜନନୀ । ୨୭ ।

କୁମାର ପୂର୍ଣ୍ଣିମୀ ଯେ ଦ୍ୱିତୀୟାର ଦିବସ
ଅବଶ୍ୟ ଆସିବି ପ୍ରାଣନାଥ ତୁମ୍ଭ ପାଶ । ୨୮ ।

ସେହିଦିନ ଅବଧିକି ମୋହର ଗୃହେଁ ଥିବ
କହୁଛି ମୁଁ କର ଧରି ଚିନ୍ତା ନ କରିବ । ୨୯ ।

ଦେହ ରକ୍ଷି ଜଗନ୍ନାଥକୁ ସେବୁଥିବ
ତାଙ୍କ ସେବା ପୁଣ୍ୟଫଳେ ମୋତେଟି ପାଇବ । ୩୦ ।

ନୋହିବ ବିମନ ଦିନ ସଖାଙ୍କର ମେଳେ

ନେବ ଲବମାତ୍ର କରି ଖେଳ କୁତୂହଳେ । ୩୧ ।
ସଖୀଙ୍କର ଦୋଷମାନ ନ ଘେନିମ ଛଳେ
ମୋ ବିନା ତୁମ୍ଭ ଜୀବ ରଖିବେ ହସ ଖେଳେ । ୩୨ ।
ତୁମ୍ଭ ଅଙ୍ଗ ଅନ ଜାଣିନାହିଁ ମୋ ବାହାରେ
ମନଜାଣି ସେବିବ କେ ଯୁବତୀ ସଂସାରେ । ୩୩ ।
ଅନ ନ କରିବ ପ୍ରିୟ ! ମୋହଠାରୁ ମନ
ତୁମ୍ଭେ ଯେ ମୋହର ଅଟ ଜୀବର ଜୀବନ । ୩୪ ।
ଯଥାବେଳରେ ମଣୋହି ସ୍ନାନ ଦେବାର୍ଚ୍ଚନ
ହେଲମ ନ କରି ପ୍ରିୟ କରିବ ବନ୍ଦନ । ୩୫ ।
କାହିଁ ନାଶି ହରିବ ସୁରତ ଦେଇ ମନ
କାହା ସଙ୍ଗେ ଭଳିଭୁଳେ ନେବ ଦିନମାନ । ୩୬ ।
ଜୀବନ ବୋଲି ଡ଼ାକିବ କାହାକୁ ସ୍ନେହରେ
ମାନ କଲେ ଗୃହେ ତୁମ୍ଭେ କହିବ କାହାରେ । ୩୭ ।
ଯେବେ ମୋହୋପରି ଜଣେ ଯୁବତୀ ମିଳିବ
ତାହା ସଙ୍ଗେ କଳିଭୁଳେ ରଜନୀ ବଞ୍ଚିବ । ୩୮ ।
ସେ ଯେବେ ତୁମ୍ଭର ଚିତ୍ତ ନେବ ପ୍ରାଣନାହା
ତାହା ବିନୁ ଅନଠାରେ ନ କରିବ ସ୍ପୃହା ୩୯ ।
ନିରନ୍ତର ଦେହକୁ ଯତନ କରୁଥିବ
ମୋ ଯିବାକୁ ହୃଦେ ଲବେ ଚିନ୍ତା ନ କରିବ । ୪୦ ।
ଦୂରହେଁ ମୁଁ ଥିଲେହେଁ ପାଶରେ ଥିଲାପରି
ଘେନିଥିବ ପ୍ରାଣନାଥ ! ବାସର ଶର୍ବରୀ । ୪୧ ।

ଯହିଁ ତହିଁ ଫୁଟିଲେହେଁ ମାଲତୀ କୁସୁମ
ଅବଶ୍ୟ ହୁଅଇ ସେହୁ ଭୃଙ୍ଗ ମନୋରମ । ୪୨ ।

ଭ୍ରମର ଶମ୍ପାନେ ତାକୁ ଆନ କି ଲଭଇ
ମାଲତୀର ମଧୁପ ବମ୍ପାନେ ଗନ୍ଧ ନାହିଁ । ୪୩ ।

ଚୂତ ମୁକୁଳ ଧଇଲେ ଭୃଙ୍ଗ କରେ ପାନ
ପକ୍ୱଫଳ ହେଲେ କରେ କୋକିଳ ଅଦନ । ୪୪ ।

ଯାହାର ଯେ ଯୋଗ୍ୟ ଭୋଗ୍ୟ ତାକୁ ହୋପ୍ତେ ବଳେ
ଲୋଡ଼ିଲେ ପାଏ ତ ଲେଶ ଆନ ଛାର ବେଳେ । ୪୫ ।

ଶୃତକର ଘନବନ୍ଧୁ ନାହିଁ ପ୍ରତିକାର
ଚନ୍ଦ୍ର ବିନା ଆନ ଗତି ନାହିଁ ଚକୋରର । ୪୬ ।

ମୀନ ବନ ପୀରତ ଯେ ଅତ୍ୟନ୍ତ ନଘନ
ତେଜିଲେ କମଳ ଦୂର କରଇ ଜୀବନ । ୪୭ ।

ଏହିମତ ଜାଣିଥିବ ମୋତେ ପ୍ରାଣନାଥ
ତୁମ୍ଭବିନୁ ଅନ୍ୟ ବୋଲିବାକୁ କେ ମୋ ସାଥ । ୪୮ ।

ଏମନ ବଚନ ଶୁଣି ରସିକ ନାଗର
ବିରହରେ ଜାତ କଷ୍ଟ ନୟନରୁ ନୀର । ୪୯ ।

ଅନୁରାଗେ ଯୁବତୀରତନ କର ଧରି
ବୋଲଇ ମୂର୍ଚ୍ଛିବୁ ମୋତେ ପରାଣ ଈଶ୍ୱରି ! । ୫୦ ।

ଅନ୍ଧାର ଦଶଇ ତୋତେ ଘଣେ ନ ଦେଖିଲେ
ଜୀଇବ କି ବଳ, ତୁ ମୋଁ ପାଶୁଁ ଦୂର ହେଲେ । ୫୧ ।

ଯୁଗ ପରି ହୋଏ ମୋତେ ଲବକ ଅନ୍ତର

ତୁ ତ ନ ଜାଣ, ମୁଁ କେତେ କହିବ ଶଙ୍କର । ୫୨ ।

ତୋ ଚରଣେ ଶରଣ ପଶିଛୁ କାମ ଭୟେ
ଧନ ! ହୃଦରେ ନ କର ନାରାଣ ଉଦୟେ । ୫୩ ।

ବେଲଙ୍କୁ ତୁ ଅଙ୍ଗୀକାର କରି ରଖିଅଛୁ
ଏବେ ଉମାଇ ଦେବାକୁ ଚିତ୍ତେ ବିଗୃହଛୁ । ୫୪ ।

ପତିଜନ ପରି ସେବିଅଛୁ ତୋ ପାଦରେ
ଭକ୍ତର ସ୍ୱଦୟା ନ ବହୁ ତୋ ହୃଦୟରେ । ୫୫ ।

ବିନା ଦୋଷେ ନିଜ ଦାସେ ନ କର ନାରାଣ
ଚିତ୍ତରେ ବିଚାର ପ୍ରିୟେ ନାହିଁ କିଛି ଦୋଷ । ୫୬ ।

ଥିଲେହେଁ ତ ଅପରାଧ କରନ୍ତୁ ତୁ କ୍ଷମା
ଅଧିକାର ମାତ୍ର ମୋର ଏତେ ଜଣାଇମା । ୫୭ ।

ତଥାପିହିଁ ଯେବେ ଦୋଷ କଲୁ ବୁଝି ଦଣ୍ଡ
ସମସ୍ତ ପ୍ରକାରେ ତୋର ଜଣା ଏ ମୋ ପିଣ୍ଡ । ୫୮ ।

ମୁହିଁ ତୋହୋ ସଙ୍ଗ ପୂର୍ବ ଜନ୍ମୁ ଇଚ୍ଛାକଲି
କିଶୋଲୀ ତପସ୍ୟା କରି ଶିବଙ୍କୁ ସେବିଲି । ୫୯ ।

ଏକାଶି ବରଷେ କାଶୀବାସୀଙ୍କି ପ୍ରସନ୍ନ
କରି ବର ମାଗିଲି ମୁଁ ହରି ହରି ମନ । ୬୦ ।

ବୋଇଲି ହେ ପ୍ରଭୁ ମୋତେ ଏତେ ଆଜ୍ଞା ହୋଉ
ଶୀବେଣୀଶ ସଙ୍ଗ ମୋତେ ଜନ୍ମେ ଜନ୍ମେ ଥାଉ । ୬୧ ।

ସନ୍ତୋଷ ହୋଇଣ ଉମାପତି ଆଜ୍ଞା ଦେଲେ
ଏବେ କେହୁ ବଞ୍ଚିବ ତୁ ମୋତେ ଛାଡ଼ିଗଲେ । ୬୨ ।

ଏସନ କହି କୁମର ଅରତ ହୋଇଲା
ଅନୁରାଗେ ଯୁବତୀର ଚରଣ ଧଇଲା । ୬୩ ।

ଦେଖି ଏ କୁମର ଖେଦ ଦ୍ୱିରଦଗାମିନୀ
ସତେ ନ ଅସିବ କି ମନରେ ଅଛି ଘେନି । ୬୪ ।

ଛାଡ଼ିଲେ ତୁମ୍ଭଙ୍କୁ ମୋର ଜୀବ ନ ରହିବ
ଯୁଦ୍ଧାଉଛ ଅନାପୃତ୍ତ ଦେହଙ୍କୁ ଦଇବ । ୬୫ ।

କହୁ ଚିନ୍ତା ନ କରିବ ମୋ ପ୍ରାଣ-ଈଶ୍ୱର !
ଜୀବ ତୁମ୍ଭଠାରେ ରଖି ନେଉଛୁ ଶରୀର । ୬୬ ।

ଦୁଃଖ ସୁଖ ସବୁ ଏହି ଦେହ ଧର୍ମ ଭିନା
ଏଥିପାଇଁ ପ୍ରାଣନାଥ ! ନୋହିବ ବିମନା । ୬୭ ।

ମୋଠାରେ ଅନ୍ତର ବୁଦ୍ଧି ନ କରିବ ଲେଶେ
ଦଇବ ବଶରୁ ଦୁଖ ସହିବ ବରଷେ । ୬୮ ।

ଜନନୀବ୍ରତ ମନ୍ଦିଲେ ରହିବ କି ଦଣ୍ଡେ
ତୁମ୍ଭଙ୍କୁ ଦେଖିଲେ ପ୍ରାଣ ଥିବ ଦେହ ପିଣ୍ଡେ । ୬୯ ।

ଜଣାଉଛୁ ନିରାଶ କରିବ ନାହିଁ ମୋତେ
ସେବକ ଭାବରେ ଦୟା କରିଥିବ ଚିତ୍ତେ । ୭୦ ।

ଏହା ଶୁଣି କୁମର ତା ଚରଣ ଧଇଲା
ବେଣୁ ଝାଡ଼ି କର ନେଇ ଅଙ୍ଗେ ଲଗାଇଲା । ୭୧ ।

ଶିରରେ ବେନି ନୟନ ହୃଦରେ ଲଗାଇ
ଶୀତଳ ଅଙ୍ଗକୁ କଲା ଚନ୍ଦନ ବୋଳାଇ । ୭୨ ।

କୁଙ୍କୁମ କସ୍ତୁରୀ ଗୋଳି ଘେନି ନିଜ କରେ

ବୋଲନ୍ତି ରସିକବର ରସିକାହୃଦରେ । ୭୩ ।

ସେହିମତେ ପୁନଶ୍ଚ କଲେ ଆଲିଙ୍ଗନ
ଲାଗିଲା ଭ୍ରମର ଦେହେ ବାଳୀ ଦେହ ଚନ୍ଦ । ୭୪ ।

ଜନ ଯେମନ୍ତେ ବଞ୍ଚିବ ଉପାୟ ଯେ କଲେ
କର ଚରଣର ଚନ୍ଦ ବସନେ ଘେନଲେ । ୭୫ ।

ଏଣୁ ସେ ରସିକା ହୋଇ ଅତ୍ୟନ୍ତ କାତର
ବନସ୍ତ୍ର କହି ଧଇଲା ଭ୍ରମର ପୟର । ୭୬ ।

ସେହି ଛାଡ଼ି ନ ପାରେ ଭ୍ରମର ନ ଛାଡ଼ଇ
ପରସ୍ପର ଅନୁରାଗ ଅଧିକେ ବଢ଼ଇ । ୭୭ ।

ହୃଦରୁ ବସନ ଭିନ୍ନ କରି ରାମାବର
ନ ପାଇଲା ଭ୍ରମର ଉରକୁ ନିଜ ଉର । ୭୮ ।

ଉଭେ କୋଳ କରି ନିବିଡ଼ରେ ପ୍ରାଣପ୍ରିୟା
ଚିରକାଳ ଯାଏ ଦୂର କଲେ ନାହିଁ ହିଆ । ୭୯ ।

ନିଶ୍ୱାସ ଯେ ଖରତର କରଣ ମୂର୍ଚ୍ଛିଲା
ଭ୍ରମରର ବେନି ପାଦ ଶିରେ ଲଗାଇଲା । ୮୦ ।

ଏହା ଜାଣି କୋଳ କରି ନୃପତି ନନ୍ଦନ
ଛଳେ ଉଭେ ବଦନରେ ଦେଇଲେ ଚୁମ୍ବନ । ୮୧ ।

ବସନ ଅଞ୍ଚଳେ ଛପିଦେଇ ପ୍ରିୟାମୁଖ
ବୋଇଲା ମୁଁ ନ ମରୁ ଦେଖିଲି ଏ ତୋ ଦୁଃଖ । ୮୨ ।

କେମନ୍ତେ ତୁ ବଞ୍ଚିବୁ ମୁଁ ନେବି କେହି ଜନ
ପାଶେ ରଣ ଥାଉ ନିଜ ଛାଡ଼ିଲେ ଜୀବନ । ୮୩ ।

ଗଲେ ଏକା ଯୌତୁକ ମାଗୁଛ ଘେନିଥିବୁ
ଉଦନ୍ତ ମୁଁ ଦେଲେ ପ୍ରତିଉତ୍ତର ତୁ ଦେବୁ । ୮୪ ।

ନିରନ୍ତର କରୁଥିବୁ ଦେହକୁ ଯତନ
ଯଥାବେଳେ ଆଚରିବୁ ସ୍ନାହାନ ଭୋଜନ । ୮୫ ।

ଜଣାଉଛୁ ମୋଠାରେ ନିରାଶ ନ ହେବୁ
ବଚନରେ ହେଲେ ଥରେ ଥରେ ସଙ୍କୁଳିବୁ । ୮୬ ।

ଏତେ କହି ପୁଣି ଯୁବା କର ଧରି ତାର
ଅନୁରାଗେ ଲଗାଇଲା ଅପଣା ହୃଦର । ୮୭ ।

ଦେହକୁ ଦେହ ଲଗାଇ କଲା ଆଲିଙ୍ଗନ
ମେଲାଣି ହରଣ ଦେଲା ଅମୂଲ୍ୟ ଚୁମ୍ବନ । ୮୮ ।

ଛାଡିଗଲେ ଛାଡିବ ଜୀବନ ଦୁଇ ଦେହ
କେବଳ ଏଥିକ ପ୍ରତିକାର ଦେଖା ମୋହ । ୮୯ ।

ଶରଦକୁ ନୀରଦକୁନ୍ତଳା କଣ୍ଠକରି
ମେଲାଣି ହୋଇଲା ଯୁବାଠାରୁ ହେମଗୋରୀ । ୯୦ ।

ହାଟନାଳାରେ ବସି ପିତା-ସଦନକୁ ଗଲା
ଯୁବା ମନ-ଧନକୁ ପଣନ୍ତେ ବାନ୍ଧି ନେଲା । ୯୧ ।

କେତେ ଦିନେ ପ୍ରବେଶ ହୋଇଲା ନିଜପୁରେ
ନଉଛଳି କଲା ପିତାମାତାଙ୍କ ପଯ୍ୟୃରେ । ୯୨ ।

ପୁରୁଷ ବିରହ ଅଭ ଛନ୍ଦେ ଜନେ ଶୁଣ
ଚନ୍ଦ୍ରାକର ହୃଦପୃରେ ଶ୍ରୀକୃଷ୍ଣ ଚରଣ । ୯୩ ।

ଭଣେ ବାଞ୍ଛି ନମ୍ର ନରହରି ଏହୁ ରସ
କାନ୍ତ କାନ୍ତା ବିରହ ବିଚ୍ଛେଦ ଛନ୍ଦ ଶେଷ । ୯୪ ।

## ସପ୍ତବିଂଶ ଛାନ୍ଦ

ଘଙ୍ଗ—ଗ୍ରେଷି

ଅନାଘ୍ରାତ ବର୍ଣ୍ଣି ବାଲା        ଜନକୀ ପୁରକୁ ଗଲା
ସଚେତ ହୋଇଣ ଉଠି କୁମର ବର
ନ ଦେଖି ପ୍ରାଣପ୍ରିୟାକୁ        ଘୋଟଲା ଚିନ୍ତା ଅଙ୍ଗକୁ
ଝରନ୍ତ ବଣକୁ ହେଲା ଅଧିକାତର
କାମ ବାଣେ ବିକଳ ହୋଇ
ବୋଲଇ ବାନ୍ଧବା ! ମୋତେ ଛାଡ଼ିଲୁ କାହିଁ । ୧ ।

ଜାତ କରି ଅନୁରାଗ        ଛଡ଼ାଇଲୁ ସବୁ ସଙ୍ଗ
ବୁଡ଼ାଇଲୁ ଧନ ! ତୋହ ପ୍ରୀତି—ସାଗରେ
ଦିନ୍ ଦିନ୍ ଦେଇ ରସ        ରଖିଲୁ କରଣ ଦାସ
ନ କଲି ମୁଁ ଦିନେ ଦୋଷ ତୋହ ଅଗରେ
କି ବଜ୍ରର ହୃଦରେ କର
ଉସାର ହୋଇଣ ମୋତେ ଗଲୁରେ ଗୋର ।। ୨ ।

ପ୍ରେମ ଧନେ କିଣିମୋତେ        ରଖିଥିଲୁ ଅବରତେ
ଅଧରୁ ଅମୃତ ଦେଇ ବାଳକ ପୋଷି
କାମଭୃତ୍ୟରୁ ଚରଣ—        ତଳରେ ରଖି ଶରଣ
ଏବେ ଗଲୁ ଅକାରଣ କଥାରେ ନାଶି
ସେବକ ମୁଁ ସର୍ବଜେ ତୋର
କାରଣ କାହିଁକି କଲୁ ରମଣୀବର । ୩ ।

ମାତା ସତ୍ୟବ୍ରତ ପାଳ        ଗଲୁ ଯେବେ ନବବାଳ !
ସଙ୍ଗତେ କାହିଁକି ମୋତେ ନ ନେଲୁ ତୋର

ନ ପାଇଲେ ରତିରସ        ଦେଖି ହୋଉଥାନ୍ତି ତୋଷ
ନ ପାରନ୍ତି କଳି ବେଷ କୁସୁମ ଶର
ଲଜ୍ଜା ପ୍ରେମା ନ କଲୁ ଲୋଭି !
ଏହି କଥା ସୁମରି ମୁଁ ମରୁଛି ଝୁରି । ୪ ।

ତୋ ସଙ୍ଗତେ କରି ପ୍ରୀତି        ଶଙ୍କା ହୋଏ ମୋର ଚିତ୍ତ
ନ ପୁଣି ପଡ଼େ ବିପତ୍ତି ହସ୍ତୁ ଥାଇ
ଅତି ସ୍ନେହ ଦେଖି ତୋର        କ୍ଷଣେ ନିନ୍ଦଇ ଅନ୍ତର
ନୟନରୁ ତୋତେ ଦୂର କରଇ ନାହିଁ
ତୁ ପରାଣ ପିଣ୍ଡକୁ ମୋର
ଛାଡ଼ିଲେ କି ଗତି ଏହା କର ବିଚାର । ୫ ।

ଯହିଁ ଦିନ ରେ ଜୀବନ !        ଦୂତ ଏଠାକୁ ରାଜନ
ତୋତେ ନେବା ନିମନ୍ତରେ ବରଗି ଥିଲେ
ସେଦିନ ମୋ ପ୍ରାଣମାନେ        ଆସି ରହିଲେ ନୟନେ
ଯିବା ଅନୁକୂଳ ବିଧି ଆରମ୍ଭ କଲେ
ତେଣୁ ମୋ ପ୍ରାଣର ଆଶ
ଛାଡ଼ି କରି ସେହିଦିନୁ ହେଲି ନିରାଶ । ୬ ।

ଯାହା କହିଥିଲି ଧନ !        ନ ଶୁଣିଲୁ ସେ ବଚନ
ଶୁଣି ଥିଲେ କି ଯେମାନ ହୁଅନ୍ତା ସହି
ନ ଶୁଣିବାରୁ ଏ ଦଶା        ଭୋଗ ହେଲା ମୃଗଦୃଶା !
ଦେଖିବାର ପାଇଁ ଆଶା ହେଉଛି ଯହି !
ଏବେ ନେତ୍ର ହେଜୁଛି ବନ ।
ଏକା କଥାକରେ ବାନ୍ଧି କଲା ଯେ ଭନ । ୭ ।

ଯିବାବେଳେ ରେ ଅବଳା !   ନ କଲୁ ମୋଠାରେ ହେଳା
ହକାର ନଛଡ଼ ମୋତେ ଧଇଲୁ କୋଳେ
ଦେଇ ମୋ ଚିବୁକେ କର   ଗଣ୍ଡ ଚୁମ୍ବିଲୁ ସତ୍ୱର
ଆଲିଙ୍ଗନ କରି ଧନ ! ନ ଛାଡ଼ ଛଳେ
ହୃଦେ ହୃଦ ଲଗାଇ ତୁହି
ଦୁଃଖେ ଉଡ଼ ନେତ୍ରୁ ବନ ତେଜିଲୁ ସହି ! । ୮ ।

ମୋ ଅଧରୁ ସୁଧା ପାନ   କରି ମୋ ଜୀବ ଜୀବନ
ମଥା ଛେଞ୍ଚ କପାଳରେ ମାଇଲୁ ହାଥ
ବହୁକ୍ତ କେତେ ଧିକ୍କାର   ମୋର କର କରେ ଧରି
ବୋଇଲୁ ହେ ପ୍ରାଣମଣି ! ହେଲି ଅନାଥ
କରିଥିବ ମୋଠାରେ ଦୟା
ପ୍ରାଣନାଥ ମୋହୋଠାରୁ ତେଜିବ ମାୟା । ୯ ।

କହୁଛୁ ଏତେକ କରି   ମୁଁ ତୁମ୍ଭର ପରିଗ୍ରହୀ
ଯହିଁ ତହିଁ ଥିଲେ ତୁମ୍ଭ ନାରୀ ବୋଲିବେ
ମୋ ଜୀବରେ ଅଧିକାର   ଅଛଇ ବନ୍ଧୁ ତୁମ୍ଭର
ଯାହା ଇଚ୍ଛା ତାହା କର କହୁଛୁ ଏବେ
ତୁମ୍ଭେ ମୋର ନେତ୍ର ପ୍ରତିମା
ତୁମ୍ଭ ବିନୁ ଅନ୍ଧକାର ହେଉଇ ସୀମା । ୧୦ ।

କୁମୁଦର ଚନ୍ଦ୍ର ବିନା   ଆନ କି ଅଛି ଭାବନା
ଚନ୍ଦ୍ରକୁ କୁମୁଦ କେତେ କେତେ ମିଳଇ
ଏହିପରି ତୁମ୍ଭେ ମୋର   ଜାଣିଥିବଟି କୁମର
ମଦନ-ସାଗରୁ ମୋତେ କରିବ ପାରି

ଏତେ କହୁ ଅଥିର ହେଲୁ
ପ୍ରାଣବନ୍ଧୁ ! କାତର ହୋଇଣ ଭଣିଲୁ । ୧୧ ।

ପୁଣ ପୁଣ ସ୍ନେହଭରେ ଆଉଜାଇ ଜାନୁପରେ
ଅନୁରାଗ ଲୋଲନେତ୍ରେ ଗୃହିଁଲୁ ଧନ
ଅଭାବ ଜାଣି ଜୀବନ ! ନେତ୍ରରୁ ଢାଳିଲୁ ବନ
ବୋଇଲୁ ମନ ମୋଠାରୁ ନୋହୁବ ଆନ
ଯେଣୁବନ୍ଧୁ ସ୍ନେହେ ନକର
ରଖ ଅବା ନ ରଖ ଏ ଜୀବ ତୁମ୍ଭର । ୧୨ ।

ଅକଳଙ୍କ ଚନ୍ଦ୍ରମୁଖ ନ ଦେଖି ହେବ ନୀରେଖ
ଜାଣି ଦରପକ ଦର୍ପ ହରିବ ମୋର
ଚିରକାଳ ରତି ମନେ ଯେନ ମାର ଅସ୍ତ୍ରମାନେ
ମାଧବ ବସାଇ ମୋତେ ବିଷମ ଶର ।
କହ ମୁଁ କି ବୁଦ୍ଧି କରିବ
ତୁମ୍ଭ ପାଶୁଁ ଅନ୍ତର ହୋଇଲେ ମରିବ । ୧୩ ।

ମରିବାକୁ ନାହିଁ ଡ଼ର ଜାଣ ହେ କୁମରବର !
କେବଳ ଅଭାବ ହେବ ପାଶ ତୁମ୍ଭର
ଏ ଯେନ ହୋଯେ କଷ୍ଟର ଆନ କେ ଅଛି ମୋହୋର
ତୁମ୍ଭ ନ ରଖିଲେ ନାଶ ହେଉଛି ମୋର
ଏଥିରୁ ନ ରଖିଲେ ମୋତେ
ଜାଣି ନିନ୍ଦିବେ ଜଗତଜନେ ଯୁଗତେ । ୧୪ ।

ଏତେ କହୁ ବ୍ୟଗ୍ରହାସୀ ମୋହଗଲୁ କୋଳେ ବସି
ଆଣି ମୁଁ ଶୀତଳ ଜଳ ମୁଖେ ସିଞ୍ଚିଲି

ଅକୁଳ ହୋଇ ବିକଳ ଆଉଜାଇ କୋଳ କଲି
ପ୍ରାଣମଣି ! ଅଥିର ନୁହଁ ମୁଁ ବୋଇଲି
ଆଶ୍ୱାସନା ଅନ୍ତେ ଯେମନ୍ତେ
ଚେତନା ପାଇଣ ବାଳା ! ଉଠିଲୁ ମୋତେ । ୧୫ ।

ତେତେବେଳେ ହୃଦ ମୋର ହୋଇଲା ଅତି କାତର
ନୟନୁ ଲୋତକ ତେଜି ଶ୍ୱାସ ଛାଡ଼ିଲି
କରି ମୁହିଁ ଆଲିଙ୍ଗନ ଚୁମ୍ବିଲି ଚନ୍ଦ୍ରବଦନ
ଜ୍ଞାନ ହରାଇଣ ପାଦତଳେ ପଡ଼ିଲି
ସ୍ନେହଭରେ ମୋ ପ୍ରାଣପ୍ରିୟା !
ହୃଦେ ଉଠ ନ ଛାଡ଼ିଲୁ କରି ସୁଦୟା । ୧୬ ।

ପଡ଼ିଏକ ଗଲା ଯହୁଁ ଜ୍ଞାନ ମୋର ହେଲା ତହୁଁ
ଧରି ତୋ ଚରଣ ବେନି ରୋଦନ କଲି
ଆଉ ମୋର ଗତି ନାହିଁ ତୋ ବିନୁ ଶରଣ କାହିଁ
ପୋଡୁଛି ମଦନାନଳେ ହୃଦ ବୋଇଲି
ହିଅରେ ମୋ ଲଗାଇ ହିଆ
ଶୀତଳ କଲି ମୁଁ ହୃଦ ପରାଣପ୍ରିୟା । ୧୭ ।

ଏହା ଦେଖି ଜୀବେଶ୍ୱର ! ସ୍ନେହେ ମୋତେ କୋଳ କରି
ଗଣ୍ଡରେ ଗଣ୍ଡ ଲଗାଇ ହରି ବେଦନା
ତୁ ମୋର ଜୀବଜୀବନ ମୁଁ ତୋହର ପରିଜନ
ଶରଣ ତୋ ବିନୁ ମୋର ନାହିଁ ନବୀନା
ନାହିଁ ପ୍ରେୟେ ମୋହର ଆନ
କେବଳ ଏଥିକୁ ସାକ୍ଷୀ ଦୁଷ୍ଟ ମଦନ । ୧୮ ।

ଗଳାରେ ଗଳା ଲଗାଇ          ଜାନୁରେ ଛନ୍ଦିଲୁ ସହି !
ବନ୍ଧନ କଲୁ ତୁ ମୋତେ ବାହୁ-ପାଶରେ
ନେତ୍ରରେ ଦେଇ ଚୁମ୍ବନ          ହୃଅରୁ ନ କର ଭିନ୍ନ
ସେ ଦିନ ରଜନୀ ନେଲୁ ଏହି ଭାବରେ
ଉଷ ବପେ ବିଶେଷ ମଣି
ଅନ୍ତର ବୁଝି ନିବିଡ଼େ ଉଠ ରମଣି । ୧୯ ।

ସେହି ଭାବ ଅବଧିର          ମନୁଛୁ ରେ ସୁକୁମାରୀ !
କଉଁ ଦଶାକୁ ମୋହୋର ହୋଇ ନୋହୁଛି
କହିବ କାହାକୁ ଏହା          ବୋଲିବାକୁ ମୋତେ ଅହା
ଅଛି କେ ଜଗତେ ସାହା ମନେ ଗୁଣୁଛି
ଏଣୁ ନିଷ୍ଠେ ତୁ ଜଳଧର
ମୋ ଜୀବ-ଚାତକ ପ୍ରାଣ ଅଟେ ତୋହୋର । ୨୦ ।

ସ୍ନେହ-ସୁଧାଜଳ ଦେଇ          ସନ୍ତୁଷ୍ଟରେ ପ୍ରାଣସହି ।
ଏବେ ଏ ନିରାଶ କେହି କରୁ ହୃଦର
ନାହିଁ ଯାର ଅନୁଭବ          କେମନ୍ତେ ସେହୁ ସହିବ
ହେଲା ମାତ୍ରକେ ତେଜିବ ଆଶା ତନୁର
ଏଣୁ ଏ ମୂର୍ଚ୍ଛିବ କେମନ୍ତେ
ତେଜିଲେ ଏହାର ଜୀବ ଯିବ ନିଶ୍ଚେ । ୨୧ ।

ଜୀବ ଯିବାକୁ ଏହାର          ଭୟ ନାହିଁ ରାମାବର !
ଗଲେ ମାତ୍ର ଲାଜ ତୋର ହେବ ପ୍ରମାଣ
ବୋଲିବେ ଜଗତଜନ          ଆଶ୍ରେ କଲା ପରଜନ
ନାଶକରଇ ଯେହ୍ନାର ଅଛି ଏ ଗୁଣ

ତୋର ନନ୍ଦାଙ୍କୁ ଯେ ଡ଼ରନ୍ତି
ନାଶ ଯିବାକୁ ଏହାର ଭୟ କି ଅଛି । ୧୨ ।

ହେ ମୁଖ—ଶୀତାଂଶୁକର ମୋ ବେନି ନେତ୍ର ଚକୋର
ନ ଦେଖି ଏ ପ୍ରମାଦରେ ପଡ଼ିଲା ଧନ ।
ଏତେ ନିମେଷ ବିଚ୍ଛେଦ ନ ସହଇ ପରମାଦ
ପଡ଼ନ୍ତି ଏହାଙ୍କୁ ଘୋର ପ୍ରମାଦମାନ
ଚନ୍ଦ୍ରଠାରୁ ସୁଧା ନ ପାଇ
ଝୁରି ଝୁରି ତନୁରୁ ଜୀବନ ତେଜଇ । ୧୩ ।

ହେ ଉରଜ— ଶମ୍ଭୁ ପାଇ ମଦନକୁ ନ ଡ଼ରଇ
ଭରସା ମୁଁ କରିଥାଇ ସେହି ଯାହାରେ
ଏବେ ମୋତେ ଦେଖି ଏକା କରୁଛି କାମ କଡ଼କା
ଘେନିବ କେ ବେଦନା କହିବି କାହାରେ
ଭୟ ପାଏ ତୋହୋ ଥିବାରେ
ଏବେ ଏ ମୀରେଖ ଦେଖି ମାରୁଛି ମୋରେ । ୧୪ ।

ତୋହୋ ଥାଉ ଥାଉଁ ଧନ ! ନାଶଗଲେ ପରିଜନ
ନନ୍ଦା ବନ୍ଧୁତ ହୋଇବ ଜଗତେ ତୋର
ନାହିଁ ମୋର ପ୍ରତୀକାର ହେ: ବିନ୍ଦୁ ରମଣୀବର ।
ମୋ ଜୀବରେ ଅଧିକାର ଅଛି ତୋହର
ଏଣୁ ମୋର ଅସାର ଜୀବ
ନିରାଶ କଲେ ସୁତନୁ ! ତନୁ ତେଜିବ । ୧୫ ।

ତେଜିଲେ କି ହେବ ମୋର ଫିଟିଯିବ ସ୍ନେହ ତୋର
ଏ ଦେହ ଏହୁ ବିଶ୍ବର ପରାଣମଣି ।

ଯେଣୁ ଝୁରି ଝୁରି ଖିନ୍ନ ହେଲି ମୁଁ ଜୀବ ଜୀବନ
ନାହିଁ ମୋର ଗତି ଆନ ରଖ ରମଣି ।
ମୋ ବେଦନା ଯେନ ରେ ବାରେ
ରଖିବ କେ ତୋହ ବିନା ଜଗତେ ମୋତେ । ୧୬ ।

ତୋର ମୋର ପ୍ରୀତି ଭାବ ଭାବିଲେ କହି ନୋହିବ
ପହୁଡ଼ି ଥିଲେ ତୁ ବନ୍ଧୁ ! ପଲଙ୍କପରେ
ମୁଖ ଅନ୍ତର ହେବାରେ ନ ଶୁଅଇ ତୋ ପଛରେ
ହିଆକୁ ହିଆ ଲଗାଇ ଭିଡ଼ ମୁଁ ତୋରେ
ଶୋଇ ଥାଇ ୧ ରୂପେ ମୁହିଁ
ମୋ ଲେଉଟିଲେ ଲେଉଟୁ ଚନ୍ଦ୍ରମାମୁହିଁ । ୧୭ ।

ଏତେ ଅନ୍ତର ନ ସହି ସୃହାଇଲା ଯେବା ବିହି
ମୋ ବିନୁ ବିଚ୍ଛେଦ ଦୁଃଖ ସହିବ କେହି
ଏକାନ୍ତେ କେତେ ଦିବସରେ ବଞ୍ଚିଥିବୁ ବିରହରେ
ଦୂର ହୋଇ ପ୍ରାଣବନ୍ଧୁ ! ରହିଲୁ କାହିଁ
ଯେବେ ମୁଁ କି ବୁଦ୍ଧି କରିବି
ନ ଦେଖି ତୋ ବଦନ ମଦନେ ମରିବି । ୧୮

ଆହା ରେ କମଳମୁଖି ତୋ ବିନୁ ହେଲି କାମିଣୀ
ରକ୍ଷିବାକୁ ସାହା ନାହିଁ ତିନି ଭୁବନେ
କରିବୁ ଯେବେ ନିରାଶ ନାଶ ଯିବ ତୋର ଦାସ
ନାଶରେ କି ପଡ଼ିବ ଦୋଷ ହେଜ ତୁ ମନେ
ଗଲି ପ୍ରେମେ ଶରଣ ତୋରେ
ରଖିଥିଲୁ ପଣ ଲେଖି ଦେଇ ପୂର୍ବରେ । ୧୯ ।

ମନରେ ଯେତେ କଲ୍ମଷ         ସେ ଦିନ ହୋଇଲା ନାଶ
ଦେଖି ଗୃରୁଚନ୍ଦ୍ର ମୁଖ ମନ-କୁମୁଦ
ପ୍ରଫୁଲ୍ଲ ହୋଇ ଭୂରତେ         ବାସ ପ୍ରସରୁ ଜଗତେ
ହେଲା ସାଭଲାଷ ସେନ ଅତି ପ୍ରମୋଦ
ଜାଣିଲୁ ତୁ ମୋ ପ୍ରାଣପ୍ରୀତି
ସେ ଯେନ ମନରେ ଏବେ କଲୁ ଏ ସାଧ । ୩୦ ।

ତୋଳା ଖେଳାଇବା ଭଙ୍ଗୀ         ଶନ୍ତ୍ରଲେ ଏବେ ସୁଗଙ୍ଗୀ !
ଚଢନାତ୍ମକ ସାତ୍ତ୍ୱିକ ଯୋଖି ବନ୍ଧୁଛି
ମନେ ତୋ ମୁଖ-ଅରୁଣ         ନ ଦେଖି ଅଧିର ପ୍ରାଣ
ମୋର-ନେତ୍ର ପଙ୍କଜ ମ୍ଳାନକୁ ଭଜୁଛି
ଏଣୁ ନଷ୍ଟେ ଏହାର ଜୀବ
ଅନଙ୍ଗାନଳ ପର ପ୍ରାଣ ହେଲେ ତେଜବ । ୩୧ ।

ଏହା ଜାଣି ପ୍ରାଣପ୍ରିୟା         କାତର ହୋଉଛୁ ହିଆ
ନଷ୍ଟେ ଜୀବ ତେଜିବାକୁ ହୋଉଛୁ ମନ
ପୁଣି ହୁଅଇ ବର୍ତ୍ତର         ନାରୀ-ଶିରୋମଣି-ବର !
ତୋ ସଙ୍ଗ ହେବ ଅପରେ ଥିଲେ ଜୀବନ
ଏଣୁକରି ଏହାର ସତ—
ବଳୁନାହିଁ ଭାବ ଜୀବବନ୍ଧୁ ! ଜସୃତ । ୩୨ ।

ରସିକ-ରମଣୀବର !         ଧରୁଛି ତୋର ପୟର
ଥିବ ଯେତେ ଦୋଷ ମନେ ଦେନାକୁ ନାହିଁ
ସେବଣ ବେନ ଚରଣ         ପଶିଲୁ ତୋରେ ଶରଣ
ଦାସ ହୋଇ ପାଶେ ଥିବ ଚନ୍ଦ୍ରମାମୁଖି !

କହୁଛନ୍ତି ମୁଁ ଏହା ପ୍ରମାଣ
ତୋ ବଦନ ନ ଦେଖିଲେ ତେଜିବି ପ୍ରାଣ । ୩୩ ।

ଥିଲେ ତୁ ମୋ କୋଳେ ଧନ !   ତରଇ ମୀନ-କେତନ
ଅଧୀନ ହୋଇଣ ରହୁଥାଇ ମୋ ପାଶେ
ଜାଣି ଏବେ ତୋ ବିଚ୍ଛେଦ   କରୁଅଛି ପରମାଦ
ବିନୟ କହିଲେ ଦୟା ନ କରେ ଲେଶେ
ପ୍ରାଣ ନେବ ବିଚାରୁଅଛି
ଗର୍ବକରି ପୂର୍ବ ଅହଂକାର ସାଧୁଛି । ୩୪ ।

ଏ ଜୀବ ଅଟେ ଯାହାର   ସେ ତ କରଗଲା ପର
ଦେଖିମ କେ ଦୁଃଖ ମୋର ଏହି ସଂସାର
ନିର୍ଦ୍ଦୟ ମଦନ ଅତି   ଯେଣିକି ନାହିଁ ବିନତି
ଜୀବନ ଅଙ୍ଗକୁ ଅସି ହୋଇଲା ଭାର
ଅହେ କାମ ! କୋପ ଉପେକ୍ଷ
ବନ୍ଧୁ ଦରଶନ ଯାଏ ଏ ଜୀବ ରଖ । ୩୫ ।

ଶୁଣ ହେ ଶମ୍ବର-ଅରି !   କେଉଁ ଦୋଷ ମନେ ଧରି
ମୁଁ ଅରକ୍ଷ ମୋରେ କୋପ କରୁ କାହିଁକି
ଅନାଥ ଜନଙ୍କୁ ନାଶ   କଲେ ତୋର କେଉଁ ଯଶ
ହୋଇବ ଏହା ତୁ ମନେ ହେଜୁ ନାହିଁକି
ଏଣୁ ବାରେ ନିର୍ଦ୍ଦୟା ନୁହ
ଜୀରତି ଲଭିବ ଚିତ୍ତେ ସଦୟା ବହ । ୩୬ ।

ଜୟ ଜୟ ଜଗନ୍ନାଥ !   ହେଲି ମୁଁ ବଡ଼ ଅନାଥ
କର କି ନା କୃପା ବାରେ ବିନୟ ଯେଣି

ଏବେ ମୁଁ କେହ୍ନ ଏକାଳେ    ନ ରହ ପ୍ରିୟାର କୋଳେ
ତ କର ଏକାକେ କେଶ ଏନ୍ତୁ ରଜନୀ
ବନ୍ଧୁ ମୋର ରହିଲ ଦୂରେ
କଲେ କରୁଣା ତାହାଙ୍କୁ ଦେଖିବ ବାରେ । ୩୭ ।

ତୁମ୍ଭେ ତ ଆରତତ୍ରାଣ    ଆରତେ ଡାକିଲେ ଶୁଣ
ଏଥିରୁ ବଡ଼ ଆରତ ନାହିଁ ତ୍ରୈଲୋକ୍ୟେ
ଯେବେ ମୋ ପ୍ରିୟବତିଙ୍କ    ନ ଦେବ ମୋତେ କଷ୍ଟଙ୍କ
ଜାଣିଲି ଦୁଃଖୀ-ସୋଦର ବୋଲୁଅ କକେ
ଅଟେ ପ୍ରଭୁ ମହିମାମେରୁ
ଜଣାଉଛୁ ବାରେ ରଖ ଏ ଆରତରୁ । ୩୮ ।

ଦଂପତି ବନ୍ଧୁ ସଂସାର—    ସଂପତ୍ତିରୁ କଉଁ ସାର
ଜାଣିଛ ନାହିଁ ଯେହ୍ନା ଜାନକୀ ବିଚ୍ଛେଦେ
ନ ସହିଲ କି କଷଣ    ଆଜହୁଁ କର ଭୂଷଣ
ଲକ୍ଷ୍ମୀଙ୍କି ବହୁଛ ହୃଦେ ସ୍ନେହ ପ୍ରମୋଦେ
ଅନ୍ତରଯାମୀ ତ ନ ଜାଣ
ମୋତେ ଜଣାଇବାରୁ ହେବ କି କାରଣ । ୩୯ ।

ପଦ୍ମାଳୟା ପଦ୍ମବାସୀ    ପଦ୍ମାସନା ପଦ୍ମବାସୀ
ପଦ୍ମେ ପଦ୍ମ ଦେବ ଦଅ ବାଳାଙ୍କୁ ମୋର
ବ୍ରହ୍ମା ଆଦ ସୁର ନର    ଗନ୍ଧର୍ବ ଯକ୍ଷ କିନ୍ନର
ଚରଣେ ଶରଣ ଯାଉଅଛନ୍ତି ତୋର
ମୋ ଆରତ କେତେ ମାତର
ଜଗତଜନନୀ ! ମୋତେ ସୁଦୟା କର । ୪୦ ।

ଅନୁଭବେ ସବୁ ସିଦ୍ଧି ମୋହୋ ଛରର କି ବୁଦ୍ଧି
ଛଳୁଛ ଏମନ୍ତ ବାଧ୍ୟ ଯେଉଁ ତନ୍ତ୍ରରେ
ମହିଳା ଦୁଃଖ ବିନାଶ କରିବା କି ପରିତ୍ରୋଷ
ନ କରିବାରେ କି ଦୋଷ ଅଛି ଏଥିରେ
ଦୂର କଥାଙ୍କୁ ଅନୁସରି
ପ୍ରସନ୍ନ ମୋଠାରେ ହୁଅ ପରମେଶ୍ୱରି ! । ୪୧ ।

ଦରିଦ୍ରଙ୍କର ଦୁଃଖ ନ ହରି ହେ ପଞ୍ଚମୁଖ
ହର ନାମ କାହିଁପାଇଁ ବହୁଛ ଏବେ
ସ୍ମର ଶତ୍ରୁ ପଶୁଭବ ମନେ ନାହିଁ ପଶୁ ଭବ !
ଥିଲେ କି ଏ କଷ୍ଟ ମୋର ଥାଆନ୍ତା ଲବେ
ମହାପ୍ରଭୁ ହେ ମହାଦେବ !
ମୋତେ ଆଉ ଯୁବତୀ ବିଚ୍ଛେଦ ନୋହିବ । ୪୨ ।

ଯୁବତୀ ଅର୍ଦ୍ଧ ଅଙ୍ଗରେ ବହୁଛ ଯେ ଅନଙ୍ଗରେ
ଏ କଥାହିଁ ପ୍ରବେଶ କି ନୋହୁଛି ଚିତ୍ତ
ଯେଉଁ ଏହି ଅନୁରୋଧ ନ ଯେଉଁ ମୋ ଅପରାଧ
ପ୍ରାଣପ୍ରିୟାଙ୍କୁ ମୋହୋର ଦେବା ଉଚିତ
ସହଜେ ତ ବୋଲାଅ ଶିବ
ରମା ଭେଟ ନୋହିଲେ କି ହୋଇବ ଶିବ । ୪୩ ।

ଦୁର୍ଗେ ଦୁର୍ଗତି-ନାଶିନି ! ଦୁସହ ଦୁଃଖ ଧ୍ୱଂସିନି !
ମହାମାୟୀ ମୋତେ ଥରେ ହୁଅ ପ୍ରସନ୍ନ
ଜୀବ ଜୀବନ ବନିତା ଅଶେଷ ସୁଖ-ଜନିତା
ନିକଟରେ ଯେମନ୍ତ ମୋ ହେବ ଦର୍ଶନ
ତବ ପାଦପଦ୍ମେ ବନ୍ଦନ
ଭଣେ ଏହୁ ଛାଡ଼ ବନ୍ଧ-ଦୁର୍ଗ-ଗଞ୍ଜନ । ୪୪ ।

---

# ଅଷ୍ଟବିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ପ୍ରିୟା ବିଚ୍ଛେଦରେ ନରେଶ-ନନ୍ଦନ
ନିଜ ନଗରରେ ରହି
ସୁମନ-ଶରେ ଶରୀର ଶୀର୍ଣ୍ଣ କଲା
ଗାଢ଼ ଅନୁରାଗ ବହି । ୧ ।

କାନ୍ତାର ଅଭାବୁଁ କାନ୍ତାର ହୋଇଲା
ଚିନ୍ତାର ସେ ମୂଳହେତୁ
ଶୋକ-ସାଗରେ ବିବେକ ବୁଡ଼ିଯାଇ
ଭାଙ୍ଗିଗଲା ଧୈର୍ଯ୍ୟସେତୁ । ୨ ।

ନାଶର କାରଣ ଅସର ତହିଁରେ
ବାସର ରଜନୀ ହେଲା
ଅଙ୍କେତ ମୋ ଧନ ନାହିଁ ଏତେ ବୋଲି
ସଙ୍କେତ ପୂର୍ତ୍ତି ତେଢିଲା । ୩ ।

ବିରହେ ଏଣିକି ଜୀଇବି କେମନ୍ତ
ପରି ସେ କଲା ତ ମୋତେ
ସୁଦୟା-ହୃଦୟା! ଏତେକାଳେ କଲୁ
ନିର୍ଦ୍ଦୟା ଉଦୟା ଚିତ୍ତେ । ୪ ।

ପିତା ସଦନରେ ତେଣେ ଶଶିରେଖା
ଚିନ୍ତା ଗରୁତର କରି
ଦୁର୍ବ୍ବଳ ଦେହକୁ ଆଦର ନ କଲା
ବଲ୍ଲଭ ଗୁଣ ସୁମରି । ୫ ।

ବିରହେ ବହଳ ହୋଇବାରୁ କ୍ଷଣେ
ନ ରହେ ପୁରେ ଗୋପୁରେ
ଧନଜନ ପର ହନଙ୍କୁ ହରଇ
ମନ ନିଜ ପ୍ରିୟା ଠାରେ । ୬ ।

ପୂରୁବ ପୀରତି ସ୍ମରୁଥାଇ ହୃଦେ
ଝୁରୁଥାଇ ଏକା ବସି
ନ ବନ୍ଧଇ ଅଙ୍ଗେ ବାସ ଆଭରଣ
ନ କହଇ କଥା ହସି । ୭ ।

ଏମନ୍ତେ ମଧ୍ୟରେ ପରବେଶ ଅସି
ହିମ ଋତୁବର ହେଲା
ସତ୍ୱର ଦନଙ୍କୁ କ୍ଷୀଣ କର ଦେଇ
ଉତ୍ତର ବାତ ବହିଲା । ୮ ।

ବିମଳ ଶ୍ରୀବଙ୍କୁ ଦିନୁଁ ଦିନ ଦେଖି
କମଳ ମିଳାଇ ଗଲେ
ମଧୁ ଅମ୍ବରୁ ମଧୁକର ରାଜି
କ୍ଷୀଣ ଦଶାକୁ ବହିଲେ । ୯ ।

ଚନ୍ଦନ ଗନ୍ଧରୁ ଆଦର ଛୁଟାଇ
ବସନେ ରଖିଲେ ଜନେ
ତରୁଣୀ କୋଳକୁ ତରଣି କରକୁ
ନ ଛାଡ଼ିଲେ ନିଶିଦିନେ । ୧୦ ।

ପିଙ୍ଗଳ କୁନ୍ଦ କୋରକ ମୁଖ ଜନେ
ଫୁଲ୍ଲ ବେଗେ ସେବନ୍ତି

ପୁଷ୍ପିତ ହେବାରୁ ସରସମ ପୀତ—
ବଣେ ଶୋଭା ଦଣେ ଘିଉ । ୧୧ ।

ଏସନ ଋତୁକୁ ଦେଖି ନୃପ ପ୍ରିୟା—
ପ୍ରସନ୍ନ ମୁଖରୁ ଭାଷ
ହେମନ୍ତ ଗଲା ମୋ ହେମତନ୍ ହନ୍
ହେମନ୍ତ କି କର ନେବ । ୧୨ ।

ମହ୍ଲା ! ତୋ ସଙ୍ଗ ଜୋହ୍ଲାରେ ଦେଖ
ବହ୍ଲ ଉତ୍ତର ବାତ
ସହ୍ଲ ତ ହେବ ଦହ୍ଲ ସଜୀବେ
ରହ୍ଲ ଦୂରେ ମୋ ମିତ । ୧୩ ।

କ୍ଷିନ୍ନ ହନ ଦେଖି କ୍ଷିନଉଦସ୍ତ୍ରୀ ମୋ
କ୍ଷିନ ହନ୍ ହନୁ ହେବ
ଘଣଦା ମୋ ଶନା କଳପ ପରଏ
ଘଣ ଦାମ୍ପିନୀ ମଣିବ । ୧୪ ।

ହରସ ଅଧିକ ହୋଉଥିବ ବନ୍ଧୁ
ସାରସ ନୀରସ ଦେଖି
କାତର ହୋଇଣ ମାତର ବୁଜବ
ଉତ୍ତର ବାତକୁ ଅକ୍ଷି । ୧୫ ।

କୁନ୍ଦନ କେତକୀ ନନ୍ଦନ ତନୂରେ
ଚନ୍ଦନ ଯେନାସ ନାହିଁ
ତରଣି ତାପକୁ ବରଦ ତାପରେ
ତରୁଣୀ ଅସିବ କେହି । ୧୬ ।

ନିଦରେ କ୍ଷଣ ନ ରହିବ ମୋହର
ନିଦରେ ନୟନ କଷା
କହିଲା କଥା ନ ଘେନିଲାରୁ ମୋର
ସହିଲା ଧନ ! କି ଦଶା । ୧୭ ।

ସେବତୀ ଫୁଟିବା ଦେଖିବଣି ଅଛ
ମେ ବଢଶାର୍ବ ବୟସୀ
କୁନ୍ଦକ ବରନା ଶରଧାରେ କରେ
କୁନ୍ଦ ନ ଘେନିବ ଦସି । ୧୮ ।

ଭୁବନପାଡକୁ କୋଳେ ଥାଉଁ ମୋର
ସହି ନ ପାରଇ ଲବେ
ମୋ ରଢ ନ ପାଇ ବରଜିବ କେହି
ଧରଣୀମଣ୍ଡଳା ଯେବେ । ୧୯ ।

ବିଷ ମତ ହେଲା ଅଶନ ବେଶନ
ବିଷମ ତ ମଣୁଥିବ
ବିଷମ ଶର ସାରଥାଇ ନ ପୁଣ
ଅସମଅଙ୍ଗୀର ଜୀବ । ୨୦ ।

ଭୁଲନା ଯାହାକୁ ନାହିଁ ମହୀତଳେ
ଭୁଲନା ଏବେ ସେ ଗଲା
ଲଲନାମଣିର ପ୍ରେମ ଭଣା କାନ୍ତେ
ଏ ଅଯଶ ତ ଶୁଭିଲା । ୨୧ ।

ସରସବତୀ ଅନ୍ତର ହୋଇଗଲା
କରଷକୁ କର କଷ୍ଟ

ସହସ୍ର ଏ ବାଣୀ ବହନ୍ତି ଜୀବନ୍ତୁ
ହୋଇନ୍ତି ଦେହ ର ଅଣ୍ଡ । ୧୨ ।

ନ କରୁଥିବ ବିରହରେ ବାନ୍ଧଣୀ
ମୋ କରୁ ଗଳ୍ପ ସେ ଏବେ
ଯିବ ନ ତା ପାଶେ ହେବ ନ ମେଳ ମୁଁ
ଥିବ ନ ରହଣ ଜାବେ । ୧୩ ।

ଦରପଣମୁଖୀ ଦରପ ଅଭୁ ନ
ଦରପକ ରଖିଥିବ
ସାରସଗମନା ହରଷ ପାଶୋରି
ବିରସରେ ଜାଣି ନେବ । ୧୪ ।

ମନ୍ଦ ତ ସଙ୍ଗେ ନ ଗଲ ତ ତାହାର
ହେଲନ୍ତ ନିର୍ଦ୍ଦୟା ବଡ଼
ଲଳିତ-ଲପନା ବଳିତ ପଡ଼ନ୍ତ
ଦଳିତ ହେଲା ଏ ଜାଡ଼ । ୧୫ ।

ଅହୋ ରସବତି ! ତୋହୋବନ୍ତ ମୋତେ
ଅହାର ରୁଚନ୍ତ ନାହିଁ
ସପନ ପଥ ସେ ସୁଖ କେଶୋଗନ୍ତ
ଲପନ ଦେଖିବି କାହିଁ । ୧୬ ।

କରିବ ନ ଭୂର୍ଦ୍ଧି କସ୍ତବରଗଣ
ହରିବ ଦନ କେମନ୍ତେ
ଭରିବ କାମକୁ ମରିବ ଏଥର
ଝୁରି ଝୁରି ସିନା ତୋତେ । ୧୭ ।

ବରଷେ ସଙ୍କେତ ଜାଣିବାରୁ ମାର
ବରଷେ ଶର ମୋ ପରେ
ଅରୁଣ-ଅଧର ! ଏଣିକି କଲୁ ତୁ
ଦାରୁଣ ପଣକୁ ମୋରେ । ୨୮ ।

ପରାଣବନ୍ଧୁ, ବନ୍ଧୁଜୀବ-ଅଧର !
ଛାଡ଼ିଲ ଦନ୍ତୁ ମୋତେ
କାଲ କାଲ ପର ହୋଇ ନ ସରଇ
ଅଳପ କଳପ ଘଟେ । ୨୯ ।

ସଦନ ମଦନ କଦନରୁ ହେଲା
ବନ ବନପ୍ରିୟତ୍ରାସେ !
ନବୀନା ତୋ ବିନା ମୁଁ ବିନାଶ ନୋହୁ
କାମେ କାମେ ଗଲି ଗ୍ରାସି । ୩୦

ପଲଙ୍କ-ଅଙ୍କେ ନିଶଙ୍କେ ବସାଇ ମୁଁ
ପଲକେ ନ କରେ ଦୂର
ଏବେ ଏକାନ୍ତରେ ଅନ୍ତରେ ଅନ୍ତରେ
କୁନ୍ତ ମାରୁଥିବ ମାର । ୩୧ ।

ପଡ଼ିଲି କି ପାପେ ଛୁଡ଼ିଲି ସିନା ମୁଁ
ଛାଡ଼ିଲି ଯାହା ତୋ ସଙ୍ଗ
ନୋହିଲା କି ଦଶା ସହିଲା କି ଦଣ୍ଡ
ଦହିଲା ମଦନ ଅଙ୍ଗ । ୩୨ ।

କାମିନି ! କରିନ୍ଦ୍ରଗାମିନି ! ତୋ ବିନୁ
ଯାମିନୀ ଦିନ ନ ସରେ

ମନ୍ଥର ଗତି ତୁ ଅଭିଶପ୍ତ କଲୁ
ଏଥର ନସ୍ୱଣ ମୋରେ । ୩୩ ।

ଯେ ପରଶ୍ୱର ପଶ୍ୱର ଛାଦାଠାରେ
ଶ୍ୱର ପ୍ରଶ୍ୱର ଉଚିତ
ବାଲୀଶ ବାଳଶ ପଭ ଦୋଳ କଲୁ
କୁଳଣ ପଶ୍ୱଏ ଚଉ । ୩୪ ।

ନସ୍ୟୁନେ ମୋର ତୁ ଥାଉ ପ୍ରାଣବନ୍ଧୁ
ଶସ୍ତୃନେ ପିଠି ନ କରୁ
ଚସ୍ୟୁନେ ଏବେ ତା ବସି ବଶ୍ୱରଲେ
ଅସ୍ୟୁନେ ଦଶୁ ଉମ୍ନୋରୁ । ୩୫ ।

ରସିକାମଣି ଖଡ଼ ଚୋଖେ ସଢ଼ିଲ
ନଶି କାମ କାମଶରେ
ପ୍ରତୀକଶୋଧନ ! ପ୍ରତୀକାର ଅଉ
ନାହିଁ ତୋ ଅନ ଅନରେ । ୩୬ ।

ବଧ୍ୟ ଅବଧ୍ୟ କରିବାରୁ ପ୍ରବୃତ୍ତି
ତୋ ପାଶରୁ ହେଲ ଦୂର
କଉମ ଭରମଶୋଷ ! ନ ଜାଣିଲ
ମରମରେ ମାରେ ମାର । ୩୭ ।

ତୋ ଭାବ ଭାବନା କଶ କଉଗତ !
ଜୀବନ ବହୁଛି ମାଧ
ଯେଣେ ଅନାଇଲେ ତେଣେ ଦିଶୁ ତୁହି
ଛଣେ ସିନା ଏକ ଚନ୍ଦ । ୩୮ ।

ବନ ବନକ ପୀରଛି ଚଣ୍ଡ-ଭ୍ରାବଁ
ରଣ୍ଡ ରଢ ନ ଜାଣିବ
ଭାବ ଭାବନ ! ସେମାନ ମାନସରେ
ଦଣ୍ଡେ ଦଣ୍ଡେ ଅଛୁ ଜୀବ । ୩୯ ।

ସୁଷମ ଅଙ୍ଗି ! ଥିବ କି ନାହିଁ ମନେ
କ୍ଳୁପ୍ତମବଣ୍ଡ ହୋଇଲୁ
ବନେ ସେ ବନେ ସେନେହ ନ ଛାଡ଼ୁ
ପାଶୁ ମୋର ଉଡ଼ିଗଲୁ । ୪୦ ।

ଜାଣେ ନ ଜାଣି ପଶ୍ୱିଗଲ ଏ ଭଙ୍ଗୀ
ଶିକ୍ଷା କଲୁ କାହାଠାରୁ
ହସ ହସ ହୋଇ ଫିଙ୍ଗିଲୁ ତହିଁକ
କେଶ-ସୁମନସ ହୃରୁ । ୪୧ ।

ବୋଇଲ ରେ ଧନ ! ପକାଇ ଦେଉଛୁ
କି କାଳେ କି ଦଣ୍ଡ ମୋତେ
ନୋହିବ ରଣ୍ଡ ନୋହିବ ରଣ୍ଡ ହେଲେ
ଯେନଥିବ କୋଳେ ତୋତେ । ୪୨ ।

ଏତେକ କେତେକ କେତକ-ଗୋଣ ! ରେ
ଯେ ଅନ୍ତର ନ ସହଇ
ଏ ବଚ୍ଛେଦରେ ହୃଦରେ ଭାବ ସେନ୍ତ
ଜୀଇଛୁ କେମନ୍ତ ହୋଇ । ୪୩ ।

ନାହିଁ ଅନ ଗଣ୍ଡ କାହିଁ ମୋ ଜଗଢ—
ମଣ୍ଡି-ମଣ୍ଡନ ! ତୋ ବିନା

ନୀରେଖ ଦେଇ ତୁ ନ ରଖିଲୁ ଯହୁଁ
କାମେ ଜୀବ ଯିବ ଯିନା । ୪୪ ।

ଏସନ ବଜ୍ରର ହୃଦେ କର ମାର
ଅଭେଦ ରସିକବର
ସଖାଆଶ୍ୱାସନା କରଣ ବସ୍ତ୍ରଲେ
ପୋଛିଲେ ବଦନେ ନୀର । ୪୫ ।

ତେଣେ ନରେଶ-ନନ୍ଦନା ଶଶିରେଖା
ପିତାସଦନରେ ଅଛୁ
ବଞ୍ଚିର ଦିନ୍ ମଦନ୍ତେ ଦୁଖୀ ହୋଇ
ହେମନ୍ତ ସମୟୁ ଗୃହୁଁ । ୪୬ ।

ବୋଲଇ ଦଇବ ଏଡ଼େ ଦାରୁଣ ତୁ
ପ୍ରାଣ ପିଣ୍ଡ ଚନ୍ନ କଲୁ
ମୋ କାନ୍ତ ପୀରତି ଏକାନ୍ତ ଛଡ଼ାଇ
ଏଣେ ଏତେ ଦୁଖ ଦେଲୁ । ୪୭ ।

ଜୀବନେ ଯେହୁ ଯାହାକୁ ନ ଭେଟିବ
କରଥାଇ ମନୋରଥ
କାହୁଁ କ ପ୍ରସଙ୍ଗ ପକାଇ ଦେଇ ତା
କ୍ଷଣକେ କରୁ ବ୍ୟର୍ଥ । ୪୮
ଜନନୀ ବ୍ରତ ସଂକଳ୍ପ କରଛନ୍ତି
ଏ କଥା କେ ଜାଣିଥିଲା
ବଙ୍କଲେ ଦେହ ଯେତେଦୂର ହୋଇଛି
କ କାଳେ କ ଦଣ୍ଡ ଦେଲା । ୪୯ ।

ସୁକୁମାର ନୃପ-କୁମାର ସେ ଏବେ
କି କରୁଥିବେଟି ବସି
ମୋ ଶନା ପଲଙ୍କ ଯୁଗ ମଣୁଥିବେ
ହରିବେ କେମନ୍ତେ ନିଶି । ୫୦ ।

ପ୍ରସନ୍ନ ନ ଥିବ ଅଶନକୁ ଦେଖି
ବସନ ମଣିବେ ଭାର
ଅବଶ ହେବାରୁ ସୁବେଶ ହେବେ କି
ଜୀବେଶ ଆଉ ମୋହର । ୫୧ ।

ଅୟନକୁ ମୋର ନୟନ କାବେଣି
ଶୟନ କରବେ ଧରା
ଚୟନ ନ ଥିବ କ୍ଷଣେ ଅଙ୍ଗେ ଆଉ
ପୟ ନ ରୁଚିବ ପରା । ୫୨ ।

ଜାଣି ତ ଅଧିକ ଏ ଶୀତରେ ବନ୍ଧୁ
ଉଷିତେ ନୋହିବେ ସୁଖୀ
ପଲଙ୍କେ ଆଉ କି ପଲକେ ଶୋଇବେ
ପଲକ ତେଜିବ ଆଖି । ୫୩ ।

ପାସୋରି ଥିବେ ସେ ମଶାରୀ ଦ୍ୱାର
ବିବଧ ସୁରତ ସୁଖ
ରୁଚିର ପୁରକୁ ଦୂର କରିଥିବେ
ଲକ୍ଷଣ ମଦନ ଦୁଃଖ । ୫୪ ।

ନ କହ୍ନ କଥା ଯେ କହେ ମୋ ସ୍ନେହରେ
କି କହ୍ନ ଏବେ ସେ ମୋତେ

ଯେମନ୍ତ ହୃଦରେ ଏମନ୍ତ ଦେଖିବେ
ଗତ କେ ମୋର ଜଗତେ । ୫୫ ।

ଛ କଲ୍ଲ ମନ ଛରମ କଲ୍ଲ ମାତ୍ରା—
ସତ୍ୟରେ ମୋର ଛ ସୁଖ
ଯେ ପ୍ରାଣପିଣ୍ଡେ ଅଧିକାଂଶ ମଦନ—
କାଣ୍ଡେ ସେ ଲଭଲେ ଦୁଃଖ । ୫୬ ।

ଦ୍ୱରଷ ଦିନକୁ ଦିନ ବୃଦ୍ଧିଥିବ
ବରଷ କଣ୍ଠକୁ ଚନ୍ଦ୍ର
ଗତକଥା ଭାବି ଝୁରିବାରୁ ଯିବ
ଲୋତକରେ ଉର ଭିନ୍ନ । ୫୭ ।

ମକର-କେତୁକୁ ନ ଡରନ୍ତି ସେହୁଁ
ମୋ କର ଧରନ୍ତି ଦିନ
ଏକା କି କରିବେ ଦକାଇ ହୋଇ ସେ
କ୍ଷିନ୍ନ ହେବେ ଦିନ୍ ଦିନ । ୫୮ ।

ଉରରୁ ମୋତେ ଯେ ଦୂର ନ କରନ୍ତି
ହିମ ପବନକୁ ଡରି
ଏକାଳ ନିଶିକି ବସି ନେବେ କେହ୍ନ
ଉଜାଗରେ ଝୁରି ଝୁରି । ୫୯ ।

ନରତ ଅନୁସରଣ କରିଥାନ୍ତି
ସୁରତ ଆଶାରେ ମୋତେ
ନ ଦେଖି ସେ ଭାବ କି ଦେଖି ଏଣିକି
ନିର୍ବାଣ ବହିଲେ ଚିତ୍ତେ । ୬୦ ।

ଅପିଲି ମୁଁ ଯାହା ଜାଣିଲି ତାହାଙ୍କୁ
ଲୁଚିଲି ଦୁଖ—ସଗରେ
ନୃପତି ନନ୍ଦନ ମୋ ପତି ଅହା ସେ
ବିପତ୍ତି ସହିବେ କେତେ । ୬୧ ।

ନୟନୁ ନୀର ନିରବଧି ଢାଳିବେ
ଅବଧିକି ମୋର ଚିନ୍ତ
ଅଗତି ହୋଇଣ ମଦନ-ସାୟକେ
ଗାର ତ କରିବେ ଚିତ୍ତ । ୬୨ ।

ବିକଳ୍ପ ବେଳକୁ ଛାଡ଼ି ଏଣେ ତାଙ୍କୁ
ଚଳିଲା ଚରଣ କେହୁ
ଭୁକ୍ତି ଯା'ରେ ଜୀବ ଯତନେହେଁ ନ ରହ
ପାନ୍ଥ ଯା'ରେ ହୃଦ ଭୁହୁ । ୬୩ ।

ଏ ରୂପେ ବିଳାପ କଳାପ-କୁନ୍ତଳା
ରଜନୀ ଦିବସେ କରୁ
କାନ୍ତ ପୀରତି ଏକାନ୍ତରେ ଭାବିଣ
ହେମନ୍ତ ସମୟ ହର । ୬୪ ।

ଯେ ଯେତେ କାମନା କରିଥାଉ ନୋହେ
ଦଇବକୁ ବଡ଼ କେହୁ
ବିଚ୍ଛେଦ ଦଶାରୁ ଶିରଚ୍ଛେଦ ଭଲ
ବାଙ୍କ-ନଗ୍ର-ଭଣ କହୁ । ୬୫ ।

---

## ଊନବିଂଶ ଛାନ୍ଦ

ଦୂତୀଏବାରମାସୀ ବାଣୀରେ

ଶିଶିର ସମୟ ପ୍ରବେଶ ହୋଇଲା ନିଶିର ବୃଦ୍ଧି ସହିଁରେ ହେ
କୁଜ୍‌ଝଟୀ ପ୍ରକର ସକଳ ଦିଗରେ ଉତ୍କଟ ଗନ୍ଧ ସହିତ ହେ
ରସିକେ, ଦିବସ ହୋଇଲା କ୍ଷୀଣ ହେ
ଦକ୍ଷିଣ ଦିଗକୁ ଦିବସ-ନାୟକ ଲକ୍ଷିଣ କଲେ ଗମନ ହେ । ୧ ।

ତୁଷାର ପତନେ କମଳ କାନନ ନିସାର ଭାବ ଭଜିଲେ ହେ
ସୁଷମ ହୋଇଣ କୁନ୍ଦ କରବୀର କୁସୁମବନ୍ତି ହୋଇଲେ ହେ
ରସିକେ, ତପନ ସଲିଳ ସୁଖ ହେ
ଯାମିନୀ ଦିବସେ ଜନେ ନ ଛାଡ଼ିଲେ କାମିନୀ ଉରଜ ପାଖ ହେ । ୨ ।

ଉତ୍ତର ପବନ ବହିବାରୁ ଅତି କାତର କେହୁ ହୋଇଲା ହେ
ସଂଜର ଲଂଘଣ କାମଣରେ ଦ୍ୱାର ପଞ୍ଜର ବନ୍ଦ କୁହିଲା ହେ
ରସିକେ, ମଶାର ସଦନେ ରହି ହେ
ଚତୁରକୁ ବନିତା ଉରୁ ଉରେ ଦେଇ ଶୀତକୁ ଗଣିଲେ ନାହିଁ ହେ ॥

ଅଦର ବୃଦ୍ଧିକୁ ରୁଚର ହୋଇଲେ ବଦରୀ ଫଳସଫଳେ ହେ
ସୁରଙ୍ଗ ଦଣିମ୍ବ ଅତିଶଯ୍ୟ ହୋଇ ନାରଙ୍ଗ ପାଚିଲା ଡାଳେ ହେ
ରସିକେ, ନେତ୍ର ହେଲେ ପ୍ରଫୁଲ୍ଲିତ ହେ
ଶିବା ଧ୍ୱନି ସବୁଦିଗେ ପ୍ରସରିଲା କାମରେ କାମୁକେ ମତ୍ତ ହେ । ୪ ।

ଏ ଋତୁ ଶୁହିଁ ନରପତି ନନ୍ଦନ ଫୁଲଶରେ ଦୁଃଖୀ ହୋଇ ହେ
ନିଜ ପ୍ରିୟତମା ତରୁଣୀ ଉତ୍ତମା ଶଶିରେଖା ମୁଖ ଧ୍ୟାଇ ରେ
ରସିକା, ଏ କାଳେ ଏ ଦଣ୍ଡ ଦେଲୁରେ
ପରସନ କର ବରଷ କଣ୍ଠରେ ପିତାସଦନକୁ ଗଲୁ ରେ । ୫ ।

କ୍ଷଣେ ନ ଦେଖିଲେ ବଦନ ଚୋଦୋର ଅନ୍ଧାର ଦିଶଇ ମୋତେ ରେ
କ୍ଷଣକ ଏବେ ଯୁଗପରି ହୋଉଛି କ୍ଷଣଦା ନେବି କେମନ୍ତେ ରେ
ରସିକା, ସହି ନ ଥିଲି ଏ ମାନରେ
ସୁଜାଣ ରମଣି ! ସୁଦେଷ୍ଣିରେ ପଖି ହନେ କର ନାହିଁ ମାନ ରେ । ୬ ।

ସ୍ନେହ-ଜଳ ସିଞ୍ଚି ମୋ ଆଶା-ତରୁକୁ କ୍ରମରେ ବଢ଼ାଇ ଦେଲୁ ରେ
ଫଳିବା ବେଳକୁ ବିଚ୍ଛେଦ-କୁଠାର ଯୋଗେ ତା ଛେଦନ କଲୁ ରେ
ରସିକା, ଏ ଦୋଷ ହେବ କାହାର ରେ
ହରିଣ-ନୟନା କରିଣ ବିବେକ ନ କଲୁ ଏହା ବିଗ୍ଭର ରେ । ୭ ।

ଏ ଶୀତରେ ତୋହ ବିରହିତ ଅନ୍ତର ଏବେ ବି କରିବ କହ ରେ
ମକର ଦୁସହ ମକର ପରାଏ ଗ୍ରାସ କରୁଅଛି ଦେହ ରେ
ରସିକା, କାମ-କୋପ ପୁଣି ବଢ଼ି ରେ
ଦଣ୍ଡିକୁ ଦଣ୍ଡ ହୃଦରେ ଦଣ୍ଡ ଅଛି ନ ଥିବାରୁ ତୋହ କୋଡ଼ ରେ ॥

ଶପଥ ରଖିଥାଉ ସୁରତ ସମରେ ଅଧର-ମଧୁ ପିଆଇ ରେ
ଅଙ୍ଗୀକାର କରି ଶରଣ ରଖିଛି ଅନଙ୍ଗ-ଶରୁ ଜିଆଇ ରେ
ରସିକା, ଅନ୍ତର କଲୁ ତ ଏବେ ରେ
ମନ୍ତ୍ର ପରି ଯେ ଯାହାକୁ ନ ଛାଡ଼େ କେମନ୍ତେ ରହିବ ଜୀବେ ରେ ॥

ଶୟନେ ସ୍ୱପନେ ଦେଖିଲି ଦନରୁ ନୟନରେ ଘର କଲୁ ରେ
ଅନୁଗତ ହୋଇ ଅନୁସରିବାରେ ସାକ୍ଷାତେ ପ୍ରସନ୍ନ ହେଲୁ ରେ
ରସିକା, ପୀରତି ରତି ବଢ଼ାଇ ରେ
କି ପାପବଶୁଁ ଅନ୍ତର ହୋଇଗଲୁ ଶୋକ-ସରିତେ ବୁଡ଼ାଇ ରେ ।୧୦।

ଏତିବାକୁ ଏଡ଼େ ପୀରତି ବଳାଇ ଛାଡ଼ିବାକୁ ସତ କେହି ରେ
ଅପରି ମନ ବଚନ କର୍ତ୍ତବ୍ୟରେ ଅପରାଧ ମୋର ନାହିଁ ରେ

ରସିକା, ଆଶ କରଥିଲି ତୋତେ ରେ
ଦାସ କର ଏବେ ନାଶ କରିଗଲୁ କି ବିଚାର କରି ଚିତ୍ତେ ରେ ।୧୧।

ବରନ୍ଧ-କୁନ୍ତଳା ବିରହରେ ତନୁ ନ ରହଇ ଅସ୍ଥି ହୋଇ ରେ
ସୁଖରେ ତୁ ପିତାସଦନକୁ ଗଲୁ ମଦନରେ ମୋତେ ଦେଇ ରେ
ରସିକା, ହାରିବି ଯେବେ ମୁଁ ଜୀବ ରେ
ମହାରଜତ ଗଉରି ! ବିଶ୍ୱରକୁ କାହାର ଅଯଶ ହେବ ରେ । ୧୨ ।

ହୃଦୁ ବଚନରେ ଆଶ୍ୱାଦିଣ କହୁ ପୂରବ ପୀରତି କାଲ ରେ
ଦେଇ ଉଦନ୍ତକୁ ମଦନ-କୁନ୍ତକୁ ମୋ ହୃଦୁ କାଢ଼ିଲୁ ବଳ ରେ
ରସିକା, ଚଖାଇ ପୀରତି-ସୁଧା ରେ
ଆଶା ପୂର୍ଣ୍ଣି ନୋହୁ ନାଶ କରିଗଲୁ ଗୋପି ସୁକୁମାରି ମୁଗ୍ଧା ରେ ।୧୩।

ବିଧୁମୁଖି ! ନବ ନଥିବନେ ପରା ନ ଛାଡ଼ିବ ଥିଲୁ କହୁ ରେ
ଅମର-ମୋହନ ! ଏବେ କି ସେମାନ ସ୍ମରଣ ହେଉ ନାହିଁ ରେ
ରସିକା, ମନୁ କି ଗଲା ପାସୋର ରେ
ନିରାଶ କଲେ ଏଣିକି ନ ଜୀଇବ କିଣିଲା ସେବକ ତୋର ରେ ।୧୪।

ନ ଦେଖ ବିନୟ ଅନୁସରଣକୁ କି ଦେଖ ଛାଡ଼ିଲୁ ମୋତେ ରେ
ଥିବାବେ ପାଶେ ତୁ ସେବାରେ ହେଲେ ତ ଅଳସ ନ ଥାଇ ଚିତ୍ତେ ରେ
ରସିକା, ବିବେକ ତୋ ପରା ବୁଝ ରେ
ବନଜ-ବଦନା ଦାସ ନାଶେ ପଛେ ଶୋଭନା କରିବୁ ନାହିଁ ରେ ॥

ବାରେଣୀ ମଦନ ଶରକୁ ନିରତ ତରୁଣି ! ପିଲା ତୁ ମୋର ରେ
ଛାଡ଼ିଲାରୁ ଏବେ ପଡ଼ିଲା ବିପତ୍ତି ନାହିଁ ଆଉ ପ୍ରତୀକାର ରେ
ରସିକା, ଏ କାଲ କବଳ କଲାରେ
ଏତେ କହି ବୀର ଦଇବ ସୁମତି ଲଲାଟରେ କର ହେଲାରେ । ୧୬ ।

ଏମନ୍ତ ରଭୁକୁ ଦେଖି ନୃପସୁତା ଶଶିରେଖା ପିତାସ୍ଥରେ ହେ
ବୋଲଇ ଏ କାଳ କେମନ୍ତେ ହରିବ ମୋ କାନ୍ତ ରହିଲେ ଦୂରେ ହେ
ରସିକ, ଅଣଆସୃତ୍ତ ମୋହୋର ହେ
ଘଟିଲା ଯାହା ଏ ଦୋଷ ନ ଦେଖାମ ଯହିଁଥିଲେ ମୁଁ ତୁମ୍ଭର ହେ ॥

ଆସିବା ବେଳକୁ ଏଣିକି ଛାମୁରେ ଆସିଅଛୁ ଯାହା କହୁ ହେ
ସଙ୍କେତ ପୂରିଲେ ପିଣ୍ଡେ ପ୍ରାଣ ଥିଲେ ଦଣ୍ଡେହେଁ ରହିବ ନାହିଁ ହେ
ରସିକ, ଚିନ୍ତା ନ କରିବ ଲେଶେ ହେ
ମନ ବଚନ କର୍ତ୍ତବ୍ୟ ଯେ ନ ଥାଇ ଛୁଁଅଇ ଦଇବ ବଶେ ହେ । ୧୮

କାହାକୁ କହିବ ଅହା କେ କରିବ ମୋହିଲାଗି ସବୁ ହେଲା ହେ
କାମ ବାମ ହୋଇ ତୁମ୍ଭ ବିନୁ ଏଣେ କ୍ଷଣରେ ଶରୀର ଦହିଲା ହେ
ରସିକ, ବିଷପରି ସବୁ କଥା ହେ
ମନକୁ ଆସୁଛୁ ଭେଟ ଯାଏ ପ୍ରାଣ ରହିବ ନାହିଁ ସର୍ବଥା ହେ । ୧୯ ।

ମୋର ତ ପ୍ରତିବନ୍ଧକ ହୋଇ ମାତା ଫକାଲରେ ଅଛୁ ଲଟ ହେ
ଦଣ୍ଡରେ ଏଥି ଉତରେ ଥରେ ମୋତେ ଦେଇ ପାରିବଙ୍କି ଭେଟ ହେ
ରସିକ, ତୁମ୍ଭେ ମହାରାଜା ସୁତ ହେ
ମୋ ଘର ପାଇଁକି ଏଥକୁ ଆସିବ ଏତ ନୁହଇ ଉଚିତ ହେ । ୨୦ ।

ତଥାପି ଅନୁରାଗରେ ତୁମ୍ଭେ ଅନୁଗତ ଜନଠାରୁ ଊଣା ହେ
ସ୍ନେହ ଯେଣ ଚିତ୍ତେ ଭରସା ହେଉଥାଇ କରିବ ତୁମ୍ଭେ କରୁଣା ହେ
ରସିକ, ହେଲିଣି ନବମ ଦଶା ହେ
ତୁମ୍ଭ ଭାବମାନ ଭାବି ମାନସରେ ସରୁ ନାହିଁ ଦିନ ନିଶା ହେ । ୨୧ ।

ଏରୂପେ ବିଳାପ ଶଶିରେଖା କରୁ ଶଶିକଳାକେ ରହିଲ୍ଲ ହେ
କାନ୍ତ ଘକେଭଙ୍କୁ ଚନ୍ଦ୍ରାକର ମାଝ ଜୀବନ ପିଣ୍ଡେ ବହିଲା ହେ
ଉଦିକେ, ଶେଷ ଏ ଶିଶିର ଋତୁ ହେ
ଭଣେ ପଦ୍ମନାଭ ବନ୍ଧହୁର୍ଗଈଶ ବିରହୀ-ମାରଣେ ହତୁ ହେ । ୨୨ ।

---

# ତ୍ରିଂଶ ଛାନ୍ଦ

ଶିଶିର ଅନ୍ତରେ ହେଲା ପ୍ରବେଶ ବସନ୍ତ
ବହିଲା ମନ୍ଦ ପବନ ପକ୍ଷିଣେଲେ ଚୂତ । ୧ ।

କୁହୁ କୁହୁ ହୋଇ ମତ୍ତ କୋକିଳ ଭାଷିଲେ
ମାନିନୀମାନଙ୍କ ମନୁ ମାନ ବିନାଶିଲେ । ୨ ।

ଫୁଟିଲେ ଚମ୍ପକ କୁରୁବକ ନାଗେଶ୍ୱର
ବକୁଳ ମାଧବୀ ନବମାଳିକା ପ୍ରକର । ୩ ।

ଦେଖି ଏହା ଯୋଗିଜନ କଲେ ଚିତ୍ତେ ଭୟ
ଶଙ୍କରଙ୍କୁ ଭଜି ତହୁଁ ହୋଇଗଲା ଲୟ । ୪ ।

ହୃଦୟ ହେବାକୁ କାମ ପ୍ରତାପ ତହିଁରେ
ଖଞ୍ଜିଲେ ଶରଜ ସଖା ବସନ୍ତ ଭୁଲରେ । ୫ ।

ଅଗିଅଣି ମଳୟ ମରୁତ ପବେଣରୁ
ସଜ ହେଲେ କୁସୁମେ ପଦାନ୍ତ ସବୁ ତରୁ । ୬ ।

ଭ୍ରମର ଝଙ୍କାର ଛଳେ ନଶାଣ ବାଜିଲା
କୋକିଳ ମଙ୍ଗଳ ଗାୟନଙ୍କୁ ପ୍ରକାଶିଲା । ୭ ।

ହେବଲେ ଛଳକୁ ଛୁରିଅନା ନାଗେଶ୍ୱର
ଭୃଙ୍ଗ ଶଙ୍କା ଜାତ ହେଲା ବିରହି-ହୃଦର । ୮ ।

ଦେଖି ଏକାଳକୁ ନେହେ ନୃପବର ସୁତ
ପ୍ରାଣପ୍ରିୟା ସହିତେ ହୋଇଲା ମୋଦ ଗତ । ୯ ।

ସଖୀ ଅଣସନା କରି ବସାଇଲେ ତୋଳ
ବୋଳ ଦେଲେ ଅଙ୍ଗରେ ଉଶୀର ଗନ୍ଧ ଗୋଳ । ୧୦ ।

ଷଣକ ଅନ୍ତରେ ମୋହ୍ନ ଚେତନା ଲଭଣ
ବୋଲଇ ଦଇବ ଭୁହ୍ନ ଅତ୍ୟନ୍ତ ଦାରୁଣ । ୧୧ ।

ଯେ ଯାହାକୁ ପଲକେ ଅନ୍ତର ନ କରଇ
ସେ କାଳେ ତାହାକୁ ଦେଲୁ ପାଶରୁ ଛଡ଼ାଇ । ୧୨ ।

ତହିଁ ପୁଣ ଅନ୍ତରେ ରହିଲା ଜୀବ ଯାହା
କ କାଳେ କ ଦଣ୍ଡ ଦେଲୁ ଅରେ ଦେମଦେହା । ୧୩ ।

ଘଡବାକୁ ବସ୍ତୁର ହୃଦରେ ଥିଲା ଯେବେ
ପୀରତ ମୋ ସଙ୍ଗେ କପାଁ ବଢ଼ାଇଲୁ ତେବେ । ୧୪ ।

ବେଲହୁଁ ନଗଶ କରଥିଲେ ଏତେ ଦୁଃଖ
ନ ଦଅନ୍ତ କାମ ମୋତେ ପ୍ରହାର ବଶିଖ । ୧୫ ।

ଅନୁରାଗ ଜାତ କର ସେହେଦୂର କଲୁ
ଜାଣ୍ଟ ଜାଣ୍ଟ ନଜ ପରଜନକୁ ନାଶିଲୁ । ୧୬ ।

କ କରବ ପ୍ରାଣ-ପ୍ରିୟତମା ଶଶିରେଖା
ସ୍ୱପ୍ନେ ହେଲେ ଦନେ ମୋତେ ଦେଲୁ ତାହ୍ନ ଦେଖା । ୧୭ ।

ପବ୍ାଣରୁ ଅଧିକ ଯତନ କରୁ ମୋତେ ।
କରୂପେ ବସ୍ତବ ଏହା ନ ଚେନାଲୁ ଚତ୍ତେ । ୧୮ ।

ଚେନଥାନ୍ତ ଯାହାକୁ କୁସ୍ତମ-ଶଜ୍ୟା କର ।
ଘନକେଶି ! ତାକୁ ଏଡ଼େ ନବ୍ରଶ କ କର । ୧୯ ।

ତୋ ଦନ ଖ୍ୱନ୍କ ଭବ ଭ୍ୱବଲେ ହୃଦରେ ।
ଚନ୍ଦ୍ରା ବହ ଲୋତକ ପୂରଇ ନୟନରେ । ୨୦ ।

ମୋ ଘିବାକୁ ପୁରଦ୍ୱାରେ ହୋଇଥାଉ ଉଭା ।
ଷପେ ବାସ ଉଦ୍ଭଳ ଦଶଇ ଯହୁଁ ଶୋଭା । ୨୧ ।

ଯୋଗରେ ବେଗରେ ମୋ ଅଙ୍ଗରେ ଯେବେ ପଡ଼ ।
ଉଦବାସେ ନ ଅଣେ ଉଦନ ମଦେ ପୀଡ଼ୁ । ୨୨ ।

କାହରେ ପାଲଙ୍କ ଶୁହିଁ ପୁରେ ପଶିବାର ।
ଉତ୍ସେ ନ ଉଦ୍ଧ ରେ ହୋଇବ ଗୋଚର । ୨୩ ।

ଆନ କି କହୁବ ଧନେ ମାନ କରନାହୁଁ ।
ଏଭବ ମାତକ କ୍ଷଣେ ମଜ୍ଜନରେ ବହୁ । ୨୪ ।

ଚେଭାଇ ଏମାନ କାମ କରୁଅଛୁ କୋହ ।
ତୋ ଅଭାବ ହୋଇବାରୁ ବଢ଼ୁଛୁ ବିରହ । ୨୫ ।

ଅଲପ ଦନରେ ଯେତେ ଯେତେ ଭାବ ଦେଲୁ ।
ଅବନୀକ ଅମରପଦକୁ ତୁ ଆଣିଲୁ । ୨୬ ।

ଚନ୍ଦ୍ରହାସି ! ଦନେ ତୋତେ ଚନ୍ଦ୍ର କରଣରେ ।
ଉପାଇ ମଦନେ ବଳେ ବସାଇ ଅଙ୍କରେ । ୨୭ ।

ଚବୁକରେ କରକୁ ନବେଶି ଶୁଣ୍ଠୁ କହ ।
ସୁରତ ମାଗିଲି ତୁ ସମ୍ମତ କଲୁ ନାହିଁ । ୨୮ ।

ତହୁଁ ପୁଣ ପଡ଼ିଲି ମୁଁ ଚରଣ ତଳରେ ।
ତୋଳ ପ୍ରାଣବନ୍ଧୁ ! ବସାଇଲୁ ତୁ କୋଳରେ । ୨୯ ।

ମାତ୍ର କାମେ ଉତ୍ତ ଯାହା ଦେଇଅଛୁ ଗୋର !
ମନରେ ପଡ଼ିଲେ ଧନ ! ପାସୋର ନ ପାର । ୩୦ ।

ଦନେ ଧାନରେ ବୋଇଲି ଶୁଣୁ ହେମଦେହା ।
ବନତ ହୋଇଣ ଦନେ ମାଗିଥିଲି ଯାହା । ୩୧ ।

ନ କହ ବୋଇଲୁ ବନ୍ଧୁ ସୁରତ ବସ୍ତାନେ ।

ସମର୍ପି ଦେଉଛୁ ନାଥ ଯାହା ଅଛୁ ମନେ । ୩୨ ।

ଶୁଣି ଏ ବାଣୀକି ଚୋର ଧଇଲି ଚରଣ ।
ଦୋ ଭୁଜ ମୋ ଗଳେ ଦେଇ ପଶିଲି ଶରଣ । ୩୩ ।

କହିଲ ରେ ଧନ ! ମୋର ଶରଧା ଯହିଁକି ।
କରୁ ଅଛୁ କସ୍ତଗଢ ନିଷେଧ ତହିଁକି । ୩୪ ।

ଯେ ଯାହାଙ୍କୁ ବନ୍ଧ ହୋଇ ଥାଇ ଜୀବନରେ ।
ମନ୍ଦଗଢ଼ ମନାସ୍ଥ ନି ରଖି ତାହାଠାରେ । ୩୫ ।

ଆନ ଅଛୁ ତୋ ବିନା ମୋହର ଆନ ନାହିଁ ।
ଜୀବ ରଖ ସୁରଭି ଦେଇଣ ଗୃହମୁହିଁ ! । ୩୬ ।

ଏ ବଚନେ ଭଙ୍ଗୀରେ ଯା କଲୁ ସ୍ୱୀକାର ।
ଛାଡିଲେ ସେମାନ କାମ କରଇ କାତର । ୩୭ ।

ଏତେ କହି ମୋହ ଗଲା ନରେଶ-ନନ୍ଦନ ।
ସଖା ମୁଖେ ନୀର ସିଞ୍ଚି କଲେକ ଚେତନ । ୩୮ ।

ତେଣେ ପିତା ସଦନରେ ନରେଶକୁମାରୀ ।
ରହୁ ଗୃହିଁ ହୋଇଲା ମଦନ ଶରେ ଘାରି । ୩୯ ।

ଅଶନ ବସନ ତେଜି ପ୍ରସନ୍ନ ନାସିଲା ।
ଏକା ପ୍ରିୟତମଠାରେ ମନ ବୃତ୍ତି ଦେଲା । ୪୦ ।

ବୋଲଇ ଦଇବ ଆଣି ଦେଲୁକୁ କି ଦଣ୍ଡ ।
ପରାଣରୁ ଭିନ୍ନ କରି ରଖାଇଲୁ ପିଣ୍ଡ । ୪୧ ।

ମୋ ପ୍ରାଣବଲ୍ଲଭ ମୋତେ ନ ଛାଡ଼ନ୍ତୁ ଷଣେ ।
ଏବେ ଏକା ମୂର୍ଚ୍ଛିତ ହୋଇବେ କାମବାଣେ । ୪୨ ।

ବୋଲୁଥିବେ ଦାରୁଣ ହୃଦୟ ପ୍ରିୟା କଥା ।
କାହ୍ନୁଁ କି ବୁଦ୍ଧିରେ ପଡ଼ି ଛାଡ଼ି ମୋତେ ଗଲା । ୪୩ ।

ଅଛିଲ ମୁଁ ଏଣେ ପିତା ମାତା ସତ୍ୟବ୍ରତେ ।
ବିରହେ ଏହା ସେ ନ ଦେଖନ୍ତେ କଦାଚତେ ।
ବୋଲୁଥିବେ ତରୁଣୀଏ ଏଡ଼େକ ନିଷ୍ଠୁର ।
କେଡ଼େ ସ୍ନେହ କରି କଲ ଜଣଯାନ୍ତ୍ର ପର । ୪୫ ।

ଏହା ଚିନ୍ତିବାକୁ ମୋତେ ଦଇବ ! ଭୁଲିଲୁ ।
ଲବେ ଯାକୁ ନ ଛାଡ଼ଇ ତାକୁ ଛାଡ଼ାଇଲୁ । ୪୬ ।

କି କରିବି ଏବେ ଏଣେ ଉପାୟ ନ ଦିଶେ ।
ମୋ ପ୍ରାଣବଲ୍ଲଭ ଏକା ରହିଲେ ବିରସେ । ୪୭ ।
ଦିନ ଦିନ କ୍ଷୀଣ ହୋଇବେଣି ମୋତେ ଚିନ୍ତ ।
ନିରତେ ଲୋତକ ବହି ଝୁର ଥିବ ଛନ୍ତ । ୪୮ ।

ହୃଦୟର ବ୍ୟଥାମାନ କାହାକୁ କହିବେ ।
ମୋହ ବିନୁ ଆନେ ବଶ ନୁହନ୍ତି ସେ ଲବେ । ୪୯ ।

ବଢ଼ୁଥିବ ବେଳୁବେଳ ବିରହ ଅଧିକ ।
ଏହାଭାବି ଜୀଇଛୁ ଯା ଜୀବନ ମୋ ଧିକ । ୫୦ ।

ଏତେ କହି ଶଶିରେଖା ହୃଦେ କର ଚାପି ।
ଝଟଣେ ଜ୍ଞାନ ହରାଇଲା ଅବନୀରେ ପଡ଼ି । ୫୧ ।
ପ୍ରିୟ ସଖୀ ମିଳ ହୋଇ ଆଶ୍ୱାସନା କଲେ
ଧୀରେ ବସ୍ତ୍ର ଅଞ୍ଚଳରେ ଅଶ୍ରୁ ପୋଛି କହିଲେ । ୫୨ ।
ଏମନ୍ତେ ବସନ୍ତ ଋତୁ ହେଲା ଅଧି ଶେଷ
ଭଣେ ବାଙ୍କି-ନୃପ ପଦ୍ମନାଭ ସ୍ନେହ ରସ । ୫୩ ।

---

# ଏକବିଂଶ ଛାନ୍ଦ

ରାଗ—ଶଙ୍କରାଭରଣ

ଜ୍ୟେଷ୍ଠ ହେଲା କଷ୍ଟଦାୟୀ ବସନ୍ତ ଅନ୍ତରେ
ତପନ୍ତ ପବନ ସବୁ ଦିଗରେ ପ୍ରସରେ
ଫୁଟୁ ପାଟଳୀ ବିଶେଷ
ଗନ୍ଧ ଗନ୍ଧବହ ପୂରାଇଲା ଦଶ ଦଶ । ୧ ।

ଅପାର ଅଭାବୁ ନଦୀ କାସାର ଶୁଖିଲେ
ଜଳଶ୍ରୀର ଭାବକୁ ତହୁଁ ହୃଦୟାର ତଜିଲେ
ପଦ୍ମବନ ଗଲା ଭାଙ୍ଗି
ମରନ୍ଦ ଅଭାବୁ କ୍ଷୀଣ ମଧୁକର ସଙ୍ଗ । ୨ ।

ହେଲେ ଅଛଶଦ୍ୟରେ ପ୍ରଚଣ୍ଡ ଚଣ୍ଡକର
ଆଶ୍ରୟ କଲେ ବିଳାସୀ ଜଳଯନ୍ତ୍ର ପୁର
ଚନ୍ଦନ ଅନ୍ତ ରମ୍ୟ ହେଲା
କାମୀ କାମିନୀଙ୍କ ଚନ୍ଦ୍ରକରେ ଶୁଆଇଲା । ୩ ।

ଏମନ୍ତ ଗ୍ରୀଷମ ଋତୁ ନୃପସୁତ ଗୃହୁଁ
କାନ୍ତା ବିନା ମଦନ ସାଯୃକେ ହେଲା ଦହ
ଚିନ୍ତା କରଇ ହୃଦରେ
ବୋଲଇ ମୋ ବାନ୍ଧବୀ ରହିଲା କେଉଁଠିରେ । ୪ ।

ରମଣୀ-ମସ୍ତକମଣି ଗୃରୁ ପଙ୍କଜାକ୍ଷୀ
ମୋ ବିନୁ ଭୂସମଣରେ ହୋଇଥିବ ଦୁଃଖୀ
ଭେଜୁଥିବ ନେତ୍ରୁ ନୀର
ସାରସ-ସୁବାସୀର କେ ଥିବ ପ୍ରତୀକାର । ୫ ।

•

ଭ୍ରମର ଭ୍ରମରକେଶୀ ଚଞ୍ଚଳଲୋଚନା
ଚନ୍ଦ୍ରକୁ ଗ୍ରହିଁ ଚଭୁସ୍ତ ପାଇବ ଯାତନା
ମୋହୋ ଭାବ ଅବିରତେ
ଚଉରେ ଛଡାଇ ଧନ ବଞ୍ଚିବ କେମନ୍ତେ । ୬ ।

ମୁଁ ବଡ଼ କରମହୀନା ମନବୃତ୍ତି କଲ
ଭରମଥଣୀର ସଙ୍ଗେ କଣ୍ଠାଇ ନ ଗଲ
ନ ରମଇ ଆନେ ମନ
ପରମଦା ପ୍ରପଦରେ ନୋହିଲ ଅଧୀନ । ୭ ।

ହୃଦପୁର ଦ୍ୱାର ମୋର ଦୂର ହୋଇଗଲା
କଣ୍ଠାଇ ମୋ ପ୍ରାଣ ତାହା ସଙ୍ଗତେ ନ ନେଲା
ପୋଡ଼ି ଅଛୁ ଏଣୁ ଦେହ
ଷଣକୁ ଷଣ ବଢ଼ୁଛି ଅତ୍ୟନ୍ତ ବିରହ । ୮ ।

ଶରଦ ଶଶାଙ୍କମୁଖୀ ଅଛି ଦୁଃଖୀ ହୋଇ
ହୃଦୟରେ ହାର ଆଉ ପକାଇବ ନାହିଁ
ହୋଉ ନ ଥିବ ସୁବେଶ
ବାସ-ବନଜ-ବଦନା ହୋଇଣ ବିରସ । ୯ ।

ନବୀନା ନବ ସୁରତ ସମୟରେ ମୁହିଁ
ନବନାଗଣ୍ଠି ଲଟେ କୋଳୁ ନ ଛାଡ଼ଇ
ଯେବେ ଶୁଆଇ ଖଟରେ
ମୋହୋ ତାପ ଦେନ ଖସି ଶୋଇ ପଲଙ୍କରେ । ୧୦ ।

ଜାଣେ ଏଣୀନୟନୀଙ୍କ କୋଳ ମୁଁ କରଇ
ହୃଦରେ ହୃଦ ଲଗାଇ ମୁଖେ ମୁଖ ଦେଇ

୬

ଛନ୍ଦ ଜାଣୁ ଜାଣୁରେ
ଭୁଲେ ଭଲ୍ଭ ଶଯ୍ୟନ କରଇ ନିବଡ଼ରେ । ୧୧ ।

ମନ ନଯ୍ୟନକୁ ମୋର ବନ୍ଦୀ କରି ନେଲ
ପ୍ରାଣକୁ ପରାଣେଶ୍ୱରୀ ନ ନେଉ ଛଡ଼ାଇ
ସ୍ନେହ ଦେନ ଜୀବ ମୋର
ବସ୍ତୁର କରୁଛୁ ରହି ଦେଇ ନାଉଖାର । ୧୨ ।

ଚରମଶୋଭନୀ ମୋର ପରମ ପୀରତି
ଭସ୍ମରେ ନ ବଳଇ ଅଟେ ମୋର ମତି
କରମରେ ସ୍ନେହା ଥିଲ
ପରମ ସ୍ୱପନଶ୍ରୀ ସ୍ନେବେ ଅନ୍ତର ହୋଇଲ । ୧୩ ।

ନିଶିଦିନ ମିଶି ଥିନ ରସେ ମୋ ଗୃହରେ
ହସି ଭାସି ଭାଷୁଥାଇ ବାଣୀ କ ସ୍ନେହରେ
ସ୍ନେହା ନ·ପାଇ ମୁଁ ଯାହା
ରହିଅଛୁ ଜୀବନରେ କରିବ କେ ଆହା । ୧୪ ।

ଗଳାମାଳା ହିନ୍ଦୁ ମୋର ଗଳା ଅସୁନ୍ଦର
ଦଶୁଅଛୁ ଦେଇ ତାକୁ ଛଡ଼ି ନାଉଖାର
ମାର-ମାରଣେ ପକାଇ
ମନ୍ଥରଗମନା ମୋତେ ମୁରୁଛୁଇଲୁ କେହି । ୧୫ ।

ପୁଥିଲ ପୀବରସ୍ତନା ତାମରସ ନେତ୍ରୀ
ଜଗତରେ ଜଗତ ମୋହିନୀ ହିନ୍ଦୁ ଗଢ଼—
ନାହିଁ ମୋହର ପ୍ରମାଣ
ପ୍ରମାଣ କରି କହୁଛୁ ଯିବ ନଷ୍ଟେ ପ୍ରାଣ । ୧୬ ।

ଏଣେ ମୋର ଏତେଦୂର ଦଶା ହୋଇଲାକ
ତେଣେ ଏଣୀ-ନୟନା ଏକାନ୍ତରେ ରଜନୀ
କାନ୍ତ ବନ୍ଧୁ କେହୁ ନେବ
କାନ୍ତବନଜବଦନୀ ମୋତେ ଝୁରୁଥିବ । ୧୭ ।

ବନ୍ଧୁ ବନ୍ଧୁକ—ଅଧରୁ ଅମୃତ ନ ପାଇ
ବଧୂ ବଧିର ବରଣେ ଅଗ୍ନି ପ୍ରାପ୍ତ ହୋଇ
ଦହୁଥିବ ଅନ୍ତରତେ
ଦାହକ ହେମ—ବରଣୀ ବଞ୍ଚିବ କେମନ୍ତେ । ୧୮ ।

ବହୁତ କାଳରୁ ମୋର ଥିଲା ପ୍ରଭୁ ଆଶା
ବନ୍ଧୁ ଏବେ ବାମ ହୋଇ ଭାଙ୍ଗିଲ ଭରସା
ଏଣୁ ବୁଦ୍ଧି ଦିଶୁନାହିଁ
ବାଧିରେ ଯେଣୁ ରହିଲ ପାଶୁଁ ଦୂର ହୋଇ । ୧୯ ।

ଅବାଧିକ ଅବଧିତ ଜୀବନ ରଖିଛି
ଅବରୋଧେ ଅବରୋଧ ମଦନ କରୁଛି
ମାରୁଥିଛି ଅନୁକ୍ଷଣେ
ତୋହୋଇବନ୍ଧୁ ମୋହୋ ଜୀବ ରଖିବ କ ଘଣେ । ୨୦ ।

ମନ୍ଦଗଗମନା ତୋର ଛୁଆଇଲୁ ପଥର—
ପଣ କରଗଲୁ ମୋତେ କର ଏତେଦୂର
ଦୂର ବଦେଶେ ରହିଲୁ
ଦୁସହ ଦୁଖ ସନ୍ତାପ ତାପରେ ଦହିଲୁ । ୨୧ ।

ଦରଦ ଯେବେ ଦେଲୁ ଦରପଣ ମୁଖି !
ଦଇମଗ୍ର କଥା କାହେ ନ ଯା'ଲୁ ଉପେକ୍ଷି

ଦରଶନ ମୋତେ ଦେବୁ
ଦରହାସି ! ହସି ଆସି ମୋ କୋଳେ ବସିବୁ । ୧୨ ।

ଯେମନ୍ତ ସୁକୃତ ଥିବ ସେହିମତ ହେବ
ପୁଣି ତୋ ଚନ୍ଦ୍ରବଦନ ମୋ ଆଖି ଦେଖିବ
ତେବେ ଯିବାର ଜୀବନ
ବନପ୍ରିୟ-ବଚନାରେ ରହିବ ନିଦାନ । ୧୩ ।

ଯେତେବେ ବହି ନୃପସୁତ ଲୋତକ ତେଜନ୍ତି
ଅହା ସହି ବୋଲି ମୋହେ ମହୀରେ ପଡନ୍ତି
ଯେତେହା ଦେଖି ସଖୀମାନେ
ବାନ୍ଧିଲେ ପଲ୍ଲବେ ନୀର ସିଞ୍ଚିଲେ ବଦନେ । ୧୪ ।

ସଚେତ ହୋଇ ନରେଶସୁତ ଏ ଉକ୍ତିରେ
ସ୍ୱପନରେ ମୋ ସୁମୁଖୀ କେମନ୍ତେ ଏ କାଳରେ
ହନ ଧୀନ ହୋଇ ନେବ
ଶଧିରେ ତ ବଧି ମୋର ଭାଙ୍ଗିଲା ଗରବ । ୧୫ ।

ଯେତେଣେ ଯେ ଚନ୍ତା କରନ୍ତେ ତେଣେ ନୃପ କେମା
ବୋଲଇ ଅନଙ୍ଗ ମୋର ଭାଙ୍ଗିଲା ଗାରିମା
ପ୍ରାଣନାଥ ହନୁ ମୋର
ପ୍ରାଣ ହାଣ କରିବାକୁ ନାହିଁ ପ୍ରତିକାର । ୧୬ ।

ଗିରିସମ ପର ଗୌରବ କରୁଅଛୁ
ପରଶମଣିଙ୍କ ଯେଣୁ ଅଇଲି ମୂରୁଛୁ
ପରକଟ ମାରଶର
କୋପରେ ମୋପରେ ମାରୁଅଛୁ ଅନିବାର । ୧୭ ।

ଶୟନରେ ପିଠି କରିବାକୁ ମନ ନୋହେ
ନୟନରେ ହବସନଶିରେ ଯେହ୍ନୁ ରହେ
        ଛାଡ଼ିବାକୁ ସଢ କେହ୍ନୁ
ବଳକା, ବଳଇ ଯେତେଣେ ହେଲ ସିନା ହ୍ନହ୍ନୁ । ୨୮ ।

ସୁକୁମାର ନୃପତିକୁମାର ମୋହୋଲାଗି
ଯେ ସମୟେ ହୋଇଲେ ମଦନ ଦୁଖଭାଗୀ
        ଧିକ ଯାଉ ଏ ଜୀବନ
ପରବଶ ହୋଇ ରହୁ କାହିଁ ପ୍ରୟୋଜନ । ୨୯

ନୀରଦକାଳେ ଦ୍ୱିରଦରଦ ପଲଙ୍କରେ
ନାରବଧ ବୋଧ କରି କହୁଥାନ୍ତି ମୋରେ
        ଏବେ ସୁମରି ସେ କଥା
ବ୍ୟଥା ଯେତେ ପାଉଛୁ କେ କରିବ ଅନ୍ୟଥା । ୩୦

ମାନରେ ମୁଖ ଶୁଖାଇ ବସଇ ମୁଁ ଯେବେ
ପର୍ଣ୍ଣଶବାନ୍ଧବ ରାଣ ପକାଇଣ ତେବେ
        ଚିବୁକରେ କର ଦେଇ
ବୋଲୁଥାନ୍ତି ମୋତେ ଏତେ କୋପ କାହିଁପାଇଁ । ୩୧ ।

ଧନ ! ମୁଁ ତୋହର କେଣା ପରସ୍ପର ପରି
ଅପରାଧ ନାହିଁ ମୋର କାହିଁ ଦୋଷ ଧରି
        ହସି କହୁନାହଁ କଥା
ତୋ ବିହୁନେ ଆନ ମୁଁ ନ ଜାଣଇ ସର୍ବଥା । ୩୨ ।

ଯେବେ ଏହି କଥାମାନ ମାନସରେ ପଡ଼ି
ପରାଣ ପିଣ୍ଡରୁ ମୋର ଯାଉଅଛି ଛାଡ଼ି

ମାଡ଼ି ପଡ଼ୁଛି ରଜନୀ
ବୁଦ୍ଧି ଦିଶୁନାହିଁ କେ ଦେଖାଏ ମୋ ଦୟିତା । ୩୩ ।

ଜନନୀ ସକଳ ଯେବେ ଅଇଲେ ଯା ଛାଡ଼ି
ଜାଳ ହେଲା ଏବେ ଚନ୍ଦ୍ର-କଳେ ଗଲି ବୁଡ଼ି
ମୋତେ ପଡ଼ିଲା ସଙ୍କଟ
ଆହା କଉଁ ଦିନ ଶମ୍ଭୁ କରାଇବ ଭେଟ । ୩୪ ।

ଏମନ୍ତେ କହନ୍ତେ ଶଶିରେଖା ଦଇବ ସ୍ମରି
ଜ୍ଞାନ ହରାଇଲା ଲଲାଟରେ କର ମାରି
ସଖୀ ଆଶ୍ୱାସନା କଲେ
ପଲ୍ଲବ-ସେଜେ ଶୁଆଇ ଧୀରେ ବିଞ୍ଚିଲେ । ୩୫ ।

ବିଳାପ ସେ କରି ପୁଣ ଚେତନା ଅନ୍ତରେ
ନିଦାଘ ସମସ୍ତ ପ୍ରାନ୍ତ କଲା ସନ୍ତାପରେ
ହେଲା ବରଷା ପ୍ରବେଶ
ଭଣେ ପଦ୍ମନାଭ ଯେହ୍ନେ ବରଷ ହୁଲାସ । ୩୬ ।

---

# ଦ୍ୱାତ୍ରିଂଶ ଛାନ୍ଦ

ରାଗ—ବରାଡ଼ୀ—ଖଣାଡ଼ମ୍ବୁବାଣୀରେ

ବରଷା ପ୍ରବେଶ ହୋଇଲା ଆସି । କାଳିକା ବେଶେ ଦିଶେ ପରକାଶି
ନଭେ ସଜଳ ସୁକାଶୀର-ଶୃପ । ଚଞ୍ଚଳା ଚମକ ଦେଲା ଅମାପ
ଘନ ଘଡ଼ଘଡ଼ି । ଘଡ଼କ ଘଡ଼ି ପଡ଼ୁଥିଲୁ ମାଡ଼ି । ୧ ।

କରକାପ୍ରକର ମହୀରେ ପଡ଼ି । ଭୁଜଙ୍ଗଘାତେ ଗିରିଶୃଙ୍ଗ ଝଡ଼ି
ବିଯୋଗୀ-ଆଶା ଅପାର-ପାତରେ । ବିନାଶ କଲା କେବଳ ପଲ୍ଲରେ
ବଙ୍କାଳ ବିହାର । ଛଡ଼େ ନ ଜପ୍ପଚିତ୍ତ କାମର । ୨ ।

ଝଞ୍ଜାପବନ ପ୍ରଖରେ ବହିଲା । ଶିଖଣ୍ଡୀ-ଶେଖେ ଶିଖୀ ନୃତ୍ୟ କଲା
ଭେକ ଡାହୁକ ଶାଳୁର ଶାମୁକ । ରବନ୍ତର ପୂର୍ଣ୍ଣ କଲେ ମଣ୍ଡପାକ
ଫୁଟ୍ଟ ହଳପ୍ରିୟ । ମଣ୍ଡିଲେ ତରୁ-ମଣ୍ଡଳ-ନଚପ୍ର । ୩ ।

କଦଳୀ କନ୍ଦରୁ ବାହାର ହେଲା । କେତକ ତହିଁ କେତକ ଫୁଟିଲା
ମାଳତୀ କୁସୁମ ସୁଷମ ହୋଇ । ଫୁଟ୍ଟ ବାସରେ ପ୍ରସରିଲା ମହୀ
ଗନ୍ଧବହ ଗନ୍ଧ । ଘେନି ବହିଲା ହୋଇଣ ଆନନ୍ଦ । ୪ ।

କୁଟଜ ମଲ୍ଲୀ ରଙ୍ଗଣୀ ଜାତୀକେଲି । ଗଙ୍ଗଶିଉଳୀ ଯୂଥିକାଦ ମଲ୍ଲୀ
ଦାଉ ଦନ୍ତାଣ୍ଡ ଅର୍ଜୁନ କୁସୁମ । ଫୁଟିବାରୁ ହେଲେ ବ ମନୋରମ
ବନଯୋର ଦିଶେ । ବନ ପୂରିଲା ସକଳ ପ୍ରଦେଶେ । ୫ ।

ଘନ ବହନ ମଧ୍ୟରେ ଯୋଟିଲା । ପ୍ରଥମେ ଗୋଷଣୀର ଗିଳଦେଲା
ଏ କ ଋକ୍ଷିବ ଧରହୁଣୀ ଭୂଲ । କୂଳ ଲଙ୍ଘି ନଦୀମାନେ ପ୍ରବଳ
ବେଳୁବେଳ ହେଲେ । ତଟ ପ୍ରକଟ ତରୁ ବିନାଶିଲେ । ୬ ।

ବେତସ ଫୁଟି ଲାଗି ନଦୀକୂଳେ । ନିର୍ମଳ ଫୁଟି ନ ରହେ କାଚଳେ
ଶୁଭ୍ର ଅମ୍ବରୁ ଅଭ୍ର ଛାଡ଼ିଲା । ଜଣି ଦିବସ ବାର ତ ହୋହିଲା

ବାଗଡ ନରଡ । ପଡ଼ିବାରୁ ରେଣୁ ଜମ୍ଭାଳବତ । ୭ ।

ଛାଡ଼ ଅବନୀଙ୍କ ଉଡ଼ ମରାଳ । ଗଲେ ମାନସକୁ ହୋଇ ଚପଳ
ପିକ ଗୃହିଁ ଏହା ମୂକ ହୋଇଲେ । କୋକ ଶୋକ-ଜଳେ ବୁଡ଼ ରହିଲେ
ଘୋର ଅନ୍ଧକାର । ହେବାରୁ ପଥ ନୋହିଲା ଗୋଚର । ୮ ।

ସରଣୀ ପୂର୍ଣ୍ଣ ହେବାରୁ ରଇରେ । ତରଣୀ ରଖିଲେ ନଦୀ ବାଟରେ
ନାବିକ କଲେ ସାଧକ ଅତର । ପଥି ପଥିକଙ୍କ କଉଣ ପାର
ପରବାସ ତେଜ । ବ୍ୟାପାରୀ ଗୃହରେ ରହିଲେ ମଜି । ୯ ।

ହରଷ ହୋଇଣ କୃଷକ ଅତି । କରଷଣ କଲେ ନରତ ଶିତି
ବରଷଣକୁ ଅନାଇ ଘନର । ଛତ୍ରରେ ଜନେ କଲେକ ଅଦର
ହରଷ ଗୃହକ । ବରସ ଏକା ଚାତକୀ ମାନକ । ୧୦ ।

ଦେଖି ଏ କାଳକୁ ନରେଶସୁତ । ରମଣୀଠାରେ ଅନନ୍ୟମଣେ ଚତ୍
ନବେଶି ବରହେ ବ୍ୟଥିତ ହୋଇ । ମୋ ପ୍ରାଣେଶ୍ୱରୀ ବଞ୍ଚିଥିବ କେହି
ନୟନ ପଥରେ । ନ ଦେଖିଲି ଯାହା ମଲି ସ୍ୱେଥରେ । ୧୧ ।

କହ ହେ ମିତ ! କି ବୁଦ୍ଧି କରିବା । କଉଁ ପ୍ରକାରେ ବାଳାକୁ ଲଭିବା
ଦେଖିବ ଯେବେ ରଖିବ ଜୀବନ । ମୁଁ ତ ତା ବିନୁ ନ ଜାଣଇ ଆନ
ସେ ମୋ ହୃଦହାର । ତା ବିନା ସଦନ ମଦନ-କାର । ୧୨ ।

ପ୍ରାଣବାନ୍ଧବୀ ପରଶ ନ ପାଇ । ପ୍ରମାଦ ହେଲି ବୁଦ୍ଧି ନ ଦିଶଇ
ପ୍ରତିକ୍ଷଣ ହାସ ସ୍ୱବେଶ ତାର । ନ ଥିବ ତେଜିଥିବ ନେତ୍ରନୀର
ମୋ ବିରହେ ଦୁଃଖୀ । ହୋଇ ପିଞ୍ଜରାଡ଼ ନ ପାରିବ ଅଖି । ୧୩ ।

ମନ ବୁଦ୍ଧି କଲି ଛାଡ଼ିଲି ତାକୁ । ମନରସ୍ତନା ଭଜିବ କାହାକୁ
ମୋହୋତନ୍ ଆନ ଜାଣଇ ନାହିଁ । ମୁହିଁ ତାହାରେ ବଶ ହୋଇଥାଇ
ଏବେ ମାରଶର । ତାପରେ ଭାର ମନୋବେଦନା ହାର । ୧୪ ।

ଶରଦଶଶିବଦନାର ମନ । ନ ଥିବ ଜାଣି ହେବଟେ ପ୍ରସନ୍ନ
କେ ଥିବ ତାଙ୍କୁ ଅହ୍ଲାଦ କରି । ଏଥର ପଥର ହେବନ୍ତି ଗୋସାଇଁ
ମୋ ଉର ନ ପାଇ । ଶିରରେ କର ମାରୁଥିବ ସଖି । ୧୫ ।

ବିରହେ କ୍ଷଣ ହୋଇବ ପତନ । ଦନ ଦନ ତାପ ଭୂସମଧନୁ
ଦେଉଥିବ ରକ୍ଷି ନ ଥିବ ଜୀବେ । ଭାବନା ବଶ ହେବାକୁ ମୋ ଭାବେ
ଗଛ ତ ନ ଥିବ । ପକ୍ଷି ବୋଲି କାହା କୋଳେ ବସିବ । ୧୬ ।

ସ୍ୱପନେ ଲପନ ଦେଖିଲି ନାହିଁ । କୋପନା କାମେ ହୋଉଥିବ ଦହି
ରହିଥିବ ମାତ୍ର ପାହି ତାହାର । ଅହା ବୋଲି ସଖୀ କୋଳେ ବିହାର
କରୁଥିବ ଦରେ । ପଡ଼ିଲି ଧନ କେଉଁ ପ୍ରମାଦରେ । ୧୭ ।

ଜୀବନେ ଥାଉଁ ମୋ ଧନ ଏ ଦଶା । ଛାଡ଼ିବାରୁ ଭୋଗ କଲି ସୁଦଶା
ଏଣେ ତାଙ୍କୁ ଛାଡ଼ି ଜୀବନ ମୋର । ରହିଲି ଏବେ ହେଲି ନାରଖାର
ସେ କ୍ଷମ କରିବ । ନ ପାଇ ସ୍ୱତନ୍ତ୍ର ଚନ୍ଦ୍ର ଡେଙ୍ଗିବ । ୧୮ ।

ଯିବାକୁ ନାହିଁ ମୋହୋର ବାହାର । ଭୁଞ୍ଜିଯିବ ମାତ୍ର ସେନେହ ତାର
ଭୁଞ୍ଜିକି ବିଚ୍ଛେଦ ଯୁଗ ପରାୟେ । ଯୋଗଭଙ୍ଗିମା ସ୍ନେହବଶୁଁ ହୋୟେ
ଏମନ୍ତ ଲୋକର କେମନ୍ତ ପ୍ରକାରେ ରହେ ଶରୀର । ୧୯ ।

ଯାବକ ଚରଣା ପାଦେ ଯାବକ । ଲେଖିଲି ନାହିଁ ହୋଇଣ ସେବକ
ସେମନ୍ତ ଜାଣିଲି ବଡ଼ପାପୀ ମୁହିଁ । ମୋହୋ ପାଇଁ କେହି କହିବ ନାହିଁ
ଭୁ ଏତେ ଉଦ୍ଧାର । ନ କଲେ ନାହିଁ ମୋର ପ୍ରତିକାର । ୨୦ ।

ସେମନ୍ତ କହୁ କହୁ ନୃପସୁତ । କାତରେ କଣ୍ଠମାନ ହେଲା ଗାଢ
ଶ୍ୱାସ ଛେଦଇ ଅତ୍ୟନ୍ତ ପ୍ରକଟରେ । ଭାସଇ କଣ୍ଠେ କଣ୍ଠେ ଅବା ଥରେ
ନୟନରୁ ନୀର । ପକାଇ ମୋହେ ପଡ଼ିଲା କୁମର । ୨୧ ।
ଦେଖି ଏ ସାଙ୍ଗ ସଚିବ କୁମର । ଧରି ଭୁଜରେ ବସାଇ କୋଳର

ସିଞ୍ଚଇ ପନୀର ନୀର ବଦନେ । ଶଞ୍ଚଇ ଅତ୍ୟନ୍ତ ଦୁଃଖିତ ମନେ
ଦେଖି ସଖୀମାନେ । ପକାଇ ପଲ୍ଲବଶଯ୍ୟା ବହନେ । ୧୨ ।

ଶୁଅଇ ତହି ନରେଶ-ସୁତକୁ । କଲେ ନାନା ଶୀତ ଉପଚାରକୁ
ଯେମନ୍ତେ କେତେ ଶାନ୍ତିକୁ ଭଜନ୍ତି । ସଖୀଙ୍କ ଗଲା ପ୍ରାଣହିଁ ରହନ୍ତି
ଆଉ କିସ ହେବ । ବଞ୍ଚିରଲେ ଉପଦର୍ପ ବଢ଼ିବ । ୧୩ ।

ଯେମନ୍ତ କଷ୍ଟେ ରହି ନୃପସୁତ । ତେଣେ ନରେଶନନ୍ଦନା ବ୍ୟଥିତ
ଘନକୁ ଚାହିଁ କରଇ କାରୁଣ । କେଣେ ମୋ ଧନ ରହିଲେ, ମରଣ—
ମୋହର ନୋହିଲା । ନିଷ୍ଠୁର ଜୀବନ ଏହା ସହିଲା । ୧୪ ।

କାହା କୋଳେ ନେଉଥିବ ଏ କାଳ । ଏ କାଳ ତାଙ୍କୁ ହୋଇବନି କାଳ
ବେଳକୁ ବେଳ ଏ ଘୋଟିଲା ମହୀ । ରଖିବେ ଦେହ ଏହା କେହି ଗୃହି
ସେ କିସ କରିବେ । ମୋ ବିନୁ ଆନ ନ ଜାଣନ୍ତି ଲବେ । ୧୫ ।

ତାହାଙ୍କ ମନ କେ ତୋଷ କରିବ । ବିଚ୍ଛେଦ ବିରହ-ତାପ ହରିବ
ସେ ଆଉ କେବେ ନୋହିବେ ବିମନ । ନେଇପିଭୁଲା ମୋହୋର ଜୀବନ
ମୁଁ ତାହାଙ୍କୁ ଛାଡ଼ି । ରହିଲି ଏଣେ ସେ ସେନେହ ଏଡ଼ି । ୧୬ ।

ପ୍ରାଣର ନାହା ସେ ଯାହା ଅନ୍ତର । ହେଲେ ମରିବାର କଲି ନିକର
କରମରେ ମୋର ଏମନ୍ତ ଥିଲା । କେ ତାଙ୍କ ପୀରତି ସୂତ୍ର ଛେଦିଲା
ମୋହୋ ପ୍ରାଣ-ତରୁ । ନ କାଟି ରଖିଲା କାହିଁ ହେତୁରୁ । ୧୭ ।

ତହିଁରେ ବନ୍ଧାହୋଇଥିଲି ମୁହିଁ । ଫନ୍ଦା ସେ ବିନୁ ଆନ ଅଉ ତାହୁଁ
ଅନ୍ଧାର ଏଣୁ ଦିଶେ ଦଶ ଦିଶ । ମନ୍ଦ କରମ ଘେନିଗଲି ଜାଣ
ମୁଁ କିସ କରିବି । ସଖୀ ! ସେ ସେନେହ ଲାଗି ମରିବି । ୧୮

କରମେ ବିହି ଲେଖିଥିଲା ଏହା । ମରମ କାଟୁଛି ହେଲଣିନାହା
ନ ରମେ ଆନ କଥାରେ ମୋ ମନ । କରମେ ଏ ଘେନି ମୋର ଜୀବନ

ସରମେ କାହାକୁ । କହିବି ଯେମନ୍ତ ହେବ କେ ତାକୁ । ୨୯ ।

ଦରଶନ ଯାହା ନ ଦେଲେ ଏବେ । ଦରମରି ହୋଇ ରହିଲି ଜୀବେ
ଦର ମଣୁଅଛୁ କାମକୁ ଏଣୁ । ଦରଦ ଯେମନ୍ତ କେ ତାଙ୍କ ବିନୁ
ଦରଶ ଉଡ଼ୁପ । ସେ ପଦ ମୋ ପ୍ରୀତି ହୋଇଲେ ଲୋପ । ୩୦ ।

ପରମ ପୀରତି ପ୍ରୀତିସ୍ତୁ ମଣି । ପରମେଶ୍ୱର ଦେବେ ଯେବେ ପୁଣି
ପରଶମଣିଙ୍କ ସେବା କରିବି । ପରସନ୍ନ କରି ଦୁଖ ହରିବି
ପରଶ ତାଙ୍କର । ପାଇ ହରିବି ହର-ଶର-ଦର । ୩୧ ।

ନୃପ-ସୁତ-ଶିର-ମୁକୁଟ ମଣି । ଛଡ଼ି ଅଇଲି ମୁଁ କି ମନେ ମଣି
ମାଡ଼ି ପଡ଼ୁଅଛୁ ରଜନୀ ଘନ । ଯାଡ଼ି ଦେଉଛୁ ଦୁସହ ମଦନ
ମୋର ନିବେଦନା । କେ ଯେନ ହରିବ ଏଥୁଁ ବେଦନା । ୩୨ ।

ଅତ୍ୟନ୍ତ ଦୁସହ ତାପରେ ପଡ଼ି । ଅନୁକ୍ଷଣେ ସେ ଯାଉଥିବ ସଢ଼ି
ଅବଧି ସେ ନିରବଧି ଭାବନା । କରୁଥିବେ ଚିତ୍ତ ନ ଥିବ ଚିନା ।
ମୋହୋ ଲାଗି ଧନ । ପାଇଲେ କେତେ ମଦନ କଦନ । ୩୩ ।

ଆନ ନ ଜାଣନ୍ତି ମୋହୋ ବାହାରେ । ମାନ ନ କରଇ ମୁହିଁ ତାଙ୍କରେ
ଆନନ ଏବେ ସ୍ୱପନ ହୋଇଲା । କାନନ ଗଲି ନଦୀ ଦୂର ହେଲା
ଜାନ ନ ରହିବ । ପାନ ନ ଦେଲେ ମୃଗ ସୁଧା ଧବ । ୩୪ ।

ଅନେକ ବିଳାପ ଏରୂପେ କରି । କନକତନୁ ଶୀର୍ଣ୍ଣିଲୁ ଅଘୋର
ସହିଲା ବେଦନା ରହିଲା ପ୍ରାଣେ । ଅପରେ କାନ୍ତ ସଙ୍ଗତି କାରଣେ
ଶେଷ ଏହୁ ଛାନ୍ଦ । ଭଣେ ପଦ୍ମନାଭ ହୋଇ ଆନନ୍ଦ । ୩୫ ।

---

# ତ୍ରୟସ୍ତ୍ରିଂଶ ଛାନ୍ଦ

ରାଗ—ଚକ୍ରକେଳି

ହେଲା ଏ ଅନ୍ତେ ପ୍ରବେଶ ଶରଦ । ଗୃହିଁ ଅପସର ଗଲେ ନୀରଦ । ୧ ।
ଅତି ସୁନ୍ଦର ଦିଶିଲା ଆକାଶ । ଚନ୍ଦ୍ର ସାନ୍ଦ୍ର ହୋଇ ହେଲା ପ୍ରକାଶ ।
ନଦୀ ସରୋବର ଜଳ ନିର୍ମଳ । ରସେ ଫୁଟିଲେ କୁମୁଦ କମଳ ।
କାଶ କୁସୁମ ହୋଇଲା ପ୍ରକାଶ । ଛତ୍ରୀ ଧବଳ କଲା ଦଶ ଦିଶ ।
ଉପବନେ ବନ୍ଧୁକ ଶକାଟିଲେ । ମଧୁମଦରେ ମଧୁପ ରହିଲେ । ୫ ।
ମାନ ସରୋବର ତେଜି ସାରସ । ମନ୍ଦାସରେ ହେଲେ ଆସି ପ୍ରବେଶ ।
ଅତି ପ୍ରମତ୍ତ ହୋଇଲେ ଖଞ୍ଜନ । ସଙ୍ଗେ ସଂଯୋଗରେ ହୋଇ ରଞ୍ଜନ ।
ହରି କୁମୁଦ କମଳ ଗନ୍ଧକୁ । ବହି ପବନ ବଢ଼ାଇ ମୋଦକୁ ।
ଗୃହିଁ ଏ ରଘୁ ନରେଶ—ନନ୍ଦନ । ପ୍ରିୟା ବିରହରେ ହୋଇ ଉଛନ୍ନ ।
କାମ ଅତିଶୟ ଦୁଃଖ ଦେବାରୁ । ବୋଲେ ଗଲୁ ତୁ ଏକା ମୋ ପୁରୁରୁ ॥
ବନ୍ଧୁ କି କରୁଥିବୁ ଏ କାଳରେ । ଏକା ରହିଲୁ, ନାହିଁ ମୋ କୋଳରେ ।
ମୁଁ ଗୋ ତୋ ବିନୁ ଏକା କି କରିବି । ଏଣେ ଝୁରି ଝୁରି ଯିବା ମରିବି ।
ତୁ ଚନ୍ଦ୍ରକଣ୍ଠରେ ଭେଟି ନ ଦେଲେ । ଜୀବ ରହିବ ନାହିଁ ଶୁଣିଲେ ।
ନିଜ ସେବକ ଯିବା ମୁଁ ତୋହୋର । ଉଚିତ କି କରିବା ଏତେଦୂର ।
ଯେହ୍ନେ ଯାହାକୁ ବଶ ହୋଇଥାଇ । ତାରେ ନିର୍ଦ୍ଦୟା ଉଚିତ ନୁହଇ ।୧୫।
ମୋତେ ବୋଲୁଥାଉ ପର ପରାଣ । ହେଲୁ ଜାଣି ଜାଣି ଏବେ ଦାରୁଣ ।
ଦେଲୁ ପୀରତି-ମହୁରି ଖୁଆଇ । ତୋହୋ ବିନୁ କେ ପାଶବ ଜୀଅଇ ।
ମୋହ ମନ ମାନସ ହଂସପ୍ରାୟେ । ତୋହୋ ଲାବଣ୍ୟ-ଜଳେ ଖେଳୁଥାଏ ।
ଏବେ ନ ପାଇବାରୁ ସେ ସଙ୍ଗତ । ଭ୍ରମିବାରେ ହୋଉନାହିଁ ତୃପତ ।
କରିଥିଲି ମୁଁ ବହୁତ ଭରସା । ବହି ଛଡ଼ାଇ ଦେଲା ସବୁ ଆଶା । ୨୦ ।

ଧାନ କରୁ ତୋ ଚନ୍ଦ୍ରମା ବଦନ । ଭୁଲି ଭୁଲି ନ ସହିବ ନନ୍ଦିବନ ।
ମୋହ ମନ ଭୃଙ୍ଗ ପରି ହୋଇଲା ! ତୋହ ଭୁଜ-ପଦ୍ମ କୋଷେ ରହିଲା ।
ସେ ତ ପ୍ରଫୁଲ୍ଲ କେବେହେଁ ନୋହିବ । ଏହି ସକାଶୁଁ ଅଧେ ନ ପାରିବ ।
ମନ ବନ୍ଧୁ କ ଆସୁନ୍ତ ହେବର । ଏଣୁ ବ୍ୟାକୁଳ ହୋଏ ନିରନ୍ତର ।
ଏହା ନିଶ୍ଚୟ ଜାଣିକରି ଧନ । ହୋଉଅଛି ମୋ ଜୀବନ ଉଛନ୍ନ । ୨୫ ।
ଯେବେ ନେଇଥାନ୍ତା ତାର ସଙ୍ଗତେ । ଦୁଖ ପାଉ ନ ଥାନ୍ତା ଅବରତେ ।
ଏହିରୂପେ ଜୀବନ ଚିନ୍ତା କରୁ । ନେତେ ରହିଲା ଅନୁକୂଳ କରୁ ।
ଅବଧିରେ ନୋହିଲେ ତୁ ପ୍ରବେଶ । ମୁହିଁ ଛାଡ଼ିବି ଜୀବନର ଆଶ ।
ଏହି କୁମାର ପୂର୍ଣ୍ଣିମା ଦ୍ୱିତୀୟା । ଯେବେ ଆସିବୁ ନାହିଁ ପ୍ରାଣପ୍ରିୟା ।
ମୋହୋ ଶପଥ ମୋତେ ନ ଦେଖିବୁ । ପଛେ ସନ୍ତାପ କରି ଝୁରୁଥିବୁ ॥
ଜୀବ ଯିବାକୁ ନାହିଁ ମୋର ଡର । ତୋହୋ ପୀରତି ହେବ ନାଉଜାର ।
ସେହି କଥାକୁ ହୋଉଛି ଶୋଚନା । ଆଉ ଆନ ନାହିଁ ମୀନଲୋଚନା ।
ଯଥା ଶଶ ଶଶୀଙ୍କ କରେ ଆଶ । ପ୍ରାଣ ଛାଡ଼ିଲା ହୋଇଣ ନିରାଶ ।
ଯେଣୁ ତାହାରେ ହେଲା ସେ ଅଶାୟୀ । କଲା ଅଙ୍ଗୀକାର ଅଙ୍କେ ବସାଇ ।
ଯେବେ ତୋ ଲାଗି ଏ ଜୀବ ହାରିବ । ଧନ ! ସେହିରୂପେ ଯିନା ହୋଇବ
ହେଲେ ହେବତ ମୋର ବଡ କଥା । ଅଙ୍କ ଅନ୍ତର ନୋହିବ ସର୍ବଥା ।
ଯେବେ ତୋହୋ ଦରଶନ ନୋହିବ । ଏହି କଥା ମୋହୋର ମୂଳ ହେବ
ତୁ ତ ଦୟାଳୁ ଗୁଣରେ ଅଧିକ । ପୁଣି ମୁଁ ତୋର କିଣିଲା ସେବକ ।
ଏବେ ବିଚ୍ଛେଦ ହୋଇଲା ବରଷେ । ଦୟା ଏତେଟିକେ ତୋ ହୃଦେ ନ ବସେ
ଯେବେ ଆସି ନ ପାରିଲୁ ରସିକା । ଦିନେ ଦେଲୁ ନାହିଁ ପ୍ରୀତି-ପତ୍ରିକା ॥
ବଚନରେ ତ ସଙ୍ଗୋଳା ଉଚିତ । ମନେ ନ ପଡ଼ିଲି ମୁହିଁ କିଞ୍ଚିତ ।
ଗଲା ବେଳକୁ ଯାହା ଗଲୁ କହି । ତାହା ସ୍ମରି ହୋଉଅଛି ଦହି ।
ସହି ନୋହିବ ଏଣିକି ବିଚ୍ଛେଦ । ତୋହ ବିଯୋଗୁଁ କଲି ଶିରଚ୍ଛେଦ ।

ଅଛୁ ପଷାଣ ନବମ ଦଶାରେ । ଏକା ପ୍ରଭାକାର ଭୁଜ ରସାରେ ।
ଥିଲେ ଅଙ୍ଗୀକାର ଜୀବ ରଖାଅ । ବନ୍ଧୁ ପ୍ରସନ୍ନ ବଦନ ଦେଖାଅ । ୪୯ ।
ହେଜୁଥିବୁ ତୁ ମୁଁ ତୋର ପାଳକ । ଏତେ ବୋଲିଁ ଚଳ ନୃପ-ତିଳକ ।
ଦେଖି ପରିଜନେ ତୋଳ ଧଇଲେ । କରୁ ସଚେତ ଆଣ୍ଠାହି ବସିଲେ ।
ଏଥୁ ସମୟେ ଇନ୍ଦ୍ରବତୀ ପୁରେ । ନୃପନନ୍ଦିନୀ ବସି ଚିନ୍ତା କରେ ।
ଅହା ମୋ ପ୍ରାଣନାଥ ଏକା ହୋଇ । ନଶି ବଞ୍ଚିବେ କାହା କୋଳେ ଥାଇ
ସେ ଯେ ନୟନ ପ୍ରତିମା ମୋହୋର । ତାଙ୍କ ବିନୁ ଦଶ ଦିଶ ଅନ୍ଧାର ।୫୦
ମୋର ମାନସ—କୁମୁଦ ପ୍ରସନ୍ନ । ହୋଏ ଦେଖି ତାଙ୍କ ଚନ୍ଦ୍ର—ବଦନ ।
ଏବେ ତଙ୍କଲା ଦେଖି ମୋ ଆଶକୁ । ମୂଳ ହୋଇଲା ଏ ମୋହୋ ନାଶକୁ
ଦେହେ ନ ରହଇ କ୍ଷଣେ ଚେତନା । ପାଉଅଛୁ ମୁଁ ଅନେକ ଯାତନା ।
କ୍ଷଣେ ଗୃହିଁକେ ବଶୁଛୁ ପୁରତେ । ଯେହ୍ନେ ଯେନ ରହୁଅଛୁ ଜୀବତେ ।
ପୁଣି ଏଥିରେ ଅସି ନେତ୍ର ଅପ । ବେଲେବେଲେ ଦୃଷ୍ଟି କରେ ଅକ୍ଷେପ
ଏତେକହ୍ନ ତ ବହୁ ସନ୍ତୁନାହିଁ । ଅଉ ସାକ୍ଷାତ କରଦେବ କାହିଁ ।
ଏକାବେଳେକେ ପାଷିଲ ଦଇବ । ଅହା କଉଁ ଦନ ଯୋଗ ହୋଇବ ।
କ୍ଷଣେ ନ ପାରନ୍ତି ମୋତେ ମୂରୁଛୁ । ଏବେ ସେ କଥା ମାନସେ ଘୂରୁଛୁ ।
ଚନ୍ଦ୍ର କୁମୁଦ ପୀରତି ବୋଲନ୍ତି । ସେହ୍ନୁ ଦବସେ ସଂଯୋଗ ନୋହନ୍ତି ।
ହୋଏ ଅନ୍ୟୋନ୍ୟରେ ପ୍ରୀତି ଅଭାବ । ମୋର ନାହିଁତ ଏହା ଅନୁଭବ ॥
ଏହୁ ସଙ୍କାଶୁଁ ହୋଉଛୁ ଶୋଚନା । ପ୍ରିୟା ଅଭାବେ ବୃତ୍ତୁଛୁ ଚେତନା ।
ତାଙ୍କ ହାସ—ଚନ୍ଦ୍ର ଉଦେ ନଦେଖି । ନେତ୍ର—ଚକୋରୀ ହୋଇ ମହା ଦୁଃଖୀ
ତେଜୁଅଛୁ ଜୀବନ ଅନ୍ତରତେ । ଅଉ ଜୀଇବାକୁ ନାହିଁ ପରତେ ।
ପୁଣି ଏଥିରେ ମୋହ ରତି ପତି । ଅନ୍ତରତେ କରୁଅଛୁ କ୍ଷତି ।
ଏଣୁ ବୁଝି ତ ମୋତେ ଦଶୁନା ହାଁ । ତୁମ୍ଭ ବିହୁନେ ଆନ ଗତି ନାହିଁ ॥
ଏତେ ବୋଲିଣ ଶିରେ କର ମାରି । ଜ୍ଞାନ ହରାଇ ପଡ଼ିଲା ତରୁଣୀ ।

ଦେଖି ସଖୀମାନେ ଢୋଳ ଧଇଲେ । ନାନା ଶୀତ ଉପଚାର କହ୍ଲେ
କେନ୍ଦୁ ପ୍ରବୋଧ ତହିଁରେ କହ୍ଲା । ଢୋହୋ ସଙ୍କେତ ନିକଟ ହୋଇଲା ।
କଷ୍ଟ ଦେଇଛୁତ ଯିବ ହେବାର । ଅଭ୍ର ଅଳପ ରହ୍ଲା କୁମାର ।
କାନ୍ତ ଲେଖ ଅନ୍ତକାଳ ଅସିବ । ତୋହେ ବରଦ—ବ୍ୟାଧିଙ୍କ ନାଶିବ ॥
ବାଳାଂଶୋଚନା ମନ୍ ଦୂର କର । ଭାଗ୍ୟ ଦଶି ଅସିଲାଣି ତୋହୋର ।
ଏ ବଚନେ ସେ ତେଜିଲା ସନ୍ତାପ । ପୋଛି ପଣନ୍ତେ ପଦ୍ମନେତ୍ର ଅପ ।
ବୁଝି ହୋଇଲା ଉତ୍କଣ୍ଠା—ସନ୍ତତ । ଶୋକ-ତରୁ ଭାଜିଗଲା ଭୂରତ ।
ନେତ୍ରେ ଦଶିଲା କାନ୍ତ କେଳ ରଛ । ଛାନ୍ଦ ଶେଷ ଭଣେ ବାଳ୍କି ନୃପଛ ॥

---

# ଚତୁସ୍ତ୍ରିଂଶ ଛାନ୍ଦ

ରାଗ—କେଦାର ( ଚକ୍ରକେଳି ବାଣୀରେ )

ଶୁହଁ ଶରଦ ନରେଶ-କୁମାର । ପ୍ରିୟା ବିରହରେ ହୋଇ କାତର
ଦୁଃଖେ ବସିଣ ଏକାନ୍ତ ସ୍ଥାନରେ । ଘେନି ଦିବ୍ୟ କାଗଜ ମସୀ କରେ
ଚିତ୍ତେ ଚିନ୍ତା କରି ନନ୍ଦ-ନନ୍ଦନ । ଲେଖ ଲେଖୁଅଛି ନୃପ-ନନ୍ଦନ
ଦର୍ପକର ଦର୍ପ ଲପନାକୁ । ସୁଧାକର-କରକ-ରଦନାକୁ
ମଞ୍ଜୁ-ମୃଦୁଳ-ମଧୁର-ଭାଷୀଙ୍କ । କୁନ୍ଦ-ଚନ୍ଦ୍ର-ଚନ୍ଦ୍ର-ମନ୍ଦହାସୀଙ୍କ । ୫ ।
ପୀନ-କଠିନ-ଶ୍ରୀଫଳ-ସ୍ତନାକୁ । ବରନତମବତ୍ତ ଅଙ୍ଗନାକୁ
କରକରଭୂଜା ସୁରମଣୀଙ୍କ । ଦ୍ୱିରଦଗଜଣୀ ଗୁଣମର୍ଦ୍ଦିଙ୍କ
ଝଳ ଦଳକ ହେମ ବରନାକୁ । ନବନୀତ ପ୍ରତିମା ଲଳନାକୁ
ଗୁରୁ ଉରୁରୁ ସରୁ ମଧ୍ୟମାକୁ । ପ୍ରୀତିକୁନ୍ଦନା ମୋ ସୁଖଧାମାକୁ
ଅରେ ଜବାଅଧର ! ପ୍ରାଣସଙ୍ଗି ! । ହରଗପରପଧରସପ୍ରସଙ୍ଗି ! ୧୦ ।
ଯେତେ ପ୍ରକାରେ ତୋ କେଳି ବିଧାନ । କରି ପାରିବ ନାହିଁ ସମାଧାନ
ଦିନେ ପଲଙ୍କେ ଅଙ୍କେ ଘେନି ଥିଲି । ଗୁରୁ ଚିବୁକେ ଚୁମ୍ବ ଦେଉଥିଲି
କୁହ ଦେଇ ମାଗିଲୁ ଲେଉଠାଇ । ବକ୍ଷେ ଶୁହିଁ ପୁଲକଠାଣି ଫିଟାଇ
ଦିଏ ଯାହା ବୋଲୁଛୁ ପ୍ରାଣବନ୍ଧୁ । ପ୍ରାଣ ରହିବ କି ଯେ ଅନୁବନ୍ଧୁ
ଦିନେ କପଟରେ କରି ଶୟନ । ବୁଜିଥିଲୁ ସରସିଜ ନୟନ । ୧୫ ।
ମୁଁ ଯେ ଚୁମ୍ବନ ଦେଲି ଚିବୁକରେ । ଗଣ୍ଡ ମଣ୍ଡିତ ହେଲା ପୁଲକରେ
ତୁ ଯେ ସହି ନ ପାରିଣ କୁଟିଳ । ହସି ଉଠିଲୁ ଏ କି ବିପରୀତ
ଏହିକ୍ଷଣି ତ ଥିଲ ମୋ କୋଳରେ । ନିଦ୍ରା ଅଣୁଥିଲି ମୁହିଁ ଡୋଳରେ
ଏତେ କାହିଁ ଏବେ କାହିଁ ଅଇଲା । ଏ କି ନଗର ଜୀବିକା ହୋଇଲା
ଏତେ ବୋଲି ଯା ଉଡିଲୁ ରସରେ । ପ୍ରାଣ ଅଛି ସିନା ସେହି ଆଶରେ ॥

ଧରି ଚିବୁକ ମାଗିଲି ରତିକି । ତୁ ଯେ ନ କଲୁ କେବେ ସମ୍ମତିକି ।
ଆଲିଙ୍ଗନ କରି ଦେଲୁ ଚୁମ୍ବନ । ମୁହିଁ ଚୁମ୍ବିଲି ହେଲି ନିଧୁବନ ।
ତୋଷେ ଆରମ୍ଭ କଲୁ ବିପରୀତ ; ଉଚ୍ଛୁଳିତ ହେଲା ମୁଖ ସରିତ
ଲଟି ରହୁଛି ସେ ଛବି ମରମେ । ବେଣୀ ନୃତ୍ୟ କରୁଥିଲା ଚରମେ ।
ନାହିଁ ନାହିଁ ତାଟଙ୍କ ବୋଲେ ମଣି । ହୋଉ ହୋଉ ବୋଲଇ ନାସାମଣି ॥
ଉର ଉପରେ ନାଚୁଥାଇ ହାର । ଏତ ନୂଆଇ ଏଥିରୁ ବାହାର
ସ୍ୱେଦ-ବିନ୍ଦୁ ଶ୍ରୀମୁଖେ ବିତରଣ । ଦେଖି ସଫଳ କଲି ମୋ ଈକ୍ଷଣ
ଜାଣି ମୋ ନୟନେ କର ଢାଙ୍କିଲୁ । ଦେଇ ଶାପ୍ନମ ଶ୍ରବଣ ପୂରିଲୁ
କଟି କିଙ୍କିଣୀ ଧ୍ୱନି ତୋ ଚପଳା । ବୋଲୁଥାଇ କାମକୁ ପଳା ପଳା
ତନୁ ଜରଜର ଶ୍ରମ-ଝାଳରେ । ଚୁମ୍ବି ବେଢ଼ାଇ ମୁଖ ମଣ୍ଡଳରେ ।
ବିବ ସଂଯୋଗରେ କୋଳେ ବସାଇ । ଦେଉ ହୃଦରେ ହୃଦକୁ ମିଶାଇ
ଫୁଟି ବୋଲୁ ମୁଁ ଆଉ ନ ପାରିବି । ତୋର ସେ ଭାବ ସ୍ମରି ମରିବି
ହେନେ ହୋଉ ଯେ ଥିଲୁ ତୁ ସ୍ୱବେଶ । ସେହି ସମୟରେ ହେଲି ପ୍ରବେଶ
କର-ପଙ୍କଜେ ଧେନ ମୁକୁରକୁ । ଚାହୁଁଥିଲୁ ମୁଖ-ନିଶାକରକୁ
ଭୁଜ ହୋଇଣ ମିଳି ତୋ ପଛରେ । ମାଙ୍କି ନବାଢ଼ି ଥିଲୁକି ସ୍ପଷ୍ଟରେ ।
ପ୍ରତିବିମ୍ବେ ମୋତେ ଦେଖି ହସିଲୁ । ଜାଣି ନ ଜାଣିଲା ପରି ବସିଲୁ
ଫେଡ଼ିଦେଲି ମାଳିକି କରେ ଧରି । ମୁଖ ମୋଡ଼ି ଚାହିଁଲୁ ବିମ୍ବାଧରି !
ପଡ଼ିଲି ମୁଁ ତୋ ନୟନ କୁନ୍ତରେ । ବାହି ନବଳି ରହିଲି ଅନ୍ତରେ
ତୋର ସେ ଭାବମାନ ମନେ ପଡି । ପ୍ରାଣ ପିଣ୍ଡରୁ ଯାଉଅଛି ଛାଡି
ହେନେ ବିହରନ୍ତେ ଉପବନରେ । ଭୃଙ୍ଗ କେଳି କରିବା ପ୍ରସୂନରେ ।
ଦେଖି ବୋଇଲିରେ ନବ ସୁରଭି ! । ଅଳି କୁସୁମରସେ ଅଛି ରସି
ଗୁହଁଗୁହଁରେ ଚତୁର ! ସୁଗତି । ହସି ବୋଇଲୁ ସିନା ଏହୁପରି
କୋଳ କରି ବୋଇଲିରେ ସୁଷମା । ତୁତ ଅଟୁ ମୋହୋର ପ୍ରାଣସମା

ଏହା କି କହି ବଚନେ ଭୂଷିଲୁ । ଏବେକେବେହେଁ ମୋ ଅଙ୍କରେ ମିଶିଲୁ
ମାନସରେ ଭାବ ଜଳ ବଢ଼ାଇ । କର ଧରି ସେଠାବରୁ ବାହାର । ୪୫ ।
ଯାଇ ମିଳିଲୁ ସରସୀ ତଟରେ । ଉଭା ହୋଇ ସୋପାନ ନିକଟରେ
ଜଳ ଉପରେ ଚରଣ ପକାଇ । ଯାଇଁ ବସିଲୁ ମୋ ମୁଖ ଚକାଇ
ଯାଅ ବୋଲିବ ନ ବୋଇଲୁ ମୋତେ । ଥାଅ ବୋଲି ବା ବୋଇଲୁ କେମନ୍ତେ
ମନ ଜାଣି ମିଳିଲି ତୋ ପାଶରେ । ଅଣି ରଖିଲୁ ସେ ବାହୁ ପାଶରେ
କରଧରି ମୁଁ ମାଗିଲି ସୁରତ । ସୀତ୍କାର ନ କଲୁ ପ୍ରାଣନାଥ । ୫୦ ।
ଯହୁଁ ପଡ଼ିଲି ଚରଣ ତଳରେ । ତୋଳି ଧରିଲୁ କର-କମଳରେ ।
ଆରମ୍ଭିଲୁ ଯେ ନାନା ନିଧୁବନ । ସେ କାଳରେ ଯେମନ୍ତ ହେଲା ବନ
ତାହା ବଚନେ କେ କହି ଜାଣିବ । ଅନୁଭବ ଥିଲେ ହିନା ଅଛିବେ ।
ଶେଷେ କର ତରେ ଧରି ବସନ । ଜଳୁ ଉଠିଲୁ ହୋଇ ସୁପ୍ରସନ୍ନ
ମାର-ମନ୍ଦିରେ ଦେଇ ବାମକର । ପୋଛି ଅଇପ ମୁଖ-ସୁଧାକର । ୫୫ ।
ସ୍ମିତ ପ୍ରକାଶି ଈଷିତ ଗେଲାଇ । ଲୁଚ ଦେଉଛୁ ମୁଖକୁ ପେଲାଇ
ବାସ ଶ୍ରୀଅଙ୍ଗେ ନ ଥିଲା ପରାଏ । ଝଙ୍କ ଦିଶୁଥିଲା ମହା ତୋରାଏ
ଦେଖି ସେ ଛବି କି ଜ୍ଞାନ ରହିବ । ଯତି ଯତି-ଆଶ୍ରହିଁ ନ ରହିବ
ତୋର ତନୁଶୋଭା ନେତ୍ରେ ମୋହୋର । ନିରନ୍ତରେ ରହିଲା କରି ଘର
ସ୍ୱପସ୍ମିତ ରମ୍ଭା କାଣି ଜଘନ । ଏଣୁ କରି ତୋ ମୋ ପ୍ରୀତି ନିଘନ । ୬୦ ।
ଗତିଶ୍ରୀଭୂଷା ଦେଖି ଗଜପତି । ଦାସ ହୋଇ ସେବନ୍ତି ନିତିପ୍ରତି
ତୋର କୁଞ୍ଚିତ ସୁଗ୍ଧରୁ କେଶକୁ । ନବଘନ କି ଅଣିମ ଲେଶକୁ
ଭାଲପଟକୁ କସ୍ତୁରୀ ତିଳକ । ଭାବେ ଉଦ୍ଭବ ଧରଇ ଅଳକ
ନେତ୍ର ମୀନ ଖଞ୍ଜନ କୁରଙ୍ଗଙ୍କୁ । ଜଣିକରି ଧରିଛୁ କି ରଙ୍ଗକୁ
ପଦ୍ମଚରଣେ ବାଜଣୀ ନୂପୁର । ନାହିଁ ସମ ସୁଷମା ସୁରପୁର । ୬୫ ।
ତାହା ମୂର୍ଚ୍ଛିଲି ଧନ ! କି କହିବି । ତୋହର ଗୁଣ ଗୁଣି ଝୁରି ମରିବି

ମୋହୋ ସେବାରେ ହୋଇ ସାବଧାନ । କେତେ କରୁଥାଉ ଭଙ୍ଗୀ ରଞ୍ଜନ
ପାନ ଦେଲେ ମୁ ପାନ ନ କରଇ । ନେଇ ଅଧରୁ ଅଦନ କରଇ
କହ୍ଁ ଗୁଣକୁ କେ ତୋର ସମାନ । ତୁ ତ ଦନେନ୍ଦେ ବରନାହୁଁ ମାନ
କୋଧ ତ କର ଯୁବତୀ କରନ୍ତି । କାନ୍ତ ଅପରାଧ ଚତ୍ତେ ଧରନ୍ତି ।
ପାଖେ ଥାଇ ନ ଚାହାନ୍ତି ମୁଖକୁ । ଯେନଥାନ୍ତି ମାନସରେ ଦୁଃଖକୁ
ଏ ତ ହୋଇଥାଇ ତୋତେ ସ୍ୱପନ । ମଣ୍ଡି କାହିଁକି ଦେଖିବ ଲପନ
ତୋହୋ ପ୍ରାପ୍ୟେ ଅନୁରାଗ ବାଢ଼ଇ । ଅଣି ପାଉବ ଉଢ଼ଏ ଉଢ଼ ତ
ପିନ୍ଧିଥାଉ ଯେ କ୍ଷୀଣ ଜଣବାସ । କେତେରୂପେ ଉଦ୍ଧୂଥାଇ ବାସ
ଜୀବ ଜୀବନ ମୋର ତୁ ସୁଗନ୍ଧ ! । ବହୁ ଉଦ୍ଧ କଲ୍ଲ ତୋର ସଙ୍ଗତ ।
ମୋର ଭାଳଲେ ସରୁ ନାହି ଦନ । ତୁତ ସହଜେ ହୋଇଥିବୁ ଦାନ ।
ମୋହୋ ବେଦନା ଲାଗୁନାହିଁ ମୋତେ । ତୋହୋ ଚନ୍ତାରେ ବଞ୍ଚିବି କେମନ୍ତେ
ମୋର ଏହି ଚିନ୍ତା ଏକା ରହୁରେ । ତୁ ଗୋ ନ କରୁଥିବୁ ବରଦରେ
କଚ୍ଛ ନ ଥିବ ତ ବେଶ ବସନ । କାହୁଁ ପାଇଁଥିବ ଅବା ପ୍ରସନ୍ନ
ତୋର ଚପଳ ନୟନ କୁରଙ୍ଗ । ହୋଇଥିଲ ଯେ ଲୋତକରେ ରଙ୍ଗ ।
ସୁଖ ନୋହୁଥିବ ତୋତେ ଚନ୍ଦନ । ଝଳ ଦେଉଥିବ ଚନ୍ଦ୍ରକୁନ୍ଦନ
ସମୀର ନୀର ନୋହିବ ଶୀତଳ । ହୋଉଥିବ ପଲଙ୍କ ସିଞ୍ଚ ତଲ
ଗୁରୁତର ହେବ କ୍ଷୀନ ବସନ । ରୁଚୁ ନ ଥିବ ତ କଚ୍ଛ ଅଶନ ।
ମନମରୁତ ଭଜିବ ବଦନ । କୋଷ୍ଟଯୁଗ ମଣୁଥିବ ଅଦନ ।
କାମ ଦେଉଥିବ କେତେ ବେଦନା । କହିବ କେ ତୋ ଦୁଃଖ ନିବେଦନା
ଯେବେ ତୋ ମୁଖରାଜୀବ ଦେଖିବି । ତଦୁତ୍ତରେ ଏ ଦୁଃଖ ଉପେକ୍ଷିବି
ତୁ ଗୋ କହୁଯାଉଛୁ ମୋତେ ଯାହା । ପାଶୋରିଲୁ କି ବିଶେଷ-ସୁଦେହା
ଏବେ ମାସେ ବଳଗଲା ଶରଦ । ଏତେକେହେଁ ନୋହୁଛୁ ତୁ ବରଦ
କଷ୍ଣ କୁମାର ଦ୍ୱିତୀୟା ଦନକୁ । ଦେଇ କରଗଲୁ ପିତା ପୂର୍ବକୁ ।

ଏବେ ଲେଖାରେ ଅଛୁ ସେ ଅଳପ । ଦିନ ଦିନକ ହେଉଛୁ କଳପ । ୧୦ ।
ଯେବେ ସେ ଦିନ ପ୍ରବେଶ ନୋହିବୁ । ଜୀବନରେ ତୁ ମୋତେ ନ ଦେଖିବୁ
ଦୟା ଥିଲେ ଏ ଲେଖ ପ୍ରବେଶରେ । ବେଗେ ଆସିବୁ ଗୃହ ସଙ୍କେତରେ
ମୋର ଅଛଇ ଲେଖିବା ଅଯୁକ୍ତ । ଯେବେ ଅବା ନ ଯେବ ପ୍ରାଣମିତ
ଭସିଯାଉଅଛୁ କାମସାଗରେ । ଯାହିଁ ପ୍ରତୀକାର ତୋହୋ ବାହାରେ
ପଡ଼ି କହୁଛୁ ଚରଣ ତଳରେ । କର ସୁଦୟା ଲଗାଅ କୂଳରେ । ୧୫ ।
ଏତେ ଲେଖି ଲେଖକୁ ମୁଦ୍ରକଲା । ଆରତରେ ଇଷ୍ଟଦେବ ସୁମର
ଅହେ ମହାବାହୁ ତୁମ୍ଭ ଶରଣ । ପ୍ରିୟା ବିଚ୍ଛେଦ କର କି କାରଣ
ଗଜ ଅରତ ଶୁଣିଛ ସେକାଳେ । କଷ୍ଟ ନିଷ୍ଠୁର ହୋଉଛ ଏ କାଳେ
ଏ ବିପତ୍ତି ତୁମ୍ଭଙ୍କୁ କେତେକର । କିକେ କରୁଣା ମୋଠାରେ ନ କର
ଅଗଂଷ୍ୟା କର ମୁଁ ଲଭିବି ସ୍ୱାମୀକୁ । ବାମ ଲୋଚନା ମୋ ପ୍ରିୟତମାକୁ
ବଙ୍କନଗ୍ର—ନପତି ପଦ୍ମନାଭ । ଭଣେ ଏ ଗୀତ ଚନ୍ଦ୍ର ପ୍ରଦ୍ମନାଭ ।।

---

# ପଞ୍ଚତ୍ରିଂଶ ଛାନ୍ଦ

ରାଗ—ଚିନ୍ତା କେଦାର

ମୃଦୁ ଚଟାଉ ନୃପ କୁମର । ତାଙ୍କ ପାଶକୁ ବିଶ୍ୱାସ ଶୁଭ
କହିଲେ ତୁମ୍ଭେ ପ୍ରାଣ ପ୍ରିୟା ପାଶକୁ ସତ୍ୱର ଗମନ କର । ହେ ଚତୁର ॥
ସେ ଦେଶ ନରେଶ ପ୍ରିୟକୁମାରୀ । ଏଣେ ମଦନରେ ମୋତେ ମାରି
ମାତା ସଚେ୍ୟ ପିତା ସଦନକୁ ଗଲେ ବରଷକୁ କଷ୍ଟ କରି । ହେ ଚତୁର ।୨।
ଏବେ ସମ୍ପୂର୍ଣ୍ଣ ଅସେ ବେ ହେଲା । ଏତେକେବେଁ ତ ଦୟା ନୋହିଲା
ଏ ଲେଖ ଦେଇ ବୁଝିବ ଜୀବଧନ ମୋତେ ଅବା ମନୁ ପାସୋରିଲେ ହେ ଚତୁର
ତାଙ୍କୁ କହିବ ଏତିକ ଯାଇଁ । ଯେନ୍ତୁ ଯାହା ବିନୁ ନ ଜୀଅଇ
ତାଙ୍କୁ ତ ଏତିକ ଦୂର କରିବାର ଲେଶେ ଉଚିତ ନୁହଇ । ହେ ଚତୁର ॥
ଜୀଣା ଅଛି ଯାର ଯାହା ଗାନ । ସେ କି ଅଟଇ ଜୀବଣପାନି
ଦେହ ଯାଏ ପ୍ରାଣ ନ ଥିବ ତାହାକୁ କହିବ ଏତିକ ମାନି । ହେ ଚତୁର ॥
ସଙ୍କେତରେ ଯେବେ ନ ଆସିବ । କାମ କରିବ ମୋତେ ଅଶିବ
ଯେମନ୍ତେ ଏ ଲେଖ ପ୍ରବେଶରେ ଆଉ ପିତାପୁରେ ନ ରହିବ । ହେ ଚତୁର
ଏତେ କହିଣ ଉଦନ୍ତ ହେଲା । ସେ ଯେ ଯେନାଣ ମେଲାଣି ହେଲା
ଚନ୍ଦ୍ରବଦନେ ପ୍ରାଣପ୍ରିୟା ସଦନରେ ଯାଇଣ ପ୍ରବେଶ ହେଲା । ହେ ରସିକେ ॥
ପ୍ରିୟ ସଖୀଦ୍ୱାରେ ଲେଖ ଦେଇ । କାନ୍ତ ଶୁଭ ବାରତା ଜଣାଇ
ତହୁଁ ସେ ଜାଳ ସଖୀକି ଲେଖ ଦେଲା ନିଅବକାଶରେ ଯାଇ । ହେ ରସିକେ ।
ଯେବେ ଫେଡ ପଢ଼ିଲା ସୁନ୍ଦରୀ । ତହୁଁ ଲେଖା ହୋଇଛି ଏ ଭାଷା
ଅଟେ ନରେଶ ନନ୍ଦନା ଖଗରେଖା କଲୁ ତ ମୋତେ ନିଅଶା । ରେ ସ୍ୱଜନ !
ତୁଟେ ଏକା ପିତାପୁରେ ରହି । ଦିନ ବଞ୍ଚିବୁ କେମନ୍ତେ ସହି !
ଦହି ହୋଉଥିବ ହୃଦୟ ଭିତର ଥିବୁ କାହାମୁଖ ଚାହିଁ । ରେ ନାଗର ।୧୦।

ମୁଁ ଯେ ଅନେକ ତପସ୍ୟା କରି । ତୋତେ ପାଇଅଛୁ କୃଶୋଦର !
ନ ଧର ମୋ ଦୋଷ କୁତ୍ସିତ ଚିତ୍ତରେ ଆହେ ବିମ୍ବା ଅଧର । ରେ ନାଗର ! ॥
ତୋହୋ ଅଭାବେ ଜୀବନ ଧନେ । ଯାହା ବହିଲା ମୋର ଜୀବନ
ମନେ ଆଉ ଏହା ପରତେ ନ ଥିଲା ନାନା ଦୁଃଖେ ନେଲି ଦିନ । ରେ ନାଗର !
ଗଳା ମାଳା ପରି ବାଳା ମୋର । କରିଥିଲି ମୁଁ ହେଲୁ ଅନ୍ତର
ଅନ୍ତର ଗତରେ ମନ୍ତ୍ର ପରାଏ ଚିନ୍ତୁଅଛୁ ନିରନ୍ତର । ରେ ନାଗର ! ॥
ମୁଁ ଯେ ନୟନପ୍ରତିମା ପରି । ତୋତେ କରିଥିଲି ସୁକୁମାର !
ମାତିଗଲୁ ମୋତେ ମାଉ-ହାତେ ଦେଇ ରହିଲୁ ତୁ ପିତାପୁରୀ । ରେ ନାଗର !
ଏଥି ପାଇଁକି ନାହିଁ ବିଚାର । ଏକା କଥାଏ ଅଛୁ ମୋହୋର
ଧନ ! ତୋ ଅଧର-ସୁଧାପାନ ବିଣୁ ଜୀବ ନ ଯିବ ନିକର । ରେ ନାଗର ॥
ଜୀବ ଗଲେହେଁ ନୋହେଲା ଦୁଃଖ । ରହିବାରେ କି ପାଇଲି ସୁଖ
ଯାଇଥିଲେ ପ୍ରେତ ପ୍ରାୟ ହୋଇକରି ଖୋଜିଥାନ୍ତା ତୋହୋ ପାଖ । ରେନାଗର
ପଢ଼ି ଏମନ୍ତ କାନ୍ତ-ରଚନ । କାମ-ବାଣେ ହୋଇଲା ଉନ୍ମନ
ମାତାଙ୍କୁ କହି ନିଜ କାନ୍ତ ପାଶକୁ ଆସିବାକୁ କଲା ମନ । ସେ ନାଗର ! ॥
ହେମ ଦୋଳାକୁ ସଜ କରି । ତହିଁ ବସିଲା ନୃପକୁମାରୀ
ଅସରି ପଥେ ବନେ ଘନେ ରହିଣ ପ୍ରବେଶ ନାଥଙ୍କ ପୁରୀ । ସେ ନାଗର ! ॥
ତହୁଁ ଅବରୋଧରେ ମିଳିଲା । ଜାଣି କାନ୍ତ ପାଶେ ଆଇଲା
ଭେଟେ ଭେଟେ ଅନୁରାଗ ଭରେ ବାଳା କାନ୍ତ ପାଦରେ ନମିଲା । ସେ ନାଗର !
ଏହା ଦେଖି ବୀର ଯୁବାମଣି । ପଡ଼ି ରାମା ପାଦତଳେ ପୁଣି
କାତରେ ଯୁବତୀ ବେହନଭୁଜେ ତୋଳି କୋଳେ ବସାଇଲା ଆଣି । ସେ ନାଗରି
କହେ ବନସ୍ତ ନରେଶ ସୁତ । ପ୍ରାଣବନ୍ଧୁ ମୁଁ ତୋ କ୍ରୀଡ଼ା ଭୃତ୍ୟ
ଜୀବନ ରଖ ଜୀବନବନ୍ଧୁ ! ଅଗ ଦେଇଣ ମୋତେ ସୁରତ । ରେ ନାଗରି ! ॥
ଶୁଣି ସୀତ୍କାର ବାଞ୍ଛା କଲା । ରତେ ପ୍ରଦ୍ୟୁମ୍ନ ତୋଷିଲା

କ୍ଷୁଧାର୍ତ୍ତ ଅଳି ଅରବିନ୍ଦ ମରନ୍ଦପାନେ ଯଥା ଭୃଙ୍ଗ ହେଲା । ହେ ରହିବେ ॥
ଯୁବା କଲା ପୁଣ ଆଲିଙ୍ଗନ । ବନ୍ଧବିଧାନରେ ଦେଇ ମନ
ସୁରତ ନାନା ପ୍ରକାରେ ଅରମ୍ଭିଲା ବଦନେ ଦେଇ ଚୁମ୍ବନ । ସେ ନାଗର ॥
ରତିଅନ୍ତେ ବେନି ଜନେ ତୋଷ । ପ୍ରିୟ ପ୍ରିୟାଙ୍କୁ କଲା ସୁବେଶ
ପରସ୍ପରେ ମୁଖ ଶୁଦ୍ଧ ନସ୍ତ୍ରରଲେ ଲଭିଲା କାମ-ହୁତାଶ । ହେ ରହିବେ ॥
ବାଲା ପ୍ରିୟାଙ୍କୁ କର ଆଶ୍ୱାସ । କହେ ମଧୁରେ ବିନୟ ଭାଷ
ରହିବେ ଆଗରେ ଶୁଣିମ ଭଣିଲେ ପଦ୍ମନାଭ ଏହୁ ରସ ହେ ସୁଜନେ ।୨।୫

---

# ଷଟତ୍ରିଂଶ ଛାନ୍ଦ

ରାଗ—କାମୋଦି

ସୁରତଅନ୍ତେ ପାଶେ ବସି ରମଣୀ ଭାଷେ
ପ୍ରିୟଙ୍କୁ ବିନୟ ଉତ୍ତର
ମୁହିଁ ତ ଅପରାଧୀ ତୁମ୍ଭେ କ୍ଷମା-ଜଳଧି
କେବଳ ନାହିଁ ଦୋଷ ମୋର
ହେ ପ୍ରାଣପ୍ରିୟ !
ଜନନୀ-ବ୍ରତ ସକାଶରୁ
ଅନ୍ତର ହୋଇଲି ପାଶରୁ
ଅମୃତ ଥିଲେ ଲବେ ମୃତୁଛନ୍ତି କି ଜୀବେ
ଛାଡ଼ିଲି ମୋ ପାପବଶରୁ ହେ । ୧ ।

ମୋର ନୟନ ମନ ତୁମ୍ଭଠାରେ ଜୀବନ
ଅନବରତେ ରହିଥିଲା
ଶୟନ ସପନରେ ଦେଖଇ ରଜନୀରେ
ଏ କେଉଁ ଜୀବନ ରହିଲା
ହେ ପ୍ରାଣପ୍ରିୟ !
ଦେଖିଲି ଏବେ ତୁମ୍ଭ ମୁଖ
ପାଶୋର ଗଲା ସବୁ ଦୁଃଖ
ମୁହିଁ ଅତି ନିରେଖ ମୋଠାରୁ ସବୁ ଦୁଃଖ
ବିନାଶ କର ପାଶେ ରଖ ହେ । ୨ ।

କ୍ଷଣେ ଛାଡ଼ିବି ନାହିଁ ଦାସୀର ଦାସୀ ହୋଇ
ପାଶରେ ସେବା କରିଥିବି

ଭାର୍ଯ୍ୟା ହେଲେ ଯେତେ ଭଜୁଥିବ ସ୍ୱତନ୍ତ୍ରେ
ଜୀବନେ ଅନ୍ତର ନୋହୁବ
ହେ ପ୍ରାଣପ୍ରିୟ !
ଉପେକ୍ଷା ନ କରିବ ମୋତେ
ଉଚିତ ଅଟେ ଏପରିରେ
ସେବକ ହୋଇଥିଲେ ଅପରାଧୀ ହୁଅଇ
ପ୍ରଭୁ ହୋଇଲେ କ୍ଷମା କରେ ହେ । ୩ ।

ଏହୁ ଚନ୍ଦ୍ର କିରଣ ଅନଳ ସମ ହୋଇ
ଝାଞ୍ଜିର ମୋର ଦେହେ ହୁରୁ
ଏବେ ଉଦ୍ଧାର କର ହୋଇଲି ସୁଖକର
ତୁମ୍ଭ ପରଶ ଲଭିବାରୁ
ହେ ପ୍ରାଣପ୍ରିୟ !
ସଂଯୋଗେ ହୋଏ ସବୁସୁଖ
ବିୟୋଗଠ'ରୁ ନାହିଁ ଦୁଃଖ
କାମ ବାଣ ହାନିଲେ କି କରନ୍ତା ମୁଁ ଯେବେ
ଛାଡ଼ନ୍ତି ନାହିଁ ତୁମ୍ଭ ପାଖ ହେ । ୪ ।

ହୃଦରେ ଦିନ ମୋର କଟଇ ଥର ଥର
ତୁମ୍ଭ ସଙ୍ଗରେ ନ ଥିବାରୁ
କି କରନ୍ତା ସେ ମୋତେ ନ ଭରନ୍ତି କକ୍ଷରେ
ଅନ୍ତର ନିଦହନ୍ତି କୋଇଲୁ
ହେ ପ୍ରାଣପ୍ରିୟ !
ସୁଖେ ମୁଁ ନଥନ୍ତି ନଶିକି
ନିହନ୍ତି ଭାବେ ଦୟିତା କି

ଏବେ ସେ ହୃଦୁ ମୋତେ ଅପସରିବ କେତେ
ପ୍ରବେଶେ ଓଜେ ରଖିବ କ ହେ । ୫ ।

ଘୋର ଶିଶିରନିଶା ଦେଉଛି କେତେ ଦଶା
ଆସଇ ନାହିଁ ନେତେ ନିଦ
କଟ ଛନ୍ଦିରେ ପୁଣ ନେବାକୁ ମୋର ପ୍ରାଣ
ମଦନ କଲା ପରମାଦ
ହେ ପ୍ରାଣପ୍ରିୟ !
ଉପାୟ ସବୁ ସରଗଲା
ମାରିବା କଥା ମୂଳ ହେଲା
ସମ୍ମୁଖ ହୋଇ ଶନ୍ଧ ଜୀବ ରଖିଲ ତହିଁ
ସ୍ୱପ୍ନେ ତୁମ୍ଭ ଦେଖାଇଲ ହେ । ୬ ।

ବସନ୍ତେ ମତ୍ତ ପିକ— ରବ କରେ ଚମକ
ହୃଦକୁ କୁଳଶ ପରାୟେ
କୁସୁମରେ ଭ୍ରମର ଭ୍ରମି କରେ ଝଙ୍କାର
ଚେତନା ନ ରହଇ ଦେହେ
ହେ ପ୍ରାଣପ୍ରିୟ !
ନବ ନବ ମାଳକା ଗନ୍ଧ
ମଦନ-ଶରେ ହୋଯେ ଦନ୍ଧ
ପ୍ରାଣ ଯେହ୍ନ ଯାହାର ତାକୁ କଲେ ଅନ୍ତର
ଧିକ ଏ ପୋଡ଼ଯାଉ ବହୁ ହେ । ୭ ।

ଗ୍ରୀଷମେ ତିରଷମ ପଗ ତପତାନଳ
ପ୍ରସନ୍ନ ହହେ ମୋ ଶରୀର

ପ୍ରାଣେଶ୍ୱର ଯେ କାଳେ		ଥିଲେ ମୁଁ ତୁମ୍ଭ କୋଳେ
ନ ଥାଆନ୍ତା ଡାଳୁ କଣ୍ଟ ଡ଼ର
ହେ ପ୍ରାଣପ୍ରିୟ !
ବଡ଼ କଷ୍ଟରେ ସେହୁ କାଳେ
ଜୀବକୁ ରଖିଲି ବ୍ୟାକୁଳେ
ଏବେ ସେହୁ ସନ୍ତାପ		ହୋଇଲା କେଣେ ଲୋପ
ବହିବାରୁ ତୁମ୍ଭର କୋଳେ ହେ । ୮ ।

ବରଷା କାଳେ ଘନ		ଅଛନ୍ତି ଦେଖି ମନ
ଉଚ୍ଛନ୍ନ ମୋର ହୋଉଥାଇ
ଘଡ଼ଙ୍କ ଘଡ଼ ଘନ—		ରଡ଼ ଶୁଣି ଜୀବନ
ଛାଡ଼ିଗଲା ପରି ହୁଅଇ
ହେ ପ୍ରାଣପ୍ରିୟ !
ବିଜୁଳି ଦେଖି ହୁଅ ମୋର
ତମକୁ ଥାଇ ନିରନ୍ତର
ଯେ କାଳେ ତୁମ୍ଭ ସଙ୍ଗ		ନ ଥିବାରୁ ଅନଙ୍ଗ
ତନୁକୁ ତନୁ କଲା ମୋର ହେ । ୯ ।

ସଙ୍କେତ ଶବଦକୁ		ଦେଇଥିଲି ତୁମ୍ଭଙ୍କ
ଏ ଘେନି ନ ପାରିଲା ଦହି
ନିର୍ମଳ ଚନ୍ଦ୍ରକର		ସୁରଚନ୍ଦନଚର୍ଚ୍ଚିତ
ହୋଇଲା ଦେଲେ ନାହିଁ ସହି
ହେ ପ୍ରାଣପ୍ରିୟ !
ନିକଟେ ବସି ମୋହୋ ପାଶେ
ପ୍ରବୋଧ କରନ୍ତି ବିଷାଦେ		।

ଗଲା ପ୍ରାଣ ରହିଲା   ସକଳ ଦୁଃଖ ଗଲା
ତୁମ୍ଭ ଉଦନ୍ତ ପରବେଶେ ହେ । ୧୦ ।

ଯହିଁ ଧନପୃ ଭାଷା   ଲେଖିଥିଲ ମୋ ଆଶା—
ସଶର ବେଗେ ବୃଦ୍ଧି କଲା
କ୍ଷଣେ ନ ରଖି ତାତ—   ସଦନରେ ତୁରତ
ତୁମ୍ଭ ପାଶକୁ ଅଣାଇଲା
ହେ ପ୍ରାଣପ୍ରିୟ !
ଦେଖିଲି ବଦନ ତୁମ୍ଭର
ପ୍ରାଣ କୃତାର୍ଥ ହେଲା ମୋର
କର ଧର କହୁଛି   ଯେତେ ଦୋଷ କରଛି
ସୁଦୟା ବଶେ କ୍ଷମା କର ହେ । ୧୧ ।

ଏତେ କହି ତରୁଣୀ   ରହିଲ ପାଦ ଧରି
ପ୍ରେମରେ ଗଦ ଗଦ ହେଲା
ପୁରୁଷବର ଜାଣି   ହୃଦେ ଲଗାଇ ଆଣି
ବଦନରେ ଚୁମ୍ବନ ଦେଲା
ସେ ଯୁବାବର !
ଦୂର ମନରୁ ସବୁ ଦୁଃଖ
ଲଭଲେ ପରସ୍ପରେ ସୁଖ
କଉତୁକରେ ଧନ   ହରନ୍ତି ବେନିଜନ
ଛଡ଼ାଛଡ଼ି ନୃତନ୍ତ ପାଖ ହେ । ୧୨ ।

ପ୍ରେମେ ବଶ ହୋଇଲେ   ବିଚ୍ଛେଦ ପାଶୋରିଲେ
। କ୍ରୀଡ଼ା କରନ୍ତି ହୋଇ ମେଳ

ଦମ୍ପତି ସୁଖ ସ୍ୱର୍ଗ— ସମ୍ପତ୍ତିରୁ ଅଧିକ
ମଣେ ସେ ଶେଷ କଲେ କାଳ
ହେ ଭକ୍ତଜନେ !
ପ୍ରବନ୍ଧ ହେଲା ଅପି ଶେଷ
ଛାନ୍ଦ ଗଣନାରେ ଛତିଶ
ଭଣେ ବାଙ୍କିରାଜନ ଚନ୍ଦ୍ର ନନ୍ଦନନନ
ପଦ୍ମନାଭ ଏହୁ ସୁରସ ହେ । ୯୩ ।




କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀ ବସନ୍ତ ଚରଣ ପଟ୍ଟନାୟକ ବି. ଏ. ଙ୍କ ଦ୍ୱାରା ମୁଦ୍ରିତ ।

# ରେଖା ଦୀପିକା

## ପ୍ରଥମ ଛାନ୍ଦ

୩ । ନିର୍ବାଣ—ମୋକ୍ଷ ।

୪ । ନେତ୍ର ମହୋତ୍ସବ—ଆଖିର ନିରନ୍ତର ଆନନ୍ଦ ।

୬ । ଏହି ପଦରେ ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରାର ବର୍ଣ୍ଣନା କରାଯାଇଅଛି । ଯଥା :—ସ୍ନାନ—ଜ୍ୟେଷ୍ଠ ପୂର୍ଣ୍ଣିମାର ସ୍ନାନଯାତ୍ରା । ସ୍ୟନ୍ଦନାରୋହଣ—ଆଷାଢ଼ ଶୁକ୍ଳ ଦ୍ୱିତୀୟାର ଗୁଣ୍ଡିଚା ଯାତ୍ରା । ନିଦ୍ରା ଶୟନ—ଆଷାଢ଼ ଶୁକ୍ଳ ଦ୍ୱାଦଶୀ ହରି ଶୟନ । ଯାମ୍ୟାୟନ— ଦକ୍ଷିଣାୟନ ଅର୍ଥାତ୍ କର୍କଟ (ଶ୍ରାବଣ) ସଂକ୍ରାନ୍ତି । ଉଦ୍ୱର୍ତ୍ତନ—ଭାଦ୍ର ଶୁକ୍ଳ ଏକାଦଶୀ ପାର୍ଶ୍ୱ ପରିବର୍ତ୍ତନ । ଦେବ ଉତ୍ଥାପନ—କାର୍ତ୍ତିକ ଶୁକ୍ଳ ଏକାଦଶୀ । ଓଢ଼ଣ—ମାର୍ଗଶିର ଶୁକ୍ଳ ଷଷ୍ଠୀ । ପୁଷ୍ୟାଭିଷେକ—ପୌଷ ପୂର୍ଣ୍ଣିମା । ମକର ନିଜର—ମକର ସଂକ୍ରାନ୍ତିର ମକର ବେଢ଼ା । ଦୋଳ— ଫଗୁଣ ପୂର୍ଣ୍ଣିମା । ଦମନକଭଞ୍ଜନ—ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ, ଏ ଦିନ ବଧ ପୂର୍ବକ ଜଗନ୍ନାଥଙ୍କ ଦଅଣା ଲାଗି କରନ୍ତି । ଚନ୍ଦନ—ବୈଶାଖ ଶୁକ୍ଳ ତୃତୀୟା—ଅକ୍ଷୟ ତୃତୀୟା ।

୮ । ଦ୍ୱିପଞ୍ଚଦଶ—ଦ୍ୱାଦଶ (ବାର) ।

୯ । ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ—ଚଉଦ ଭୁବନ । ସପ୍ତ ପାତାଳ ଓ ସପ୍ତ ସ୍ୱର୍ଗର ସମଷ୍ଟି । ସପ୍ତ ପାତାଳ ଯଥା :—ତଳ, ଅତଳ, ବିତଳ, ସୁତଳ, ରସାତଳ, ପାତାଳ । ସପ୍ତ ସ୍ୱର୍ଗ ଯଥା :—ଭୂ, ଭୁବ, ସ୍ୱ, ତପ, ଜନ, ମହ, ସତ୍ୟ ।

୧୨ । ଅବନୀ — ପୃଥିବୀ ।

୧୩ । ଉତ୍‌ଫୁଲ୍ଲ ବଦନ—ଉଲ୍ଲସି ମୁଠେ ।

୧୪ । ଭଦ୍ରା—ସୁଭଦ୍ରା । ତଥି — ତାହା ।

୧୫ । ପଟ୍ଟହ—ରଣ ଢକା ବା ନାଗରା ।

୧୬ । ନିଷେଷରେ—ଅଳ୍ପକରେ, ଅକ୍ଳେଶରେ ।

୧୭ । ପ୍ରାସାଦୁଁ — ଦେଉଳରୁ । ନୀଳଗିରି ଦରୀ—ନୀଳ ପର୍ବତର ଗୁହାରୁ ।

୧୮ । ସ୍ୟନ୍ଦନ—ରଥ । ଜଗବନ୍ଦନ—ଜଗତର ପୂଜ୍ୟ ଜଗନ୍ନାଥ । ନାଗ — ପାତାଳର ଲୋକ । ତ୍ରିଦଶ—ସ୍ୱର୍ଗର ଲୋକ ଦେବତା ।

୧୯ । ସୁବସ୍ତ୍ରୀର୍ଣ୍ଣ ପୃଣ୍ଡ—ଅତି ଫର୍ଚ୍ଚା । ହରି — ସିଂହ । ଗିରିଶିର—ପର୍ବତ ଶୃଙ୍ଗ ।

୨୦ । ଜୀମୂତ—ମେଘ ।

୨୧ । ଇନ୍ଦ୍ରଦ୍ୟୁମ୍ନ ସତ୍ୟେ—ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ସଙ୍ଗେ ପୂର୍ବରୁ କରିଥିବା ସତ୍ୟ ପାଳିବା ନିମିତ୍ତ । (ସ୍କନ୍ଦ ପୁରାଣ, ବ୍ରହ୍ମ ପୁରାଣ ଓ କ୍ଷେତ୍ର କଳ୍ପତରୁ ଦ୍ରଷ୍ଟବ୍ୟ) ।

୨୩ । ଲଙ୍କା ନୃପକୁ—ବିଭୀଷଣଙ୍କୁ ।

୨୪ । ସାରଣା—ଦାନ ।

୨୫ । ଭୃତ୍ୟଜନର—ସେବକମାନଙ୍କର ।

୨୬ । ଠାକୁରାଣୀଙ୍କି—ଲକ୍ଷ୍ମୀଙ୍କି । ସୁରେ—ଦେବତାମାନେ ।

୨୮ । ଅଳଣ୍ଡ ଜ୍ୱଳନେ—ଅଳଣ୍ଡ ଅଲୁଅରେ ଜମା ଅଳଣ୍ଡ ଜଳିବାରୁ ।

୨୯ । ଇନ୍ଦ୍ର ବଧୂ—ଇନ୍ଦ୍ର, ବ୍ରହ୍ମା ।

୩୨ । ବ୍ରହ୍ମାଣ୍ଡ ରଚନା—ସୃଷ୍ଟି କରିବା ନିମନ୍ତେ ।

୩୬ । ମନୁଷ୍ୟଚୟ—ମନୁଷ୍ୟମାନେ । ଅଗାଧଜଳଧି—ଗଭୀର ସମୁଦ୍ର ।

୩୭ । ଅସମର୍ଥ—ଅସଙ୍ଗତ ।

୪୦ । ସୂର୍ଯ୍ୟ—ତୁଲ୍ୟ । ରଶ୍ମି—ଧାର (କିରଣ) ।

୪୨ । ନାରିକେଳ—ନଡ଼ିଆ ।

୪୪ । ଗର୍ଭ—ସୀମା, ଶେଷ (ଭାବର ଗଭୀରତା) ।

୪୫ । ବଙ୍କ ନଗର ଈଶ—ବାଙ୍କି ରାଜା ।

---

## ଦ୍ୱିତୀୟ ଛାନ୍ଦ

୧ । ଶ୍ରବଣରେ—କାନରେ । ଦେଲେ ଶ୍ରବଣ—ଶୁଣିଲେ । ସୁଧା ପ୍ରକାର—ଅମୃତ ପରି ।

୨ । ସଲିଳ ଲୀଳା—ଜଳକ୍ରୀଡ଼ା, ପାଣିରେ ପହଁରିବା ଓ ବୁଡ଼ିବା ପ୍ରଭୃତି ।

୩ । ଗିରିରାଜସୁତା ନନ୍ଦନ—ପାର୍ବତୀଙ୍କ ପୁତ୍ର । ଚତୁଃସମ—ଚନ୍ଦ୍ରସାର, ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ—ଏହି [illegible] ଦ୍ରବ୍ୟ ସମାନ ଭାବରେ ମିଶି ଚତୁଃସମ ହୁଏ । [illegible] ଲଭ—[illegible] ଲାଭ କର । କର୍ଦ୍ଦମ—କାଦୁଅ । ବିଭୂତି ପାଉଁଶ ।

୪ । ଖଣ୍ଡ ପରଶୁ—ମହାଦେବ । କୁମ୍ଭୀମୁଣ୍ଡକ—କୁଣ୍ଡେଇପୁଅ ।

୫ । ଅମ୍ବିକା—ପାର୍ବତୀ । ନନ୍ଦିନୀ—କନ୍ୟା ।

୬ । ଗିରିଶ—ମହାଦେବ ।

୭ । କୋଟି କନ୍ଦର୍ପଜିତ—କୋଟିଏ ମଦନଙ୍କୁ ଜିଣି ପାରୁଥିବା । ସୁଷମା—ଶୋଭା ।

୮ । ଟିକ ଟିକା—ମହାଦେବ ପାର୍ବତୀ । ମୁଦରେ—ଆନନ୍ଦରେ ।

୯ । ନିଳମୂର୍ତ୍ତି—ଘରକୁ ।

୧୦ । ଈଶ୍ୱର—ମହାଦେବ । ଗିରଜା—ପାର୍ବତୀ ।

୧୧ । ଉପବନ—ବଗିଚା ।

୧୨ । ଶିବପ୍ରଦ—ମଙ୍ଗଳଦାୟକ ।

୧୩ । ଆରାମ ପୂରେ—ବଗିଚା ଭିତରେ ଥିବାଘରେ ।

୧୬ । ଏଣୀ ଈକ୍ଷଣୀ—ହରିଣ ନୟନା ।

୧୮ । ଶିବଭବାନୀ—ମହାଦେବ ଓ ପାର୍ବତୀ । ପୁଷ୍ପାବଚୟେ—ଫୁଲତୋଳିବାରେ ।

୧୯ । ଆରାମ—ବଗିଚା । ରାମ—ସୁନ୍ଦର । ରତିପତିସାୟକ—କନ୍ଦର୍ପର ବାଣ । ସଜ୍ଜସ୍ଥ ଧାମ—ରହିବାସ୍ଥାନ ।

ମକରନ୍ଦେ—ଫୁଲ ମହୁରେ । ମିଳନ୍ତେ—ଭ୍ରମରମାନେ । ଅତନୁ—କନ୍ଦର୍ପ ।

୨୨ । ଚନ୍ଦ୍ରସୁବାସପାଣି—କର୍ପୂର ପକା ବାସନା ପାଣି ।

୨୩ । ଚଞ୍ଚଳା—ବିଜୁଳି । ଅଚଳାତଳେ—ପୃଥିବୀରେ ।

୨୪ । ନଳନୀଦଳେ—ପଦ୍ମପତ୍ରରେ । କଳହଂସୀ—କଳକଳ ଶବ୍ଦ କରୁଥିବା ହଂସୀ । ପ୍ରମଦା—ସ୍ତ୍ରୀ (ଚନ୍ଦ୍ରକାନ୍ତ) । ପ୍ରପଦ—ପାଦ । ମୋଦ—ଆନନ୍ଦ,ହର୍ଷ ।

୨୫ । ସଂପୁଷ୍ଟକସ୍ତନା—ଫରୁଅପରି ମନୋରମ କୁଚ ଯାହାର, ଏପରି ଯେ ଚନ୍ଦ୍ରକାନ୍ତ । ଅନଙ୍ଗପାଶେ—ବଗିଚା ପାଖରେ । ଅତନୁ—କନ୍ଦର୍ପ । ତନୁଦେଶେ—ଦେହରେ

୨୬ । ଅନ୍ତରେ—ହୃଦରେ । ନେତ୍ରାନନ୍ଦ ସ୍ୱରୂପେ—ନିଜରୂପରେ ଆଖିକୁ ଆନନ୍ଦ ଦେଉଛି ।

୨୮ । ଲତା ଅନ୍ତରେ—ଲଟା ଉହାଡ଼ରେ ।

୨୯ । ଅନୁରାଗ—ସ୍ନେହ ।

୩୦ । ଶୁଭ୍ରଲୋଚନା—ଯାହାର ଅଖି ଦଉଟ ଦେଖିବାକୁ ଖୁବ୍ ସୁନ୍ଦର—ଏପରି ଯେ ଚନ୍ଦ୍ରକାନ୍ତ । ଶୋଭା କଲାପ—ଶୋଭାରାଶି

୩୧ । ପଞ୍ଚଶର—ମଦନଦେବତା ଯଥା—ସମ୍ମୋହନ, ଉନ୍ମାଦନ ଦହନ, ଶୋଷଣ ଓ ଉଗ୍ରଟନ । ଅନ୍ୟ କେତେଙ୍କ ମତରେ ଅରବିନ୍ଦ, ଅଶୋକ, ଚୂତ, ନବମାଳିକା, ଓ ନୀଳୋତ୍ପଳ—ଏହି ପାଞ୍ଚୋଟି କନ୍ଦର୍ପର ବାଣ । ଅମର ପତି—ଇନ୍ଦ୍ର । ରଜନୀକର—ଚନ୍ଦ୍ର ।

୩୨ । ବନ ଲୋକନ—ବନ ଦର୍ଶନ ।

୩୩ । ସଦାଶିବ—ମହାଦେବ ।

୩୩ । ଲବ—ଅଳ୍ପମାତ୍ର ।

୩୪ । କେଶରି ମୂଳ—ନାଗେଶ୍ୱର ଗଛମୂଳ । ମରକତ ଶୁଭ୍ର ବେଦୀ—ମର୍କତରେ ତିଆରି ହୋଇଥିବା ସୁନ୍ଦର ମଣ୍ଡପ ।

୩୫ । ମନ୍ଦ ଗନ୍ଧବାହ—ଧୀର ପବନ । ଦୋଳାୟମାନକୁ ଭଜନ୍ତି—ଦୋହଲନ୍ତି । ଦୃଶ ହେଲା—ଦେଖାଗଲା ।

୩୭ । ଲଲିକା-ଗଗନେ—ଲଟା ହେଲା ଆକାଶ ତାହାରେ ସଂପୂର୍ଣ୍ଣ ଶଶୀ—ପୂର୍ଣ୍ଣଚନ୍ଦ୍ର । ମୋ......ଶ୍ରେଣି—ମୋର ଅଖି ଦଉଟ ହେଲା ଚକୋର ପକ୍ଷୀ । ସେ ତାହା ଅଲୁଥ ପିଇ ଆନନ୍ଦ ପାଏ । ଏଠାରେ ଚନ୍ଦ୍ରକାନ୍ତ ମୋ ଅଖିରୂପକ ଚକୋରକୁ ଆନନ୍ଦ ଦେଉଥିବା ଅମୃତ ଅର୍ଥାତ୍ ତାହା ଅଲୁଥ ପରି ଅଟେ ।

୩୮ । ହରଷ-କ୍ଷୀରାବ୍ଧି—ଆନନ୍ଦ ରୂପ କ୍ଷୀର ସମୁଦ୍ର । ଦମ୍ଭୋଳିକୁ ତଳିଲା—ଉଲୁସି ଉଠିଲା । ହୃଦୟକାନ୍ତଚନ୍ଦ୍ରମଣି—ହୃଦୟ ହେଲା ଚନ୍ଦ୍ରକାନ୍ତମଣି । ଚନ୍ଦ୍ର କିରଣରେ ଚନ୍ଦ୍ରକାନ୍ତ ମଣି ତରଳିଯାଏ ।

ସେହିପରି ଚନ୍ଦ୍ରକାନ୍ତିଙ୍କୁ ଦେଖି ମୋ ହୃଦୟ ତଳେ ଲେ। ଦୃଷ୍ଟିଭୂତ — ଚରଳ ଯିବା।

୩୯। ସନ୍ତାପ ଚକ୍ର — ଦୁଃଖ ହେଲା ଚକ୍ରବାକ ପକ୍ଷୀ। ଶ୍ରୀରାମଚନ୍ଦ୍ରଙ୍କ ଅଭିଶାପରୁ ଚକ୍ରବାକ ପକ୍ଷୀଙ୍କର ରାତ୍ରିରେ ମିଳନ ନ ହୋଇ ବିରହରେ ରହେ। ଏଠାରେ ଚନ୍ଦ୍ରକାନ୍ତି ଚନ୍ଦ୍ରପରି ହେଲା ଏବଂ ସନ୍ତାପ ବା ଦୁଃଖ ଚକ୍ରବାକ ପକ୍ଷୀ ହେଲା ଅର୍ଥାତ୍ ତାଙ୍କୁ ଦେଖି ଦୁଃଖ ବେଶି ବଢିଲା। ଧୈର୍ଯ୍ୟଜଳଜ-ମନର ଦମ୍ଭ ହେଲା ପଦ୍ମ। ଜଳଜ — ପଦ୍ମ ଫୁଲ ପଡିବା। ଚନ୍ଦ୍ର କିରଣରେ ପଦ୍ମବନ ମଉଳି ଯାଏ। ସେହିପରି ଚନ୍ଦ୍ରକାନ୍ତିଙ୍କୁ ଦେଖି ମନର ଦମ୍ଭ ଭାଙ୍ଗିଗଲା।

୪୦। ଜ୍ଞାନ·····ଛନ୍ଦେ-ଚାରୁ ହସ ହେଲା ଜହ୍ନ ଆଲୁଅ (ଚନ୍ଦ୍ରିକା)। ତହିଁରେ ମୋର [କଷ୍ଟାନନ୍ଦର] ଜ୍ଞାନ-ଯେ କ (ତମ) ଅନ୍ଧାର ପର-ନାଶ ହେଲା ଅର୍ଥାତ୍ ବୁଦ୍ଧି ହଜିଗଲା। ମନସିଜ ଛନ୍ଦେ — କାମବେଭଳ ହୋଇ।

୪୧। ଶୋଭନା ରମଣୀ ଗଣ ମସ୍ତକ ମଣି — ସୁନ୍ଦରୀ ସ୍ତ୍ରୀମାନଙ୍କ ମୁଣ୍ଡର ମଣି ଅର୍ଥାତ ସବୁ ସୁନ୍ଦରୀଙ୍କ ମଧ୍ୟରେ ଶ୍ରେଷ୍ଠ।

୪୨। କଳଙ୍କ.. ..ବଦନା — କଳଙ୍କ (ଶଶାଚିହ୍ନ) ନ ଥିବା ଶରତ କାଳରେ ପୂର୍ଣ୍ଣେନ୍ଦୁ ପରି ମୁହଁ ଯାହାର — ଚନ୍ଦ୍ରକାନ୍ତି। କୁନ୍ଦରଦନା — କୁନ୍ଦ ଫୁଲର କଳିପରି ଦାନ୍ତ ଯାହାର—ଚନ୍ଦ୍ରକାନ୍ତି।

୪୩। ହର ଅନୁକମ୍ପା — ଶିବଙ୍କ ଦୟା। ଅନୁଜ୍ଞା — ଆଦେଶ ବା ଅନୁମତି।

୪୪। ସରାଗ···ଗ୍ରହିଁଲା — ସ୍ନେହଭରି ଓ ପ୍ରେମରେ ଛଳ ଛଳ ସୁନ୍ଦର ଚଞ୍ଚଳ ଆଖିରେ ଅନାଇଲା।

୪୬ । କୁମାର ·· ·· ନ ସେନ—ଚନ୍ଦ୍ରକାନ୍ତର ଅକ୍ଷି ଦର୍ଶନ୍ତି ଦେଲା ଖଞ୍ଜନ ପକ୍ଷୀପର । ସେ [କୁମାର] କନ୍ୟାଜନଙ୍କ ଉପରେ ପଡ଼ି ରହିଲା । ଚଞ୍ଚଳ ଅକ୍ଷି ଯେପରି ଅଂବାକୁ ଭ.ର ସାଧ [ଅନାୟାସରେ] ପାଇଲା ନାହିଁ ।

୪୭ । ଇଙ୍ଗିତ ଭଙ୍ଗୀରୁ—ଆଖିଠାରରୁ । ଅଧର—ଓଠ ।

ଫୁରୁଣା ହୃଦୟା—ସାନନ୍ଦ ହୃଦୟା ।

୫୦ । ରୁଚି ପ୍ରତୀକା—ଶୋଭନାଙ୍ଗୀ ।

୫୧ । ଅଞ୍ଚଳ- ଲୁଗା ।

୫୨ । ଅନଙ୍ଗ—କନ୍ଦର୍ପ । ସ୍ମରାସ୍ତ—ମନ୍ମଥ । ଷଡ଼କର—ଛଅ । ଅଙ୍ଗ—ଦେହ ।

୫୩ । ରୁଚିର ବଦନା—ସୁମୁଖୀ । ଅଚିର—ଶୀଘ୍ର ।

୫୭ । ପାର୍ବତୀ ପତି—ଶିବ ।

୫୮ । ଅଧୋମୁଖେ—ତଳମୁହଁ କରାଇ ।

୫୯ । ଶିବାବଦନଙ୍କୁ—ପାର୍ବତୀଙ୍କ ମୁହଁଙ୍କୁ ।

୬୨ । ବାଞ୍ଛିତ—ବାଞ୍ଛିଲା ପଦାର୍ଥ ।

୬୪ । ନୃପଶେଖର—ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

୬୮ । ପଟ୍ଟମହିଷୀ—ପାଟରାଣୀ ।

୬୯ । ସୁତାଲବ୍ଧ ଅର୍ଥେ—ଝିଅଟିଏ ପାଇବାକୁ ।

---

## ତୃତୀୟ ଛାନ୍ଦ

୧ । ଅଚଳା—ଅବଳା—ପୃଥିବୀ ରୂପ ସ୍ତ୍ରୀ । ଲୋକନେତ୍ରଭୃଙ୍ଗ ସାରସ—ଲୋକମାନଙ୍କ ଅକ୍ଷି ହେଲା ଭଅଁର । ସେ ନଗର ତାର ପଦ୍ମ ପର । ବିଶ୍ୱ······ଆଦରଣ—ବିଶ୍ୱକର୍ମାଙ୍କ ଦ୍ୱାରା ଶିଳ୍ପ ଭୂଷଣ ଘର

ପଡବା ବିଷୟରେ ସେ ପୁରକୁ ଗୋଟିଏ ଅଣି ପର ଅଛି । ଏହିପଦରେ ପୁଷ୍କର ଦେଶରେ ଥିବା ପଦ୍ମକର ନଗରର ସୁନ୍ଦରପଣିଆ ବର୍ଣ୍ଣନା କରି ଯାଉଛନ୍ତି । ସ୍ତ୍ରୀମାନଙ୍କର ସବୁ ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟରେ ମୁର୍ଦ୍ଧକୁ ଭାରି ସୁନ୍ଦର ଦେଖି ପରି ପୁଷ୍କର ଦେଶର ସବୁ ନଗର ମଧ୍ୟରେ ପଦ୍ମକର ନଗରକୁ ଭାରି ସୁନ୍ଦର । ପଦ୍ମ ଭଅଁରକୁ ଟାଣିଲା ପରି ସେ ନଗର ସମସ୍ତଙ୍କ ଆଖିକୁ ଆକର୍ଷଣ କରେ ଅର୍ଥାତ୍ ସେ ନଗରକୁ ଉପରେ ସମସ୍ତଙ୍କ ଆଖି ପଡ଼େ । ଆହୁରି ମଧ୍ୟ ସେ ନଗରର କାରୁକାର୍ଯ୍ୟ ଏତେ ସୁନ୍ଦର ଯେ ଦେଖିଲେ ମନେ ହୁଏ ସତେ ଯେପରି ବିଶ୍ୱକର୍ମାଙ୍କ ହାତରୁ ଖସିପଡ଼ି ଚିତ୍ରପଟ ଗୋଟିଏ ଖସି ସେଠାରେ ପଡ଼ିଛି ।

୨ । ଏହି ପଦରେ କବି ପଦ୍ମକର ନଗରକୁ ଦ୍ୱାରବତୀ ସଙ୍ଗେ ତୁଳନା କରି ଅଛନ୍ତି । ଦ୍ୱାରବତୀର ଚାରିପାଖେ ସମୁଦ୍ର ଥାଏ । ଏଠାରେ (ପରିଖା) ଗଡ଼ଖାଇ (ଜଳଧି) ସମୁଦ୍ର ପରି ହୋଇଅଛି ଏବଂ (ହିମାଳ) ଉଚ୍ଚ (କନକ ପ୍ରାକାର) ସୁନା ପାଚେରୀମାନ ଅଛି । ପୁଣି ଦ୍ୱାରବତୀରେ ଶତଧନ୍ୱ ନାମକ ଯାଦବ ଏବଂ (ବଳ) ବଳଭଦ୍ରଙ୍କର (ନାଳୟ) ଘରଥିଲା । ଏଠାରେ ଶତଧନ୍ୱ ଯୁକ୍ତବଳ ଅର୍ଥାତ୍ ଶତ ଶତ ଧନୁର୍ଦ୍ଧାରୀ ସୈନ୍ୟ (ବଳ) ଏବଂ ନାଳୟ ଘରମାନ ଅଛି । ତେଣୁ ଏହା ଦ୍ୱାରବତୀ ସଙ୍ଗେ ସମାନ ।

୩ । ଚାରୁ—ମନୋହର । ଶତଧନ୍ୱ—ଛନ୍ଦଧନ୍ୱ ରଥ୍ୟାପାଦପ —ରାସ୍ତାର ଦୁଇ କଡ଼ରେ ଦେବାପାଇଁ ଯେଉଁ ଗଛପତ୍ର ଅତି ଯତ୍ନରେ ଲଗା ଯାଇଥାଏ । ଶାଖାବନ୍ତ—ଝଙ୍କାଳିଆ । ଘଟନ—ତିଆରି ବା ଲଗାଯାଇଛି । ରତନ ବଡ଼ଭିଲୋକେ ଚହଟରେ ଉଆର ହୋଇଥିବା ଚନ୍ଦ୍ରଶାଳା ଗୃହ ଦର୍ଶନରେ । ଅଳକା ସଂପତ୍ତି—କୁବେରପୁର ଧନକୁ ।

୪ । ନୃପ ଅବରୋଧ—ରାଜାଙ୍କ ଅନ୍ତଃପୁର । ବିବୁଧପଥ—ଦେବତା ମାନଙ୍କ ଯିବା ଆସିବା ବାଟ ବା ଆକାଶ । ବିବୁଧ···ବୃତ୍ତି—ରାଜା ଅନ୍ତଃପୁର ଭିତରେ ଥିବା ଜଗତି ଏତେ ଉଚ୍ଚ ଯେ ତାହା ଆକାଶକୁ ଲାଗି ଦେବତାମାନଙ୍କ ଯିବା ଆସିବା ବନ୍ଦ କରି ଦେଇଅଛି । ସପ୍ତର୍ଷି ପଦରେ—ସପ୍ତର୍ଷି ନାମକ ନକ୍ଷତ୍ର ପୁଞ୍ଜରେ । ଏହି ତାରା ପୁଞ୍ଜର ନକ୍ଷତ୍ର ସଂଖ୍ୟା ସାତ ଏବଂ ଏରାଜାଙ୍କ ପୁର ସାତ ଏହିପରି ଭାବରୁ କବି ଦୁହିଁଙ୍କର ମୈତ୍ରୀଭାବ ପ୍ରକାଶ କରି କହୁଛନ୍ତି—ପୁର ତାହା ସହି ସପ୍ତର୍ଷି ଗୋଡ଼ ତଳେ ମୁଣ୍ଡ ଲଗାଇଅଛି । ଅର୍ଥାତ୍ ପୁର ସାତମହଲା ହୋଇ ଥିବାରୁ ଅତି ଉଚ୍ଚ ହୋଇଅଛି ।

୫ । ପୁଷ୍ପବନ୍ତ—ଚନ୍ଦ୍ର ଓ ସୂର୍ଯ୍ୟ । ହୀରା (ଶୁକ୍ଳ ବର୍ଣ୍ଣ) ମାଣିକ୍ୟ (ରକ୍ତବର୍ଣ୍ଣ) କଳସ ନୀଳମଣି—ନେଳିଆ ମଣିରେ ତିଆରି ହୋଇଥିବା କଳସ । ପୀତ କେତନ—ହଳଦିଆ ପତାକା । ନିତ୍ୟପ୍ରଭା—ଅନେକ ସମୟ ଯାହାର (ପ୍ରଭା) ଅଲିଭ ରହେ । ଶମ୍ପାକମ୍ପନ—ବିଜୁଳି ଝଟକ ।

୬ । ସୁର ସଭା—ଦେବତାମାନଙ୍କ ସୁଧର୍ମା ସଭା । ଗନ୍ଧର୍ବ—ସ୍ୱର୍ଗର ଗାୟକ ଜାତି, ଯାହା [illegible] । ସୁନାସୀର—ଇନ୍ଦ୍ର । ସର୍ବ—ମହାଦେବ । ଜ୍ଞ—ବୁଧ । ରାଜା—ଚନ୍ଦ୍ର । ସେନାନୀ—କାର୍ତ୍ତିକେୟ । ଗଣାଧିପ—ଗଣେଶ । ଗୁରୁ—ବୃହସ୍ପତି । କବି—ଶୁକ୍ର । ପୁରପକ୍ଷରେ—ଗନ୍ଧର୍ବ—ଗାୟକ । ସୁନାସୀର—ହଳ ମୁଖିଆ ମୁଖିଆ ସୈନ୍ୟ କର୍ମା ସୂନା ପଦାତି ବାନ୍ଧି ଥିବା ଲୋକ । ସର୍ବଜ୍ଞ—ପଣ୍ଡିତ ବା ତିନିକାଳର କଥାମାନ ଜାଣିପାରୁଥିବା ଲୋକ ସିଦ୍ଧ ପୁରୁଷ । ରାଜା—ଅନ୍ୟାନ୍ୟ ସାମନ୍ତରାଜା । ସେନାନୀ—ସେନାପତି । ଗଣାଧିପ—ଲୋକନେତା ବା ପ୍ରଧାନ । ଗୁରୁ—ମାନ୍ୟ ଲୋକ । କବି—ସାହିତ୍ୟରେ କୁଶଳ ଲେଖକ

ପୁନଶ୍ଚ ଏହି ପୁର ପାତାଳ ପର ହୋଇଅଛି । ସେ ହେତୁ ପାତାଳରେ :—ବଳ—ବଳରାଜା, ଓ ନାଗଗଣ—ଅଷ୍ଟକୁଳାଦି ନାଗ ଥାନ୍ତି ଏବଂ ଏ ପୁରୀରେ ବଳୀ ନାଗଗଣ—ବଳୁଆ ହାତୀମାନେ ଅଛନ୍ତି ।

୭ । ଏହି ପଦରେ ପୁରକୁ କବି ମଥୁରା ଏବଂ ସାଗର ବୋଲି ବର୍ଣ୍ଣନା କରିଅଛନ୍ତି । ଯଥା—ମଥୁରା ପକ୍ଷରେ:—ଅକ୍ରୂର, ଉଦ୍ଧବ, ସୁନ୍ଦ ଥ କଂସାରି=ଶ୍ରୀକୃଷ୍ଣ, ଓ ବସୁଦେବ=ଶ୍ରୀକୃଷ୍ଣଙ୍କ ପିତା । ପୁରପକ୍ଷରେ ଅକ୍ରୂର—ହିଂସା ଶୂନ୍ୟ ଲୋକ, ଉଦ୍ଧବ—ମତ୍ତହସ୍ତୀ, ମତ୍ତକମନଳାହ୍ । ସୁରଥ—ଭଲଭଲ ରଥ; କଂସାରି—କଂସା ବ୍ୟବସାୟୀ, ଓ ବସୁଦେବ—ବଡ଼ ଧନୀଲୋକ । ସାଗର ପକ୍ଷେ—ପୋତ—ଜାହାଜ । ପୁରପକ୍ଷେ—ପୋତ—ପିଲାବାଳକ ।

୮ । ଏହି ପଦରେ ସେ ପୁରକୁ କବି ବୃନ୍ଦାବନ ବୋଲି ବର୍ଣ୍ଣନା କରିଅଛନ୍ତି । ନେତ୍ର ସୁଦ୍ଦ୍ୟୋଦୟ—ଚକ୍ଷୁର ଆନନ୍ଦ ଦାୟକ । ବୃନ୍ଦାବନ ପକ୍ଷରେ—ହରି—ଶ୍ରୀକୃଷ୍ଣ, ସୁବଳ, ବଳ ମଧୁମଙ୍ଗଳ, କୋକିଳ,ଉଜ୍ଜ୍ୱଳ ପ୍ରଭୃତି କୃଷ୍ଣଙ୍କ ସଖା ଏବଂ ଗୋବର୍ଦ୍ଧନ ପର୍ବତ କମା ଚନ୍ଦ୍ରାବଳୀଙ୍କ ସ୍ୱାମୀ ଗୋବର୍ଦ୍ଧନ ମଲ୍ଲ ପ୍ରକଟ ହୋଇଛି । (ସୁଭଦ୍ର, କୁଣ୍ଡଳ, ଦଣ୍ଡୀ, ମଣ୍ଡଳ, ସୁନନ୍ଦ, ନନ୍ଦୀ, ଅନନ୍ଦ ଶୁନନ୍ଦ, ମଣ୍ଡଳୀ, ଭଦ୍ର, ଭଦ୍ରବର୍ଦ୍ଧନ ଗୋଭଟ୍ଟ ଯକ୍ଷେନ୍ଦ୍ର, ଭଟ୍ଟ. ଭଦ୍ରାଙ୍ଗ ବୀରଭଦ୍ର, ମହାଗୁଣ କୁଳବୀର, ମହାଭୀମ, ଦିବ୍ୟଶକ୍ତି, ସୁରପ୍ରଭ, ରଣସ୍ଥିର ବିଶାଳ, ବୃଷଭ, ଓଜସ୍ୱୀ, ଦେବପ୍ରସ୍ଥ, ବାରୁ ଥପ, ମହାବ ଭୂସୁମାପୀଡ଼ ମଣିବନ୍ଧକର, ମନ୍ଦର, ଚନ୍ଦନ, କୁନ୍ଦ, କଳନ୍ଦ, କୁଳିକ, ଦାମା, ଶ୍ରୀଦାମା, ସୁଦାମ, ବସୁଦାମ. କିଙ୍କିଣୀ, ଭଦ୍ରସେନ, ଅଂଶୁ, ସ୍ତୋକକୃଷ୍ଣ, ପୁଣ୍ଡରୀକ, ବିଟଙ୍କ, କଳବୀକ, ପ୍ରିୟଙ୍କର, ସୁବଳ, ଅର୍ଜୁନ, ଗନ୍ଧର୍ବ ବସନ୍ତ, ଉଜ୍ଜ୍ୱଳ, କୋକିଳ, ମନୋହର, ହାଦସ୍ଥ) ଏମାନେ କୃଷ୍ଣଙ୍କ ସଖା । ପୁରପକ୍ଷରେ—ହରି—ମାଙ୍କଡ ବେଙ୍ଗ, ଶୁଆ, ବା

ସାପ । ସୁବଳ—ଉତ୍ତମ ସେନା । ବଳ-ସାଧାରଣ ସୈନିକ, ତମ୍ଭା ସୁବଳ ବଳ—ଅଳ୍ପବଳଶାଳୀ ସେନା । ମଧୁମଙ୍ଗଳ—ମନୋହର ଉପବାଦ । କୋଢଳ—କୋଳାହଳ । ବୃନ୍ଦାବନରେ ଅଶୋକ ବୃକ୍ଷ ଥିବାରୁ ତାହା ଅଶୋକବନ୍ତ—ଏଠାରେ ଶୋକ ନ ଥିବାରୁ ଅର୍ଥାତ ଅନ୍ୟକଥାରେ ତାହା ଅଶୋକବନ୍ତ ଥିବାରୁ ଏଥିରେ ମେନ ମନ୍ଦ ଅଛି ।

୯ । ପଦ୍ମାକର—ପୋଖରୀ । ସ୍ୱଚ୍ଛତର ନୀର ପୂରିତ—ଅତିସଫା ପାଣିରେ ଭରା । କଇରବ—କଇଁଫୁଲ । ଧୂମଗ ପାଣ୍ଡୁ—ମୂଳ ଧୂଳରେ ଧୂସର ବା ପିଙ୍ଗଳ-ବର୍ଣ୍ଣ । ମଧୁବ୍ରତ—ଭଅଁର । ସଜଳୀ ସଜଳେ—ପୋଖରୀଜଳରେ । କାମ—ଅନେକ,ବହୁତ । ଉଡୁମ୍ବ—କପୋତ, ପାରା ଅବରତ—ସବୁବେଳେ ।

୧୦ । ସୋପାନ—ପାହାଚ । ଲୋକନରେ—ଦର୍ଶନରେ । ତଟରେ—କୂଳରେ । ଅଭ୍ରମ—ବଡିଆ । ଅଦଭ୍ରମ—ମନୋହର ।

୧୧ । ପ୍ରପାମାନଙ୍କରେ—ଜଳଛତ୍ରମାନଙ୍କରେ । ଜଳଯନ୍ତ୍ର—ପାଣିକଳ । ବିପଣୀ—ବଜାର ।

୧୨ । କେଉଁବଜାର ମେଘପରି ଦିଶୁଛି । ମେଘ ଆକାଶରେ ଅମ୍ବରେ ନାନା ପ୍ରକାର ବର୍ଣ୍ଣଧାରଣ କରିଥାଏ । ଏଠାରେ ( ଅମ୍ବରେ ) ଲୁଗାରେ ( ସିତ ( ଧଳା, ପୀତ ) ହଳଦିଆ ନୀଳ ) ନେଳିଆ ଏବ ( ଲୋହିତ ) ନାଲିଆ ବର୍ଣ୍ଣମାନଅଛି । ପୁଣି କେଉଁ ବଜାର (ଅବଳା) ସ୍ତ୍ରୀ ପରିଦିଶୁଛି । ସ୍ତ୍ରୀମାନଙ୍କ ଗଳାର ହାର ସ୍ତନ ଉପରେ ପଡ଼ି ସୁନ୍ଦର ଦେଖାଯାଉଥାଏ । ଏଠାରେ ତାରତର ) ଉଜ୍ଜ୍ୱଳତର ମୋତି ହାରରେ ( କୁଚସମ୍ପୁଟକ ) ଫରୁଆ ରୂପୀ କୁଚମାନ ଶୋଭା ପାଉଅଛି ।

୧୩ । କେଉଁ ( ରୂପଣୀ ) ବଜାରର ( ଅଙ୍କରେ ) କୋଳରେ ବା ଘତରେ ଚନ୍ଦ୍ରସ୍ତ ( ପାବଂଶୀ, ଗୋରଚନା ଓ ଜଳଦ ) ଥିବାରୁ ( ଶିବ ) ମହାଦେବଙ୍କ ମୁଣ୍ଡରେ ଚନ୍ଦ୍ର ବସ୍ତୁବସ୍ତ ) ଥାଏ । ଏଠାରେ ( ଚନ୍ଦ୍ର ) ଅଲୌକିକ ସେ ( ବସ୍ତୁବସ୍ତ ) ଚନ୍ଦ୍ର କି ? ପର ( ମନେ ) । ମନେ ହେଉଛି । ଯେ ବଜାର (ଶ୍ରୀ) ଲବଙ୍ଗ ଏବ ( ଶଙ୍ଖ ) ଶଙ୍ଖ ବା ମଣି ବିଶେଷକୁ ଲମ୍ବା ( ଶ୍ରୀଶଙ୍ଖ ) ସୁନ୍ଦର ଶଙ୍ଖମଣିକୁ ( କମଳ ) ଲମ୍ବାକୁ ଧାରଣ କରି ( ନେତ୍ରାସୁଖଦ ) ନେତ୍ର ପ୍ରୀତିକର ଅର୍ଥାତ୍ ଆଖିକୁ ଭଲଦେଖାଯାଉଛି । ନକ୍ଷତ୍ରମାଳା ଥିବାରୁ ( ତାରାଦଳ, ଅନ୍ୟ ପକ୍ଷରେ ୨୭ଟି ମୁକ୍ତାରେ ଗୁନ୍ଥା ହୋଇଥିବା ହାର ) କେଉଁ ବଜାର ଆକାଶପରି ହୋଇଛି । ପୁଣି ଅନ୍ୟକେଉଁ ବଜାର ରାମସୀତା ବଳାସରୁ ( ରାମ–ଘୋଡ଼ା, ସୀତା–ନବାତ ) ଅଯୋଧ୍ୟା ସଦୃଶ ହୋଇଅଛି ।

୧୪ । ସୁରଭିବନ୍ତରେ–କାମଧେନୁରୂପରେ । ସୁପ୍ରଭା ଅଟବୀ–ଉତ୍ତମ ପ୍ରଭାଶାଳୀ ଅରଣୀ ( କୃତ୍ରିମ ବନ ) । ଭୂବ–ପୃଥିବୀରେ । ସ୍ୱର୍ଗବାଣ୍ଟ–ସ୍ୱର୍ଗର ବିଶେଷ ଶୋଭାକୁ ଧାରଣ କରିଅଛି । ପୁଣି କେଉଁ ବଜାର କାବ୍ୟ ସଦୃଶ ହୋଇଛି । କାବ୍ୟ (ଉଜ୍ଜ୍ୱଳ) ରସର ବର୍ଣ୍ଣନା, (ସୁବର୍ଣ୍ଣ) ଉତ୍ତମବର୍ଣ୍ଣ ବିନ୍ୟାସ, ( ପଦାର୍ଥ ସଂକୀର୍ଣ୍ଣ ) ପଦର ଅର୍ଥରେ ପ୍ରସାରଣ ଏବ ଅଲଙ୍କାର ପ୍ରଭୃତିରେ ଶୋଭିତ ହୋଇଥାଏ । ଏହି ବଜାରମାନ ସେହିପରି ଉଜ୍ଜ୍ୱଳ ସୁବର୍ଣ୍ଣ ( ସୁନ୍ଦର ରଙ୍ଗରଙ୍ଗିଆ ) ପଦାର୍ଥମାନଙ୍କୁ ନେଇ ପ୍ରସାରିତ ହୋଇଅଛି ଏବ ନାନା ପ୍ରକାର ଅଲଙ୍କାରରେ ଶୋଭା ପାଉଛି ।

୧୫ । ଏହି ପଦଟିରେ ବିରୋଧାଭାସ ଅଲଙ୍କାର କବି ଦର୍ଶାଇଅଛନ୍ତି । ଯାହାର ଅର୍ଥରେ ଆପାତତଃ ବିରୋଧଭାବ ଅନୁଭବ ହୁଏ ତାକୁ ବିରୋଧାଭାସ ବୋଲିଯାଏ । ଯେଉଁପୁରର ଲୋକେ ପ୍ରତିଦିନ ( ସାରେ ) ଦରିଦ୍ର

ମାନଙ୍କ ( ଧନବର୍ଜନ ) ଧନଦାନ କରନ୍ତି । ସେମାନେ ( କେବେହେଁ ) କୌଣସିଦିନ ( ପ୍ରାଣୀମାନଙ୍କରେ ) କୌଣସିପ୍ରାଣୀଙ୍କୁ ( ବର୍ଜନ ) ତ୍ୟାଗକରନ୍ତି ନାହିଁ । ସେମାନଙ୍କର ହୃଦୟ ଓ ମାନସ ତରଳ ଅର୍ଥାତ୍ ଅନ୍ୟର ଦୁଃଖରେ ତରଳଯାଏ । ଏପରି ହେଲେ ହେଁ ( ବଶରୁ ) ମନ ସେମାନଙ୍କ ନିଜଆୟତ୍ତରେ ଥିବାରୁ ଅର୍ଥାତ୍ ସେମାନେ ସଂଯମୀ ହୋଇଥିବାରୁ କେବେହେଁ ମାନସ ତରଳ ) ଚଞ୍ଚଳମନା ହୁଅନ୍ତି ନାହିଁ ଏଠାରେ ଦାନେ ( ଧନ ) ବର୍ଜନ ନ କରିବା ଓ ଦାନେ ବର୍ଜନ ନ କରିବା ଏବଂ ତରଳ ମାନସ ହେବା ଓ ତରଳ ମାନସ ନ ହେବା—ଏହି ଦୁଇ ସ୍ଥଳରେ ବିରୋଧାଭାସ ଅଳଙ୍କାର ।

୧୬ । ଯେଉଁ ନଗରର ପ୍ରତି [ ନିକେତନରେ ] ଘରରେ [ବାଳକ] ପିଲାପୂର୍ଣ୍ଣ ହୋଇ ରହିଅଛନ୍ତି । ସେହି ନଗରରେ ଅତି-ଯତ୍ନରେ ଖୋଜିଲେ (ବାଳକ) ମନ୍ଦବୁଦ୍ଧି ବା ପିଲା ବୁଦ୍ଧିଥିବା ଲୋକ ଗୋଟିଏ ହେଲେ ମିଳିବେ ନାହିଁ । ଯେଉଁଠାରେ [ ଧନ ସମ୍ପଦ ] ଅସଂଖ୍ୟ (ମାର୍ଗଣ) ଅଗଣା ଅଛି । ସେଠାରେ କେହି ଦିନେହେଲେ ଦୁଆର ମୁହଁରେ (ମାର୍ଗଣ) ଯାଚକ ଅର୍ଥାତ୍ ଯୋଗୀ ଭିକାରୀଙ୍କୁ ଦେଖି ନାହାନ୍ତି । ସେ ନଗରରେ ମାଗିଖିଆ କେହି ନଥିବାର ଏଥିରୁ ସୂଚିତ ହେଉଅଛି । ଏଠାରେ ବାଳକ ପୂର୍ଣ୍ଣ ହୋଇଅଛନ୍ତି ଓ ବାଳକ ଗୋଟିଏ ହେଲେ ଦେଖାଯାନ୍ତି ନାହିଁ ଏବଂ ଅସଂଖ୍ୟ ମାର୍ଗଣ ଅଛନ୍ତି ଓ ମାର୍ଗଣ ଗୋଟିଏ ହେଲେ ଦେଖାଯାନ୍ତି ନାହିଁ ଏହି ଦୁଇସ୍ଥଳରେ ବିରୋଧାଭାସ ଅଳଙ୍କାର ହେଉଅଛି ।

୧୭ । ପିଶୁନ ଶବ୍ଦଟି କ୍ରୂର ଅର୍ଥାତ୍ ଖଳ ଲୋକଙ୍କୁ ଏବଂ କୁଙ୍କୁମ ଉଭୟ ଅର୍ଥକୁ ବୁଝାଏ । କେହି ପିଶୁନ କହିଲେ ସେ ନଗରର ଲୋକେ କୁଙ୍କୁମକୁ ବୁଝନ୍ତି । କାରଣ ସେଠାରେ କ୍ରୂର ବା ଖଳଲୋକ କେହି

ନାହାନ୍ତି । ତେଣୁ କ୍ରୂରତା କଣ, ତାହା ସେମାନଙ୍କୁ ଅଜଣା । ସେହିପରି ପରଭୃତ ଶବ୍ଦ କୋଇଲି ଓ ଖଣ୍ଡ ଏବଂ ପରଭାଗ୍ଯଭୋଗୀ ଉଭୟ ଅର୍ଥକୁ ବୁଝାଏ । କେହି ସେହି ପରଭୃତ କହିଲେ ସେ ନଗରର ଲୋକେ (ଶବ୍ଦ କୋକିଳ—ଜାତଏ କୋଇଲ) କୋଇଲିକୁ ବୁଝନ୍ତି । କାରଣ ସେଠାରେ ଖଣ୍ଡ ଓ ପରଭାଗ୍ଯଭୋଗୀ କେହି ନାହାନ୍ତି । ତେଣୁ ଖଣ୍ଡ ଓ ପରଯୋଗର ଅବସ୍ଥା ସେମାନଙ୍କୁ ଅଜଣା । ପ୍ରତୀକ ଶବ୍ଦ ପ୍ରତିକୂଳ ଓ ଅଙ୍ଗ ଉଭୟ ଅର୍ଥକୁ ବୁଝାଏ । କେହି ପ୍ରତୀକ ବୋଲି କହିଲେ ସେ ନଗରର ଲୋକେ ଅଙ୍ଗକୁ ବୁଝନ୍ତି । କାରଣ ସେଠାରେ ସମସ୍ତେ ସମସ୍ତଙ୍କୁ ଭଲ ପାଆନ୍ତି ଏବଂ କେହି କାହାର ପ୍ରତିକୂଳ ଆଚରଣ କରନ୍ତି ନାହିଁ ।

୧୮ । ସେ ପୁରରେ ସୁନୟନା ସ୍ତ୍ରୀମାନଙ୍କର (ଅଳକା) ଚୂର୍ଣ୍ଣକୁନ୍ତଳ ବାଳ (ଭ୍ରୂବଲ୍ଲୀ) ଭୂଲତା, ଓ (କଟାକ୍ଷ) ବାଙ୍କ ଚାହାଣୀ କେବଳ (ବକ୍ର) ବଙ୍କା ଅଟେ । ଏହାଛଡ଼ା ବକ୍ରଭାବ ଅର୍ଥାତ୍ ଅସାଧୁତା ଲୋକମାନଙ୍କଠାରେ ଦେଖାଯାଏ ନାହିଁ । କେବଳ ସ୍ତ୍ରୀମାନଙ୍କର (ଚିକୁର) ବାଳ, [ପୟୋଧର] କୁଚ । ଓ (ଅକ୍ଷ) ଆଖି ଯଥାକ୍ରମେ (କୁଟିଳ) କୁଞ୍ଚକୁଞ୍ଚିଆ, [ଉନ୍ନତ] ଉଚ୍ଚ ଓ [ଚଞ୍ଚଳ] ଛଞ୍ଚଳିଆ । ଏହାଛଡ଼ା କପଟ ସ୍ୱଭାବ (ଉନ୍ନତ) ଉଦ୍ଧତ ପଣିଆ ଏବଂ ଚଞ୍ଚଳତା ଅନ୍ୟ କାହାଠାରେ ଦେଖାଯାଏ ନାହିଁ । ସ୍ତ୍ରୀମାନଙ୍କର [କଟୀଓଉଦର] ଅଣ୍ଟା ଓ ପେଟ ( କୃଶତର ) କେବଳ କ୍ଷୀଣ ଅର୍ଥାତ୍ ସରୁ । ନୋହିଲେ ଆଉ କେହି କ୍ଷୀଣ ନୁହନ୍ତି । ସ୍ତ୍ରୀମାନଙ୍କର (ଗତି ହାସେ) ଗତି ଓ ହସ କେବଳ ମନ୍ଦ ଅର୍ଥାତ୍ ଧୀର ନୋହିଲେ ସେ ନଗରର ଅନ୍ୟ କେହି ମନ୍ଦ ନୁହନ୍ତି । ସେ ନଗରରେ କେବଳ (କମ୍ବୁ) ଶଙ୍ଖକୁ ଦର ବୋଲି କହନ୍ତି । ନଚେତ୍ ସେଠାରେ କେହି କାହାକୁ (ଦର) ଭୟ କରନ୍ତି ନାହିଁ ।

୧୯ । ମାର—କନ୍ଦର୍ପ । ଧର—ପର୍ବତ । ମନସିଜ—କନ୍ଦର୍ପ । ମହୀଧର—ପର୍ବତ । ମାରଧର—ମାଡ଼ ଗୋଳ, ଧରି କରି ମାରିବା । ମାରଧର ବୋଲି କହିଲେ ସେ ନଗରର ସମସ୍ତେ ମାର ଓ ଧର ବା ମନସିଜ ଓ ମହୀଧର ଅର୍ଥାତ୍ କନ୍ଦର୍ପ ଓ ପର୍ବତକୁ ବୁଝନ୍ତି । କାରଣ (ମାରଧର) ମାଡ଼ଗୋଳ କାହାକୁ କହନ୍ତି, ତାହା ସେମାନଙ୍କୁ ଅଜଣା । କଳି (ଫୁଲକଢ଼ି ଓ କଳହ) ବୋଲି କହିଲେ ସେ ନଗରର ଲୋକେ (କୁସୁମ କୋରକ) ଫୁଲକଢ଼ିକୁ ବୁଝନ୍ତି ଏବଂ ବିଗ୍ରହ (ଯୁଦ୍ଧ ଓ ଶରୀର) ବୋଲି କହିଲେ ଶରୀରକୁ ବୁଝନ୍ତି । କାରଣ କଳି କରିବା, କିମ୍ବା ଲଢ଼େଇ କରିବା କାହାକୁ କହନ୍ତି, ତାହା ସେମାନେ ଜାଣନ୍ତି ନାହିଁ । ଅର୍ଥାତ୍ କେହି କାହା ସଙ୍ଗରେ କଳି କରନ୍ତି ନାହିଁ କି ସେ ଦେଶର ଆଉ କେଉଁ ସଙ୍ଗରେ ଲଢ଼େଇ ହୁଏନାହିଁ । କଣ୍ଟକ (କଣ୍ଟା ବା ଶତ୍ରୁ ଏବଂ ଆନନ୍ଦରେ ରୋମ ଟାଙ୍କୁରା) ବୋଲି କହିଲେ ସମସ୍ତେ ଆନନ୍ଦରେ ରୋମ ଟାଙ୍କୁରାକୁ ବୁଝନ୍ତି । କାରଣ ସେଠାରେ କଣ୍ଟା ବା ଶତ୍ରୁ କେହି ନାହାନ୍ତି । (ପରଚକ୍ରକ କଣ୍ଟକ) ନିଜରାଜ୍ୟ କିମ୍ବା ପରରାଜ୍ୟରେ ଏହାଛଡ଼ା ଅର୍ଥାତ୍ ପୁଲକରେ ରୋମକଣ୍ଟକିତ ବା ଟାଙ୍କିର ହେବା ଛଡ଼ା ସେ ନଗରର କୌଣସି ଶତ୍ରୁ ନାହାନ୍ତି ।

୨୦ । ଅବନୀ ଦେବ—ବ୍ରାହ୍ମଣ । ଚତୁର୍ବର୍ଣ୍ଣ—ଶୂଦ୍ରଜାତି । ବୃତ୍ତିରେ କୁଶଳ—ବେଉସାରେ ପାରନ୍ତା ।

୨୧ । ତପ......ପରାକ୍ରମ—ଶତ୍ରୁ ରାଜାମାନେ ହେଲେ (ଦ୍ୱିପ) ହାତୀ । ସେମାନଙ୍କର (ଦର୍ପ) ବଡ଼ାଇ ବା ଗର୍ବକୁ (ବିଧ୍ୱଂସନେ) ଦଳିଦେବା ବିଷୟରେ ସେ ରାଜା (ପଞ୍ଚାସ୍ୟଜନ୍ତୁ) ସିଂହ ପରି ବଳଶାଳୀ ଅଟନ୍ତି । ତାହାଙ୍କ......ଅଶ୍ରାନ୍ତ—ସେହି ରାଜାଙ୍କର ପରାକ୍ରମ ଦେଖି (ତପନ) ସୂର୍ଯ୍ୟ ତାହା ଉପରେ (ଦ୍ୱେଷବଶ) ଶତ୍ରୁବଶ ଅନ୍ଧାର ପରି

ଶୀଲବନ୍ତ—ଭଲଆଚରଣ କରୁଥିବା ଲୋକ। ଏହା ସାଧାରଣ ନାୟକର ଲକ୍ଷଣ। ଧୀରୋଦାତ୍ତ ନାୟକର ଲକ୍ଷଣ ଏହାଠାରୁ ସ୍ୱତନ୍ତ୍ର ଅଟେ। ଆତ୍ମଶ୍ଲାଘାହୀନ୍ୟ, କ୍ଷମାପରାୟଣ ଅତି ଗମ୍ଭୀର ଓ ମହାପ୍ରାଣ, ଅବଚଳିତ, ପଳାଇ ଯାହା (ଗର୍ବଶୂନ୍ୟ) ପବିତ୍ର ଢୋକରଡ଼ରେ ଅଣ୍ଡା କେବଳ।

୧୨। ଆସମୁଦ୍ରାନ୍ତ—ସମୁଦ୍ର ପର୍ଯ୍ୟନ୍ତ ବା ସମୁଦ୍ରକୁ ନେଇକରି। ଚକ୍ରବର୍ତ୍ତୀ—ସମ୍ରାଟ। ତାଙ୍କର କୀର୍ତ୍ତି (ରମା। ପୃଥିବୀ ଏବଂ ତ୍ରିଅଗ୍ରା) ପ୍ରଭୃତି ଦିଗନ୍ତର ପୂର୍ଣ୍ଣ ହୋଇ ଶେଷରେ 'ସ୍ୱର୍ଗଲୋକ' ରେ ଗଲେ ଯାଇଁ ମିଳିଲା। ସେଠାରେ ସ୍ଥାନ ନ ହେବାରୁ ତାହାର ଅଂଶମାନ ପୃଥିବୀରେ ନାନା ରୂପରେ ପ୍ରକାଶ ପାଇଲା।

୧୩। ସେ କୀର୍ତ୍ତିରୁ ଥୋଡ଼ାଏ ଆସି ଚନ୍ଦ୍ର ହେଲା ଏବଂ (ସାନ୍ଦ୍ରତମ ଗାଢ଼ ଅନ୍ଧାରକୁ ଦୂର କରି ଆକାଶକୁ (ମଣ୍ଡିତ) ଆଲୋକରେ ଭରାଇଲା। ଆଉ ଥୋଡ଼ାଏ (ସ୍ୱର୍ଗୀୟ ଗଙ୍ଗାଜଳ) ଗଙ୍ଗା ରୂପରେ ମର୍ତ୍ତ୍ୟରେ ପ୍ରବାହିତ) ପୃଥିବୀରେ ବହିଯାଇ ଲୋକଙ୍କ ପାପ ନାଶ କଲା। ଆଉ ଥୋଡ଼ାଏ ଗୋଟାଏ ଯାଗାରେ ଜମା ହୋଇଯାଇ କୈଳାସ ପର୍ବତ ହୋଇଗଲା ଏବଂ ଶେଷରେ ନିର୍ଯ୍ୟାତିତ ବାକୀ ରହିଲା, ତାହା (ଶେଷ ରୂପରେ) ନାଗଙ୍କ ରୂପରେ ପାତାଳରେ ରହିଲା।

୧୪। କରିଗଣ୍ଡବାର—ହାତୀବେଷ୍ଟି ସୈନ୍ୟଗଣ। ନୟନପୂର୍ଣ— ମାତଙ୍ଗ।

୧୫। ଦୟାସାଗର ଙ୍କଙ୍କଠାରେ ସତ୍ତ୍ୱ ଗୁଣରୁ ଆଠୋଟି ଗୁଣ ଥିଲା। ସାହିତ୍ୟ ଦର୍ପଣ ଅନୁସାରେ ସେ ଅଷ୍ଟଗୁଣ ଯଥା :— "ଶୋଭା ବିଳାସୋ ମାଧୁର୍ଯ୍ୟଂ ଗାମ୍ଭୀର୍ଯ୍ୟଂ ଧୈର୍ଯ୍ୟ ତେଜସୀ॥ ଲଳିତୌଦାର୍ଯ୍ୟ ମିତ୍ୟଷ୍ଟୌ। ସତ୍ତ୍ୱଜାଃ ପୌରୁଷା ଗୁଣାଃ।" ଶକ୍ରପଦଜାତ—ଇନ୍ଦ୍ରପଦରୁ ଜଣି ଯାଇଥିବା କୁଳୀନ—ଉଚ୍ଚବଂଶରେ ଜାତ। ବିଦଗ୍ଧ—ପଣ୍ଡିତ।

ଶୀଲବନ୍ତ—ଭଲ ଆଚରଣ କରିବା ଲୋକ । ଏହା ସାଧାରଣ ନାୟକର ଲକ୍ଷଣ । ଧୀରୋଦାତ୍ତ ନାୟକର ଲକ୍ଷଣ ଏହାଠାରୁ ସ୍ୱତନ୍ତ୍ର ଅଟେ । ଆତ୍ମଶ୍ଲାଘାଶୂନ୍ୟ, କ୍ଷମାପରାୟଣ, ଅତି ଗମ୍ଭୀର ଓ ମହାପ୍ରାଣ, ଅବିଚଳିତ, ନମ୍ରତୃତମାନ (ବିନୟାଚ୍ଛନ୍ନ ଗର୍ବ) ପ୍ରଭୃତି ଲକ୍ଷଣଯୁକ୍ତ ନାୟକ ଧୀରୋଦାତ୍ତ ଅଟେ ।

୨୬ । ବଦାନ୍ୟଗୁଣ—ଦାତାପଣିଆ । କାମଧେନୁ—ଯେଉଁ ଗୋମାତା ଇଚ୍ଛା ଅନୁସାରେ ଫଳ ଦିଅନ୍ତି ଯେପରି ନନ୍ଦିନୀ ପ୍ରଭୃତି । ତ୍ରପାବଶ—ଲାଜରୁ, ଲଜ୍ଜାବଶରୁ । ତ୍ରିପିଷ୍ଟପ—ସ୍ୱର୍ଗ ।

୨୭ । ଧୀଷଣ—ଦେବଗୁରୁ, ବୃହସ୍ପତି । ଧୀଷଣା—ବୁଦ୍ଧି । ଅନଶ—ଦବାଗ୍ନି ।

୨୮ । ଷଷ୍ଟିଅଧିକ ତିନିଶତ—ତିନିଶ ଷାଠିଏ । ସପତ୍ନୀ-ଗଣେ—ସଉତୁଣୀମାନଙ୍କଠାରେ । ଭଗ୍ନୀସମାନୁରାଗ—ଭଉଣୀପରି ସ୍ନେହ । ନୃପ ଶୁଦ୍ଧାନ୍ତ ଅନ୍ତରୀକ୍ଷେ—ରାଜାଙ୍କ ଅନ୍ତଃପୁର ରୂପ ଆକାଶରେ । ଚନ୍ଦ୍ରଶୂନ୍ୟ—କଳଙ୍କ ନ ଥିବା ।

୨୯ । ପୁନ୍ନ ସଞ୍ଚରି—ପୁନ୍ନ ପାଇବାକୁ ଅଭିଳାଷୀ । ଦକ୍ଷିଣ ନାୟକ—ସବୁ ସ୍ତ୍ରୀଙ୍କଠାରେ ସମାନ ସ୍ନେହ ପ୍ରକାଶ କରି ଯେ ସମସ୍ତଙ୍କ ମନ ନିଅନ୍ତି । ଶିଲୀମୁଖ—ଭ୍ରମର । ଯେ ରାଜା ଭ୍ରମର ଯେପରି ଫୁଲର ଆନନ୍ଦକୁ ପ୍ରକାଶ କରେ, ସେହିପରି ସ୍ତ୍ରୀମାନଙ୍କର ମନ ନେଇ ସେମାନଙ୍କ ଆନନ୍ଦ ପ୍ରକାଶ କରନ୍ତି ।

୩୦ । ମହାରଜତ—ସୁନା । ପଞ୍ଚବକ୍ତ୍ର ପ୍ରତିମା—ଶିବମୂର୍ତ୍ତି । ପଞ୍ଚାକ୍ଷର—ଶିବ ପଞ୍ଚାକ୍ଷର ମନ୍ତ୍ର ।

୩୧ । ବିଧି ବିଧାନଙ୍କୁ—ଶିବଙ୍କ ପୂଜାବିଧି ଅନୁସାରେ । ମାଧବ-ମାସ—ଫଗୁଣମାସ । ଅସିତପକ୍ଷ—କୃଷ୍ଣପକ୍ଷ । ଫଗୁଣମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ଶିବରାତ୍ରି ଉତ୍ସବ ହୁଏ ।

୩୨ । ଉପାସ୍ୟନ—ଦ୍ରବ୍ୟ । ପୁଣ୍ଡରୀକଚର୍ମ—ବ୍ୟାଘ୍ରଚର୍ମ । ଈଶ ରୂପ—ଶିବମୂର୍ତ୍ତି ।

୩୩ । ପଞ୍ଚବକ୍ତ୍ର—ମହାଦେବ । ବୃଷାସନେ—ବୃଷଭ ବାହନରେ । ଅବନୀ-ପାଳକ—ରାଜା ।

୩୪ । ମଧୁମାସରେ—ଚଇତମାସରେ । ଅଚଳା ରକ୍ଷଣରେ—ପୃଥ୍ୱୀ ପାଳନରେ ।

୩୫ । ସଭ୍ରମେ—ବେଗରେ । ଶ୍ରୁତିମୁଖେ—କାନ ରୂପକ ମୁହଁରେ । ପୀୟୂଷପାନ—ଅମୃତପିଇବା ।

୩୬ । ସଦାଶିବ—ସର୍ବଦା ମଙ୍ଗଳଦାତା । ଶିବ—ମହାଦେବ । ନରେଶ—ରାଜା । ଅବରୋଧେ—ଅନ୍ତଃପୁରରେ । ମହିଷୀଙ୍କି—ରାଣୀଙ୍କି । ପ୍ରସନ୍ନ—ଖୁସି ବା ସନ୍ତୁଷ୍ଟ । ନୀଳଲୋହିତ—ମହାଦେବ ।

୩୭ । ଯାନ—ପଦାର୍ । ହରହର—ମହାଦେବ । ପୁରତେ—ଆଗରେ । ପଞ୍ଚବକ୍ତ୍ର—ପଞ୍ଚମୁଖ । ସ୍ମିତ ସୁନ୍ଦର ଦନ୍ତବାସ—ମନ୍ଦ ହାସରେ ସୁନ୍ଦର ଦିଶୁଥିବା ଓଠ ।

୩୯ । ସୁଧାଧାମ—ଚନ୍ଦ୍ର ।

୪୦ । ସଉଧପ୍ରାଙ୍ଗଣେ—କୋଠାଅଗଣାରେ ।

୪୧ । ତ୍ରିବଳୀ—ପେଟରେ ଥିବା ତିନଗୋଟି ରେଖା । ଭୁକ୍ତ—କ୍ଷୀଣ ।

୪୨ । ଦହନ ହେମ—ପୋଡ଼ାହୋଇଥିବା ସୁନାର ଝଟକ ଉଜ୍ଜ୍ୱଳ ବର୍ଣ୍ଣ । କୋମଳ—କଅଁଳ । ପାଣ୍ଡିମା—ପାଣ୍ଡୁରବର୍ଣ୍ଣ ବା ଧୂସରଥ ।

ଦନ୍ତଦନ୍ତସଂପୃକ୍ତ—ହାଡ଼ହାଡ଼ରେ ଲାଗିଥିବା ଗଣ୍ଠି । ଅସିତ—କଳା । ରଜତ ବେଣ ସ୍ୱୟଂଭୂ ଶମ୍ଭୁଙ୍କରେ—ଆପଣା ମନକୁ ଉଠିଥିବା ରୂପାର ମହାଦେବଙ୍କ ମୁଣ୍ଡରେ ।

୪୩ । ମୃତକାଅଦନ—ସାପଖାଇବା ।

୪୪ । ଦଶଦ୍ୱିଗୁଣେନ—କୋଡ଼ିଏ । ସିତେତର ପକ୍ଷ—କୃଷ୍ଣପକ୍ଷ । ବୃହସ୍ପତିବାର—ଗୁରୁବାର । ତଦା ତାର—ତତା ନକ୍ଷତ୍ର । ପ୍ରୀତଯୁଗ—ପ୍ରୀତିଯୋଗ ।

୪୫ । ଭାର୍ଗବ—ଶୁକ୍ର । ସିଂହିକା-ତନୟ—ରାହୁ । ଗୁରୁ—ବୃହସ୍ପତି । ଗ୍ରହରାଜ—ସୂର୍ଯ୍ୟ ।

୪୬ । ପ୍ରତିହାରୀ—ପହରିଆ, ରାଣୀଙ୍କ ଉଆସଦ୍ୱାରର ପହରୀ ବାଲା ।

୪୮ । ନୃପଶେଖର—ନୃପଶ୍ରେଷ୍ଠ ।

୪୯ । ସୁବର୍ଣ୍ଣ—ସୁନା ମୋହର । ଦ୍ରୁତ—ଶୀଘ୍ର । ମୁଦ-ଉଦଧିରେ—ଆନନ୍ଦ-ସାଗରରେ ।

୫୦ । ଅଥାନ୍ତେ—ଏହାପରେ । ପାଲଙ୍କ—ପୋଇଲା । ମହୋଷ୍ଠ—ଅଳପ ଉଷୁମ । ଚନ୍ଦନଇନ୍ଧନେ—ଚନ୍ଦନକାଠରେ ।

୫୧ । କ୍ଷୀରବନ୍ଦ—ଦୁଧବନ୍ଦ । ଗଣ୍ଡୂଷ—ପୁଆତିମାନଙ୍କ ଶୁଣ୍ଠି, ପିପ୍ପଳ, କଳାଜିରା, ଲବଣ ଓ ତେଲ ଏକାଠି ମିଶାଇ ଗୁଳାକର ଯେଉଁ ଔଷଧ ଖାଇବାକୁ ଦିଆଯାଏ ତାହାକୁ ଗଣ୍ଡୂଷ କହନ୍ତି । ମୃଦୁଲ—କଅଁଳ ।

୫୨ । ନୃପସତ୍ତମ—ନୃପଶ୍ରେଷ୍ଠ । ଯାଚକ—ମାଗିଲା ଲୋକ, ପ୍ରାର୍ଥୀ । ଦ୍ରବିଣ—ଧନ ।

୫୪ । ଜନନୀ ଜନକ—ବାପ ମା । ସିତପକ୍ଷ—ଶୁକ୍ଳପକ୍ଷ ।

୫୫ । ଏକବିଂଶ ଗ୍ରହ – ଏକୋଇଶାବନ ଗ୍ରହ । ବରଗଣକ – ଉତ୍ତମ ଜ୍ୟୋତିଷୀ ।

୫୬ । ଜ୍ୟୋତିଃଶାସ୍ତ୍ରମର୍ମପାରଗତାହ୍ଲିକ – ଜ୍ୟୋତିଷ ଶାସ୍ତ୍ରର ସବୁ କଥା ଏବଂ ତନ୍ତ୍ରବିଦ୍ୟା ଜାଣନ୍ତା ଲୋକ । ଧରୀବେ – ପୃଥିବୀରେ । ଆଲୋକନ କରି – ଦେଖି । ସୁକୃତ ସାଗର ମନ୍ଦର ପୁରୋହିତ – ସୁକୃତ ଅର୍ଥାତ ଧର୍ମଶାସ୍ତ୍ରମାନ ହେଲା ସମୁଦ୍ରପରି, ରାଜାଙ୍କ ପୁରୋହିତେ ହେଲେ ତହିଁରେ ମନ୍ଦର ପର୍ବତ, ଅର୍ଥାତ୍ ମନ୍ଦର ପର୍ବତ ଯେପରି ସମୁଦ୍ରର ଗଭୀରତା ପ୍ରତ୍ୟକ୍ଷ ଜାଣେ, ପୁରୋହିତେ ସେହିପରି ଧର୍ମଗ୍ରନ୍ଥମାନ ବିଶେଷ ଭାବରେ ଘଣ୍ଟା ଚକଟା କରିଥିବାରୁ ତାହାର କେଉଁଠି କ'ଣ ଅଛି, ତାହା ଜାଣନ୍ତି ।

୫୭। ବକ୍ଷ – ଛାତି । ଅଂସ – କାନ୍ଧ । ଶୋଣତା – ଲାଲ ।

୫୮ । ହନୁ – ଗାଲ ଉପର । ଖର୍ବ – ଛୋଟ । ମେହନ – ପୁରୁଷ ଲିଙ୍ଗ । ସତ୍ତ୍ୱ – ମନ ବା ସ୍ୱଭାବ । ତନୁ – ପାତଳା ବା ସରୁ । ଦଶନ – ଦାନ୍ତ । ଅଙ୍ଗୁଳିପର୍ବ – ଅଙ୍ଗୁଠିପର୍ବ । ସୁରୁକେଶ – ମନୋହର ବାଳ । ଗୁଣୋଦ୍ଧୃ – ସୁଗୁଣ ଜାତ ।

୫୯ । ଅଟଙ୍କୋଦ୍ଧୃ – ନାଭି । ଚରଣ କରୋଦର – ଗୋଡ଼ ଓ ହାତତଳ ।

୬୦ । ରବି – ସୂର୍ଯ୍ୟ । ଭୃଙ୍ଗାର – ଝାରୀ ।

---

## ଚତୁର୍ଥ ଛାନ୍ଦ

୧ । ଜନମାନସ ନୟନ ବନ୍ଦନ – ଲୋକଙ୍କ ମନ ଓ ଆଖିକୁ ବନ୍ଦୀ କରୁଅଛି ।

୨ । ଲୁଣ୍ଠୀଭୂତ – ଏକାଠି ହୋଇଅଛି । ରସାଭୂଷା – ପୃଥିବୀର ମଣ୍ଡନକାରିଣୀ ସ୍ତ୍ରୀ ।

୩ । ଅଙ୍ଗ ସୁଷମା—ଦେହର ଶୋଭା ବା କାନ୍ତି । ଦୀପ୍ତି—ତେଜ ।

୪ । ଅନ୍ନ ପ୍ରାଶନ—ଦଶସଂସ୍କାର (କର୍ମ) ମଧ୍ୟରୁ ଏହା ୬ଷ୍ଠ ସଂସ୍କାର । ଏଥିରେ ଶିଶୁକୁ ପ୍ରଥମେ ଭାତ ଖାଇବାକୁ ଦିଆଯାଏ ।

୮ । ପିଙ୍ଗଳ—ଛନ୍ଦଶାସ୍ତ୍ର । ବିଦ୍ୟାନ୍ତ—ବିଦ୍ୟାସକଳ (ନ୍ତ ବହୁବଚନ ଜ୍ଞାପକ)

୧୦ । ସଚିବସୁତ—ମନ୍ତ୍ରିପୁଅ ।

୧୧ । ଚକା—ଜାନୁଛନ୍ଦ ବସିବା ଜମ୍ବା ମାଲମାନେ ଟେକୁଥିବା ପଥର । ବରଡ଼ା (ବୃତ୍ତାକାର ଖଣ୍ଡଜ)—ଗୋଲ ପଥର । ମାଲମାନେ ଏହାକୁ ହାତରେ ଉଠାନ୍ତି । ଗୁଳୁଚ୍ଛ—ବାହୁଲଖଣ[redacted] । ଲେଞ୍ଜିମ (ଲେଜୋମ୍—ପାର୍ସିକ ଶବ୍ଦ)—ଏକ ପ୍ରକାର ଧନୁ । ସାଧାରଣ ଧନୁଠାରୁ ଏହାର ବିଶେଷତ୍ୱ ଏହି ଯେ ଏଥିରେ ଦଉଡ଼ି ପରିବର୍ତ୍ତେରେ ଲୁହା ଶିକୁଳି ଲାଗିଥାଏ ।

୧୨ । କୋଦଣ୍ଡବିଦ୍ୟା—ଧନୁର୍ବେଦ ବା ଧନୁର୍ବିଦ୍ୟା । ଅପସ୍ପନ୍ଦନକୁ—ଅକର୍ଷଣକୁ । ଓଟାରିବାକୁ—କେଶରୀ—ସିଂହ । ସନ୍ଧ—ଲକ୍ଷ୍ୟକରି । ବସ୍ତ, ଚାଲୁଖାନ—ଘୋଡ଼ାର ବର୍ଣ୍ଣ ଓ ଲକ୍ଷଣ । ଦନ୍ତମୁଷଳୀ—ବଡ଼ଦାନ୍ତିଆ । ତାଜୀବାଜୀ—ଆରବ ଦେଶୀୟ ଘୋଡ଼ା । ତୁରୁକୀ—ତୁର୍କ ଦେଶୀୟ (ଘୋଡ଼ା) ।

୧୪ । ନର୍ଜିତ ହୋଇଲେ—ହାରିଗଲେ । ଦଶରେ—ଦଳରେ ।

୧୫ । ପୂର୍ଣ୍ଣ ହରିଣାଙ୍କ—ପୂର୍ଣ୍ଣଚନ୍ଦ୍ର । କଳଙ୍କ—ଚିହ୍ନ ।

୧୬ । କରକୋକନଦ—ହସ୍ତପଦ୍ମ ।

୧୭ । ଚନ୍ଦ୍ରାଶ—ଦର୍ପଣ । ରମଣୀ ଜନ ମନୋହର—ସ୍ତ୍ରୀମାନଙ୍କ ଅକ୍ଷିର ମନକୁ ଅର୍ଥାତ୍ ଅକ୍ଷିକୁ ହରଣ କଲା । ନୟନ ଖଞ୍ଜନ ପାଗ—ଅକ୍ଷି ହେଲା ଖଞ୍ଜନ ପକ୍ଷୀ, ତାର୍ ଫାନ୍ଦ !

୧୯ । ଅସିତ ଚତୁର୍ଦ୍ଦଶୀ—କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ତିଥି ।

୨୦ । ଅଗମ—ବଚିଗଲେ । ବିରୂପାକ୍ଷେ—ମହାଦେବଙ୍କୁ । ସଂଶ୍ରବି—ଭଜି ଶ୍ରଦ୍ଧାକରି ।

୨୨ । ମର୍କଟ—ଭଅଁର ।

୨୭ । ପନୀର ନୀର—ସୁବାସ ପାଣି । ଉଶୀର ପଟୀର—ବେଣାମୂଳ ଓ ଚନ୍ଦନ କାଠ ।

ବୃଷଭ —ଷଣ୍ଢ । ଅନଳ ଶିଖା—ଅଗ୍ନିଶିଖା । ଅନର୍ଗଳା—ଅତ୍ୟନ୍ତ ।

୨୯ । ଭୁଜଙ୍ଗ—ସାପ । ଭମ୍ବ ଅଙ୍ଗକୋଷ୍ଠ—ପାର୍ଶ୍ୱରେ କିପୁଣ୍ଡ୍ରକ ଚିତା ।

୩୦ । ଖଣ୍ଡ ଚନ୍ଦ୍ରମା—ଅର୍ଦ୍ଧଚନ୍ଦ୍ର ।

୩୬ । ସିଦ୍ଧବନ୍ଧୁ—ସିଦ୍ଧ ବ୍ରହ୍ମଗ୍ରନ୍ଥି ।

୩୭ । ଅକ୍ଷମାଳା—ଜପାମାଳା ।

୪୦ । ନାଟିବ— ନଷ୍ଟ ହେବ ।

୪୧ । ଶୂଳପାଣି—ମହାଦେବ ।

୪୩ । ଶର୍ବରୀ—ରାତ୍ରି । ଦିନେଶ—ସୂର୍ଯ୍ୟ ।

---

## ପଞ୍ଚମ ଛାନ୍ଦ

୭ । ଦେବାର୍ଚ୍ଚନ—ଠାକୁର ପୂଜା ।

୮ । ଗଉରୀବର—ଗୌରବର୍ଣ୍ଣା ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଗଉରୀବରବଣୁ—ମହାଦେବଙ୍କ ବରରୁ ।

୯ । ବରମାନବର—ଶ୍ରେଷ୍ଠ ମନୁଷ୍ୟ ଅର୍ଥାତ୍ ଅତି ସୁନ୍ଦର ପୁରୁଷର ।

୧୦ । ପୁରନ୍ଦର ପୁରେ—ଇନ୍ଦ୍ର ପୁରରେ ଅର୍ଥାତ୍ ସ୍ୱର୍ଗରେ । ଶୋଭାଅରମ୍ଭାରମ୍ଭା—ସୁନ୍ଦର ପଣରେ ପ୍ରଥମ ସ୍ଥାନୀୟା ସ୍ୱର୍ଗ ବେଶ୍ୟା ରମ୍ଭା । ପାଦଲକ୍ଷ୍ୟ—ପାଦପଙ୍କେ ସର । ରତି—କନ୍ଦର୍ପର ସ୍ତ୍ରୀ । ରତିକେ—ରତିଏ ପରିମାଣରେ ।

"ଯହିଁରେ···ଅବକାଶ—କ୍ଷୀଣତା କଦାପି ସୁନ୍ଦର ନୁହେ । ତାହା ସବୁଦିନେ ଅସୁନ୍ଦର । କିନ୍ତୁ ଏ ସ୍ତ୍ରୀ ନିକଟରେ ତାହା ସୁନ୍ଦର ହୋଇଅଛି । ଅର୍ଥାତ୍ ତାର ସରୁ ଅଣ୍ଟା ଅତି ସୁନ୍ଦର ଦେଖାଯାଉଅଛି ! ଏପରି ଅବସ୍ଥାରେ ଅସୁନ୍ଦରପାଇଁ ସେଠାରେ ସ୍ଥାନ କାହିଁ ? ମନ୍ଦ···ବିଶେଷ—ଯେଉଁ ସ୍ତ୍ରୀ ପାଖରେ ମନ୍ଦ ଅର୍ଥାତ୍ ମନ୍ଦଗତି ବା ମନ୍ଦହାସ ଅମନ୍ଦ ଭାବକୁ ଭଜେ ଅର୍ଥାତ୍ ସୁନ୍ଦର ଦେଖାଯାଏ ଏବଂ ଯେଉଁ ସ୍ତ୍ରୀ ପାଖରେ କୁଟିଲ ଅର୍ଥାତ୍ ବକ୍ରତା ବା କପଟ ( ଏଠାରେ ବାଙ୍କଚାହାଣି କିମ୍ବା କୁଞ୍ଚୁକୁଞ୍ଚିଆ ବାଳକୁ ବୁଝିବାକୁ ହେବ) ଗୋଟାଏ ବିଶେଷ ଶୋଭା ସୃଷ୍ଟି କରୁଅଛି ସେଠାରେ ଅସୁନ୍ଦର ପାଇଁ ସ୍ଥାନ କାହିଁ ?

୧୨ । ତାର ଲଳିତ (ସୁନ୍ଦର) କେଶ (ବାଳ) ଦଳିତ ଅଞ୍ଜନଗଣିକୁ ଦଳା ହୋଇଥିବା କଳାକୁ) ଦଳ ଦେଲାଣି ଅର୍ଥାତ୍ ତା ମୁଣ୍ଡର ବାଳ ଦଳା ହୋଇଥିବା କଳାଠାରୁ ବଳ କଳା ।

୧୩ । ଅଳକା—କପାଳରେ ପଡ଼ିଥିବା ଛୋଟ କୁଞ୍ଚ କୁଞ୍ଚିଆ ବାଳ । ଅଳକାରେ—କୁବେର ପୁରରେ

୧୪ । ତାର ଭ୍ରୂଲତାକୁ (କୁସୁମ ଧନୁ)ଫୁଲଧନୁ ଅର୍ଥାତ୍ କନ୍ଦର୍ପର ଧନୁ ବୋଲି କହିବା ଅବିବେକପଣିଆ । ଅର୍ଥାତ୍ ସେ ଭ୍ରୂଲତା କାମର ଧନୁ ନୁହେଁ । ସେ ସ୍ତ୍ରୀର ମୁହଁକୁ (ଲପନ) ହେଲା (ବଧୂ) ଚନ୍ଦ୍ର ପରି ଏବଂ ଭ୍ରୂଲତା ତହିଁରେ କଳଙ୍କ ପରି ପ୍ରକାଶ ପାଉଅଛି । କଟକ ଶୋଭା— ନଗରର ଶୋଭା ବର୍ଦ୍ଧନକାରିଣୀ ବା ହାତରେ ବଳୟ ଧାରିଣୀ । ଲୋଭନୀ—ପୁରୁଷମାନେ ଯାହାକୁ ଦେଖି ଲୋଭ କରନ୍ତି ।

୧୫ । ତାହାର (ବଦନ) ମୁହଁକୁ (ମଦନ କର ଆଦରଶ) କାମ ହାତରେ ଧରିଥିବା ଆଇନାପରି ସୁନ୍ଦର ପଡ଼ଃ କିନ୍ତୁ ତହିଁରେ ଥିବା ହସ ସଙ୍ଗେ (ଆଦରଶ) କାମ ହାତର ଆଇନା ସମାନ ନୁହେଁ । କାରଣ ହସ ତା ମୁହଁର ସ୍ୱାଭାବିକ ଗୁଣ । କିନ୍ତୁ ଆଇନା (ପ୍ରଭାବ) କାନ୍ତି (ସ୍ୱଭାବ) ସ୍ୱାଭାବିକ ନୁହେ । ତାହା ଉପାଧିରୁ ଅର୍ଥାତ୍ ପାର ପ୍ରଭୃତି ଦ୍ରବ୍ୟ ସମ୍ପର୍କରୁ (ଜ୍ୟୋତି) କାନ୍ତି ବହନ କରେ ।

୧୬ । ତାର ନୟନର ଗତି ଅର୍ଥାତ୍ ଆଖିଠାର ଦେଖିଲେ (ନୟ ନର) ଅତି ଧୈର୍ଯ୍ୟଶାଳୀ ଲୋକ ପୁଣି ଭଲ ଅର୍ଥାତ୍ ଭୁଲିଯିବ । ଯେ (କରମବନ୍ତ) କପାଳିଆ ଏ (ଭରମବରଜା) ସୁନାଗୋରୀ ତାର (ଜୀବ ଭଳ) ପ୍ରାଣ ପରି ହେବ ।

୧୭ । ଶ୍ରୁତିକି—କାନକୁ । ଶ୍ରୁତିରେ—ବେଦରେ କମ୍ୱା ଶୁଣାରେ । ଅର—ଅନ୍ୟ, ଅନ୍ୟ ।

୧୮ । ଘଷରେ—ଲଗାଲଗି ହୋଇ ରହିବାରେ । ସନ୍ଧି—ଫାଙ୍କ

୧୯ । (କୁରଙ୍ଗନୟନ) ହରିଣର ଅକ୍ଷି ପରି ତା ଆଖି କଣ୍ଠହର (ତରଙ୍ଗ) ଚଞ୍ଚଳତା ସଙ୍ଗେ (ମଦନ ତୁରଙ୍ଗ) କନ୍ଦର୍ପ ଘୋଡ଼ାକୁ

ଅଣିବ ନାହିଁ ଅର୍ଥାତ୍ ତୁଳନା କରାଯାଇ ପାରିବ ନାହିଁ । ସେ ଅକ୍ଷି (ଅଞ୍ଜନରେ) କଳାରେ (ଶୋଭା ବହି) ଯେପରି ସୁନ୍ଦର ଦିଶୁଛି ଖଞ୍ଜନ ପକ୍ଷୀ ସେପରି (ରଞ୍ଜନ) ସୁନ୍ଦର ହୋଇ ପାରିବ ନାହିଁ ।

୨୦ । ତାର (ମଧୁର) ସରସ (ଅଧର) ଓଠକୁ ଦେଖିଲେ (ବିମ୍ବ) ଗୋଲୁଖିଆ ଫଳ (ଅଧର) ଅସ୍ଥିର ହେବ କମ୍ପା ତଳକୁ ମୁହଁ କରିବ, ଅର୍ଥାତ୍ ତାର ଓଠର ଶୋଭା ପାଖରେ ବିମ୍ବ ଫଳର ଶୋଭା ଅତି ତୁଚ୍ଛ, ତେଣୁ ସେ ଅପମାନ ବା ଲାଜରେ ଅସ୍ଥିର ହେବ କମ୍ପା ତଳକୁ ମୁହଁ ପୋତିବ । (ବଳିତ ମୃଣାଳ) ବଳନ୍ତି ପରି ହୋଇଥିବା ଗୋଲ ପଦ୍ମନାଡ଼ (ବାହାରେ) ଛଡ଼ା ତା (ବାହାରେ) ବାହୁର (ଉପମା) ସମାନ ଅଛି ନ ଥିବ ଅର୍ଥାତ୍ ନାହିଁ ।

୨୧ । (ପ୍ରତି ପ୍ରତୀକକୁ) ପ୍ରତି ଅଙ୍ଗ ବା ଅବୟବକୁ (ପ୍ରତି ପ୍ରତିବନ୍ଧି) ତଦନୁରୂପ ବା ତାହାରି ଭଳିଆ ପ୍ରତ୍ୟେକ ଛନ୍ଦରେ (ଉପମାନ) ତୁଳନା କରିବାକୁ (ଶେଷ ଦେବ) ସହସ୍ରମୁଖଧାରୀ ଅନନ୍ତ ନାଗ ଇଚ୍ଛା କଲେ ପାଞ୍ଚଦଶ ଛନ୍ଦରେ ଶେଷ କରି ପାରିବେ ନାହିଁ ।

୨୨ । ମହାମହୀନ୍ଦ୍ର କୁମାରୀ—ମହାରାଜାଙ୍କ ଝିଅ । ସ୍ମରସିନ୍ଧୁ—କାମ ସମୁଦ୍ର ।

୨୪ । ଧୀମନ୍ତମୁକୁଟମଣି—ଅତ୍ୟନ୍ତ ବୁଦ୍ଧିମାନ୍ । ସ୍ମରଶର-ବଶ୍ୟ—କାମବାଣ ପୀଡ଼ାରୁ । ତରଳ—ଚଞ୍ଚଳ ବା ଅଧୀର ।

୨୫ । ସୁନ୍ଦରୀ···ଉଚ୍ଛୁଳ—ସେ ସୁନ୍ଦରୀ ରୂପର ଭଲ ପ୍ରଶଂସା ହେଲା (ଚନ୍ଦ୍ରକର) ଜହ୍ନ ଆଲୁଅ ଏବଂ ଏ ଯୁବକର ଆନନ୍ଦ ବା ହର୍ଷ ହେଲା ସିନ୍ଧୁ—ସମୁଦ୍ର । ଜହ୍ନ ଆଲୁଅକୁ ଦେଖି ସମୁଦ୍ର ଯେପରି ଉଚ୍ଛୁଳି ଉଠେ ସେହିପରି ତାର ପ୍ରଶଂସାରେ ଏହାର ଆନନ୍ଦ ଉଚ୍ଛୁଳି ଉଠିଲା । ବନ୍ଧୁ·····ତରଳ—ସିଦ୍ଧବ୍ରହ୍ମଚାରୀଙ୍କ କଥା ହେଲା ଅତି ଗରମ ତାପ

ଏବଂ ସେ ପୁରୁଷର ମନ ହେଲା ଲହୁଣୀ । ଅଛଶସ୍ତ୍ର ତାପରେ ଲହୁଣୀ ଯେମିତି ତରଳ ଯାଏ ବ୍ରହ୍ମଚାରୀଙ୍କ କଥାରେ ସେ ପୁରୁଷର ମନ ସେହିପରି ତରଳ ଗଲା ।

୨୬ । ଅଙ୍ଗନା-ଅଙ୍ଗ-ନାବରେ—ସ୍ତ୍ରୀର ଦେହ ହେଲା ନୌକା । ବଟେ—ବଟ ଦେଇ । ମଦନସରିତ—କାମନଈ ।

୨୭ । ନାଡ଼ି ଦୂଷିଲା—ନାଡ଼ି ବିକୃତ ହେଲା । ବର—ମନକାମନା ।

୨୮ । ରୋଲମ୍ବକେଶୀ—ଭଅଁର ଭଳିଆ କଳା କେଶ ଯେଉଁ ସ୍ତ୍ରୀର । କରକଦଶନାଙ୍କ—ଡାଳିମ୍ବ ମଞ୍ଜି ପରି ଦାନ୍ତ ଯେଉଁ ସ୍ତ୍ରୀର, ତାହାଙ୍କୁ ।

୨୯ । ବଟୁ—ବ୍ରହ୍ମଚାରୀ । ଗୂଢ଼—ମନଭେଦା କଥା । ଚତୁର—ଜାଣିଲା ଶୁଣିଲା ଲୋକ ।

୩୦ । ତପରେ—ତପସ୍ୟାରେ ବା କଠିନ ସାଧନାରେ । ତାପରେ—ତପ୍ତ ବା ତେଜ ଦେଖାଇ । ଆପରେ—ପାଣିରେ, ଏଠାରେ (ଲୁହରେ) । ଅପରେ—ଶେଷରେ । ବନିତା—ସ୍ତ୍ରୀ । ରତ—ରମଣ ।

୩୫ । ହରବରବକ୍ଷେ—ମହାଦେବଙ୍କ ବର ଯୋଗୁଁ । ଅବଳାବଳାବାଣୀ—ଯୁବତୀର ଗୋଡ଼ ବଳା ଶବ୍ଦ ।

୩୭ । ବରବନ୍ଦନାର—ସୁନାଗୋଟାର, ସୁନ୍ଦରର ।

୩୮ । ରତେ—ରତରେ ବା ରମଣରେ । ସୁକୃତ—ପୁଣ୍ୟ । ସୁକୃତରେ—ଉତ୍ତମ ଅନୁଷ୍ଠାନରେ ।

୩୯ । ଲକ୍ଷଚଣ୍ଡୀ—ଲକ୍ଷେ ବାର ଚଣ୍ଡୀ ପାଠ କରିବା ।

୪୧ । ନୀଳଗିରି...ସାରସ—ଜଗନ୍ନାଥଙ୍କ ପାଦରୂପକ ଫୁଟନ୍ତା ପଦ୍ମ ଫୁଲ ।

—୦—

# ଷଷ୍ଠ ଛାନ୍ଦ

୩ । ସେ ନଗରେ ଅର୍ଥାତ୍ ସେହି ଛନ ବଣାସୁରର ଲୋକେ (ବଚନ ରଚନ) ଅଛି ବିଚକ୍ଷଣ ଏବଂ ସୁନ୍ଦର ଅଟନ୍ତି । ତେଣୁ କବି ଶ୍ଳେଷରେ ଏଠାରେ ବର୍ଣ୍ଣନା କରି କହୁଅଛନ୍ତି ଯେ, ଏ ପୁର (ନଗର) ବୃଦ୍ଧିମାନ୍ ବା ସୁନ୍ଦର (ଚତୁରସେନରେ) ଚତୁରସେନ ଗନ୍ଧର୍ବଙ୍କ ପାଇ (ବାରମ୍ବାରକୁ) ସ୍ୱର୍ଗ ହୋଇ ଅଛି କି ? ପୁନଶ୍ଚ ଯେ ନଗର (ଅଳକାର) କୁବେର ପୁରର (ଅଳଙ୍କାର) ଭୂଷଣ ବା ଶୋଭା ବଢ଼ାଉଥିଲା ପରି (ଆଭାସେ) ମନେ ହୁଏ; ଅର୍ଥାତ୍ ସେ ନଗର କୁବେରପୁରଠାରୁ ଅଧିକତର ସୁନ୍ଦର ।

୪ । କୁମ୍ଭଶବ୍ଦରୁ କଳସ ଓ ରାବଣ ଭାଇ କୁମ୍ଭକର୍ଣ୍ଣ ଉଭୟାର୍ଥ ବାଚକ ହୋଇଥିବାରୁ କବି ଏଠାରେ ବର୍ଣ୍ଣନା କରି କହୁଅଛନ୍ତି ଯେ, (କୁମ୍ଭ) କଳସ ଆଘାତ ହେଉଥିବାରୁ ଏ ନଗରରେ ଲଙ୍କା ଶଙ୍କା ହୁଏ ଅର୍ଥାତ୍ କୁମ୍ଭକର୍ଣ୍ଣର ଆଘାତରେ ଲଙ୍କା ବୋଲି ଭ୍ରମ ହୁଏ । ପ୍ରଶଂସା ପ୍ରକରୁ—ପ୍ରଶଂସା ସମୂହରୁ ।

୫ । ମହୀ ପୃଥିବୀ ହେଲା (ମହିଳା) ସ୍ତ୍ରୀ । ତାର (ବଦନ) ମୁହଁ ଦେଖିବା ପାଇଁ ଏ ନଗରଟି (ଆଦରଶ) ଗୋଟିଏ ଆଇନା ଅଟେ କି ? ତେଣୁ (ବିଶ୍ୱ) ସମଗ୍ର ପୃଥିବୀର (ପ୍ରତିବିମ୍ବରେ) ପ୍ରତ୍ୟେକ ବିଷୟରେ (ପ୍ରତିବିମ୍ବ) ଏହି ନଗରରେ ପଡ଼ି ଅଛି କି ? ଅର୍ଥାତ୍ ବିଶ୍ୱସୃଷ୍ଟିର ସକଳ ପ୍ରକାର ସୌନ୍ଦର୍ଯ୍ୟ ଏ ନଗରରେ ଦେଖିବାକୁ ମିଳେ ।

୭ । ଉତ୍ସର୍ଜନ ପର୍ଯ୍ୟ—ଦାନ କାଳ, ଦାନ ଦେଲାବେଳେ ଶଙ୍ଖରେ ଯେଉଁ ପାଣି ଟେକି ଦିଅନ୍ତି ।

୧୧ । ମଙ୍ଗଳ ବାସରେ—ମଙ୍ଗଳ ବାରରେ । ନବପତ୍ରିକାରେ—ନବପତ୍ରିକା ପୂଜା ବିଧି ଅନୁସାରେ ।

୧୨ । ପ୍ରଭାକ ଶୋଭନା—ଯେଉଁ ସୀର ଅଙ୍ଗ ଅତି ସୁନ୍ଦର, ସୁନ୍ଦରୀ । ଗିରିଜା—ପାର୍ବତୀ ।

୨୨ । ଇନ୍ଦ୍ରଦଗ-ମୃଗନୟନ ।

୨୩ । ସରସୀ—ପୋଖରୀ । ସରସିଜରେ-ପଦ୍ମରେ । ସରୋଜାକ୍ଷୀ-ପଦ୍ମନୟନା ।

୨୪ । ସିତପକ୍ଷକଳାକର—ଶୁକ୍ଳପକ୍ଷର ଚନ୍ଦ୍ର । ଚୋଖ—ସୁନ୍ଦର ।

୨୮ । ଜୃମ୍ଭା—ହାଇ ।

୨୯ । ବମନ—ବାନ୍ତି । ଖଣ୍ଡଶଶିଗଣ୍ଡ—ଅର୍ଦ୍ଧଚନ୍ଦ୍ର ସଦୃଶ ଗାଲ ।

୩୦ । ଅବନୀରେ—ମାଟିରେ, ଭୂଇଁରେ ।

୩୧ । ଅଞ୍ଚଳକୁ—ଲୁଗାକୁ । ଅଚଳରୁ—ପର୍ବତରୁ ।

୩୨ । ଅରୁଣ—ରକ୍ତିମା, ନାଲରଙ୍ଗ । ମଉମନ୍ତା—ବୃଦ୍ଧିମତୀ ।

୩୩ । ଉରଜ ଅଗ—ସ୍ତନର ଅଗ । ପଦ୍ମକୋରକ—ପଦ୍ମ କଢ଼ି ।

୩୪ । ଇତର—ସାମାନ୍ୟ । ରାଜ—ଶୋଭା ପାଇ ।

୩୫ । ତ୍ରିବଳୀ—ପେଟରେ ଥିବା ଗାର ବା ମୋଡ଼ା । ପୃଥୁ—ବଡ଼ ।

୩୬ । ଆଗେ କେବଳ ଅଣ୍ଟାଟି ସରୁ ଥିଲା । ଗର୍ଭ ଅବସ୍ଥାରେ ସମସ୍ତ ଅଙ୍ଗ କ୍ଷୀଣ ହୋଇ ପେଟ ବଡ଼ ଓ ଅଣ୍ଟା ମୋଟା ଦେଖିବାରୁ କବି ତର୍କଣା କରୁଅଛନ୍ତି ଯେ, କଟୀରେ ଯେଉଁ କୃଶତା (କ୍ଷୀଣତା) ଆଗେ ଥିଲା ବର୍ତ୍ତମାନ ତାକୁ ଅନ୍ୟାନ୍ୟ ଅଙ୍ଗ ବାଣ୍ଟିକରି ନେଲେ । ଅଲମ୍ଭନ—ଆଶ୍ରୟ ।

୪୬ । ଭୂଲଗି—ବାହାର କର ।

୪୭ । ସୁରଗୁରୁ—ବୃହସ୍ପତି । ନଶାକର—ଚନ୍ଦ୍ର । ଭୁଲ—ଭୁଲାଗଣି ।

୪୬ । ଅସୁରଗୁରୁ—ଶୁକ୍ର ।

୪୮ । ମଧୁମାସ—ଚୈତ୍ରମାସ । ସୁରଗୁରୁବାର—ଗୁରୁବାର । ଅମୃତଯୋଗ—ଅମୃତଯୋଗ ।

୫୧ । ବନୀ—ଭାଟ ।

୫୬ । ଜୁରିଅଇ—ଲୁଣ୍ଠ କରଇ ।

୬୦ । ମହୀଅଳ—ପୃଥିବୀ ।

୬୧ । ଭାଟ କଇବାର—ଭାଟମାନଙ୍କ ସ୍ତବଗାନ । ବାରସ୍ୱର—ସ୍ୱର୍ଗ ।

---

## ସପ୍ତମ ଛାନ୍ଦ

୬ । ଦ୍ୱିଜାଂଶୁ—ଚନ୍ଦ୍ର । ଅଂଶ—କଳା ।

୩ । ବେଳ ଦ୍ୱିଗୁଣମାସ—ଗର୍ଭମାସ ।

୪ । ପୁରଚତ୍ୱର—ପୁର ଅଗଣା ବା ଚଉପାଢୀ ।

୫ । ଅନ୍ନପ୍ରାଶନ—ଅନ୍ନଛୁଆଁଣି ।

୯ । ଆରଣ—ହାତୀ ଧରିବା ଝୋପ ।

୧୩ । ରେଣୁ ଧୂଳି । କେତକୀ ଫୁଲରେ ଆର ଧୂଳି (ପରାଗ) ଲାଗିଥିଲେ ସେ ଯେପରି ସୁନ୍ଦର ଦେଖାଯାଏ, ରଜାଙ୍କ ଦେହରେ ଧୂଳି ଲାଗିଥିଲାବେଳେ ସେ ସେହିପରି ଦେଖାଗଲେ ।

୧୦ । କରି...କୁଣ୍ଢାଇ—ହାତୀ ଦାନ୍ତ ଓ ଚୂନାରେ ଗଢା ଯାଇଥିବା କୁଣ୍ଢାଇ ।

୨୮ । ଅବିବେକ ନରେଶ ଗଲାନାଶ—ଅବିବେକରୂପକ ରାଜା ମରିଗଲା; ଅର୍ଥାତ୍ ଅବିବେକପଣିଆ ଆଉ ରହିଲାନାହିଁ ବା ଅଜ୍ଞାନତା ଘୁଞ୍ଚିଗଲା ।

୨୯ । ବିବେକ ନରପତି ନିବାସ—ବିବେକ ପଣିଆ ହେଲା ରାଜା ପରି ସେ ଆସି ତାର (ତନୁ) ଦେହରେ ରହିଲା; ଅର୍ଥାତ୍ ରଜାଙ୍କ ଝିଅ ଜ୍ଞାନ ପାଇଲା ।

୩୧ । ଲୋମଗୁଚ୍ଛିକ ପିଲାବେଳେ (ବକ୍ର) ବଙ୍କା ଥିଲା । ବର୍ତ୍ତମାନ ଜ୍ଞାନ ପାଆନ୍ତେ ବା ଯୁବତୀ ହୁଅନ୍ତେ ସେ ବଙ୍କାପଣ ଆଖି ନେଲା; ଅର୍ଥାତ୍ ଚାହାଣୀ ବାଙ୍କ ହେଲା । (କଟୀ) ଅଣ୍ଟା ଆଗେ (ପୃଥୁଳ) ମୋଟା ଥିଲା । ବର୍ତ୍ତମାନ ସେ ସରୁ ହେଲା ଏବଂ ତାର ମୋଟା-ପଣ ବା ଉଚ୍ଚାପଣକୁ ସ୍ତନ ନେଲା, ଅର୍ଥାତ୍ ସ୍ତନ କ୍ରମେ ପୀନ ଓ ଉଚ୍ଚ ହେଲା ।

୩୨ । ମନସିଜଗଞ୍ଜନ—କନ୍ଦର୍ପ ରାଜା ।

୩୩ । ତନୁଭୂମି—ଦେହରୂପ ଭୂଇଁ । ରାଜ୍ୟାଭିଷେକ—ରାଜା ଗାଦିରେ ବସିଲା ବେଳର ଉତ୍ସବ ।

୩୪ । ବିବେକ—ଭଲ ମନ୍ଦ ବିଚାରିବାର ଶକ୍ତି । ଅବିବେକ—ଅବିଚାରପଣିଆ ।

୩୫ । ଫୁଲଧନୁ—କାମ ।

୩୯ । ବାସ—ପିନ୍ଧିବା ଲୁଗା ।

୪୧ । ତୁଲ କରି—ତୁଳନା କରି ଅର୍ଥାତ୍ ଯେ ଭଲ ଫୁଲ, ତାହାକୁ ବାଛିକରି । ଉତ୍ତମାଙ୍ଗେ—ମୁଣ୍ଡରେ ।

୪୮ । ତୃଷ୍ଣା ବକ୍—ତୃଷ୍ଣା ।

୪୯ । ଅଧେ ଅଧର—ଅଧରଓଠ । ବିମ୍ବ ବିଦ୍ରୁମକୁ—ବିମ୍ବଫଳ ଓ ପୋହଳାକୁ ।

୫୦ । କରିକର—ହାତୀର ଶୁଣ୍ଢ । ହେମ ମୃଣାଳ—ସୁନା ପଦ୍ମନାଡ଼ିକୁ ।

୫୨ । କରକବୀଜ—ଡାଳମ୍ବ ମଞ୍ଜି । ଦଶନ—ଦାନ୍ତ ।

୫୪ । ଶ୍ରୀଫଳ—ବେଲ ।

୫୭ । ନବକୋକନଦ ଛବି କ—ନୂଆରେ ଫୁଟିଥିବା ରକ୍ତ ପଦ୍ମର ଶୋଭାକୁ । ଚମ୍ପକ କଢ଼ିକ—ଚମ୍ପାଫୁଲର କଢ଼ିକୁ ।

୫୮ । ମିଥୁନ—ଆଷାଢ଼ ମାସ ।

୫୯ । ଶୁକ୍ଳ···ନିଶାକର—ଶୁକ୍ଳପକ୍ଷ, ଦ୍ୱିତୀୟା ତିଥି, ସୋମବାର ମୀନରାଶି ରେବତୀ ନକ୍ଷତ୍ରରେ ଚନ୍ଦ୍ର ।

୬୦ । କକଡ଼ା ଦୃଷ୍ଟି—ମକରରେ ଶୁଭ ଗ୍ରହ ( ଶୁକ୍ର ବୃହସ୍ପତି ଆଦି ) ରହି ଲଗ୍ନକୁ ଦେଖୁଅଛନ୍ତି ।

୬୨ । ବାମଦେବ ବାମ—ଶିବଙ୍କ ଶତ୍ରୁ କନ୍ଦର୍ପ, ତାର ଗୃହ ବିକାର ଅର୍ଥାତ୍ ଯୋନି ବିକାର ବା ଋତୁ ବିକାର । ଏଥିରୁ 'ପ୍ରଥମ' ରଜୋଦର୍ଶନ ବୁଝିବାକୁ ହେବ ।

୬୯ । ଊରୁ ଅର୍ଥାତ୍ ଜଙ୍ଘ ହୋଇଲା କଦଳ ଗଛ । ମାର ଅର୍ଥାତ୍ କନ୍ଦର୍ପ ଅନୁକୂଳ କରି ସେ କଦଳୀ ଫଳର (ଭଣ୍ଡା) ଦେଖାଇଲା କି ? କଦଳୀ ଭଣ୍ଡା ଦେଖିବାକୁ ରକ୍ତବର୍ଣ୍ଣ ।

୭୦ । ହେମକେତକୀ—ସୁନାରେ ତିଆରି କେତକୀ ଫୁଲ । ଲାକ୍ଷାରସ—ଅଳତା ।

୭୧ । ନବ ଚଳଦଳଦଳ—ନୂଆ କଅଁଳଥିବା ଅଶ୍ୱତ୍ଥ ଗଛର ପତ୍ର ।

୭୨ । ବାଜିକନକ—ଘୋଡ଼ା ପାଇ ଝଟକୁଥିବା ସୁନା । ଲୋହିତ ଚନ୍ଦନ—ରକ୍ତ ଚନ୍ଦନ ।

୭୩ । ଦେବଅର୍ଘ୍ୟ—ସୂର୍ଯ୍ୟ ପୂଜା ।

୭୭ । ଲଟ—ପାଲଟା ବା ମାରୁ ଲୁଗା । ଲଟ ଶବ୍ଦ ଉଙ୍ଗପାଟ—ଉଡ଼ୁ ତନ୍ତରେ ତନ୍ତିତ ନାଲ ପାଟ !

୮୨ । ଅମ୍ବର—ଲୁଗା । ପ୍ରତିବମ୍—ଛାଇ । ମୁକୁରେ—ଅର୍ଦ୍ଧରେ ।

୮୮ । ସମୀର—ପବନ । ଗୋଚର—ଦେଖା ।

୯୭ । ମୋତିସମ ତଣ୍ଡୁଲ—ସଫା (ମୋତିପରି) ଚାଉଳ ।

୯୮ । ମାସରେ—ବରଷରେ ।

୧୦୨ । କଟ—ପରୁଡ଼ ମସିଣା । ପଟ—ପାଟଲୁଗା । ଅନବନ—ଉଅଁରସବୁ ।ଅତିବଲ୍ଲଭା—ଅତି ପ୍ରିୟବତୀ ଭାର୍ଯ୍ୟା । ନକର—ନଷ୍ଟମୁ ପଦ୍ମନାଭ—ଜଗନ୍ନାଥ ବା ଭଗବାନ ।

---

## ଅଷ୍ଟମ ଛାନ୍ଦ

୧ । ବାଳାସଦନେ—ଜେମାଙ୍କ ଘରେ ।

୨ । ଝିଙ୍ଗଡ଼ା—ଝିଙ୍ଗଡ଼ାନାର ଫୁଲ । ଝଙ୍କତକା—ମୁଣ୍ଡଭୁଣ୍ଡାଇବା ପାନଅ । ମୁକୁର—ଦର୍ପଣ ।

୩ । ଘନସାର—କର୍ପୂର । ମଉଳ—ମୁଣ୍ଡଜୁଡ଼ା ।

୪ । ତମ—ଅନ୍ଧାର । କଳନ୍ଦଜା—ଯମୁନା । ରାହୁ—ଅସୁର ଓ ଗ୍ରହ ବିଶେଷ—ଏମାନେ ସମସ୍ତେ କଳା । ବହଳ କୁଟଳତକୁରତସୁକୁ—ବହଳଅ ଓ କୁଞ୍ଚକୁଞ୍ଚିଅ ବାଳଗୁଡ଼ାକୁ ।

୫ । କେତକୀ ଜାତିପାଖୁଡ଼ା—କେତକୀ ଓ ଜାଈ ଫୁଲର ପାଖୁଡ଼ା

୬ । ବାଙ୍କଡ଼ଜଂଘଅ—ଜାତିଏ ମୁଣ୍ଡବନ୍ଧା ଅଳଙ୍କାର । ଢଅପଦୀ-ଢଅ ଫୁଲର ପାଖୁଡ଼ା ବା ଜାତିଏ ମୁଣ୍ଡ ଅଳଙ୍କାର । ମଥାଜାଲ—

ମୁଣ୍ଡର ଅଳଙ୍କାର ବିଶେଷ । ଝିଲିମିଲି ମାଳୀ—ସ୍ତ୍ରୀମାନଙ୍କର ସୀନ୍ଥିର ଅଳଙ୍କାର ବିଶେଷ । ଚନ୍ଦ୍ରଝମ୍ପା—ଜାତିଏ ଅଳଙ୍କାର । ଚନ୍ଦ୍ରଝମ୍ପା··· ଚଞ୍ଚଳ—ହେଉଁହେଲା (ଘନ) ମେଘ । ତାର ଶୋଭା ହେଲା ସେ ମେଘର (ନୀର) ପାଣି ସ୍ରୀନ୍ଥିରେ ଚନ୍ଦ୍ରଝମ୍ପା ଦୋହଲିବାର ଦେଖି ମନେ ହେଉଛି ଯେ ଝମ୍ପା ଚାତକ ପକ୍ଷୀ । କେଶରୂପକ ମେଘରୁ ଶୋଭା ରୂପକ ପାଣି ପିଇ ଏପରି ଚଞ୍ଚଳହୋଇ ଦୋହଲୁଛି ।

୭ । କନକଦୂବ—ସୁନାରେ ତିଆରି ଏକ ପ୍ରକାର ମୁଣ୍ଡ ଅଳଙ୍କାର । ଅଳକା—ଜାତିଏ ଅଳଙ୍କାର । କନକ ଦୂବ ବଜ୍ରଲପରି ଏବଂ ଅଳକା ମେଘମାଳ ପରି ମନେ ହେଉଛି । ଭଲ୍ଲ—ଏକପ୍ରକାର ଅସ୍ତ୍ର । ମାର—କନ୍ଦର୍ପ ।

୮ । ମୃଗମଦ ଶିଖ—କସ୍ତୁରୀ ଟୀକାର ଶୋଭା । କୁନ୍ତ—ଏକ ପ୍ରକାର ଅସ୍ତ୍ର ।

୯ । ଉତ୍ତାନ କର—ଚନ୍ଦ୍ରକର ।

୧୦ । ଖଞ୍ଜନ—ପକ୍ଷୀ ବିଶେଷ । ମୀନ—ମାଛ । କୃଷ୍ଣସାର—ଜାତିଏ ହରିଣ । ଖଞ୍ଜନ ଓ ମୃଗସାର ପକ୍ଷରେ ବନ ଶବ୍ଦର ଅର୍ଥ ଜଙ୍ଗଲ ଏବଂ ମୀନ ପକ୍ଷରେ ଜଳ । କାମବୀମ—ମହାଦେବ ।

୧୧ । ଶ୍ରୁତି—କାନ । କୀର-ଶୁକ ।

୧୨ । ଚନ୍ଦ୍ରମଲ୍ଲିକଡି—ଜାତିଏ କାନର ଅଳଙ୍କାର । ଇନ୍ଦ୍ର ଶରାସନ—ଇନ୍ଦ୍ରଧନୁ । ଚିକୁର-ବାଳ । କନକ—ସୁନା ଏଠାରେ କେଶ କଳା ହେତୁ ମେଘ ସଦୃଶ ଏବଂ ଚନ୍ଦ୍ରମଲ୍ଲିକଡ଼ି ହୀରା ମାଣିକ୍ୟ ଓ ସୁନାରେ ତିଆରି ହୋଇଥିବା ହେତୁ ଇନ୍ଦ୍ରଧନୁ ସଦୃଶ ତୁଳିତ ହୋଇଅଛି ।

୧୩ । ତୁଳାଇବ — ତୁଳନା କରିବ । ମୂଲ୍ୟଇ — ମୂଲ୍ୟ କରି. ବଣି । ନାକନାଗଙ୍କୁ — ସ୍ୱର୍ଗ ଓ ପାତାଳକୁ । ଝୁଲକା ଝୁଲକ — କାନରେ ପିନ୍ଧାଥିବା ଅଳଙ୍କାର ଝୁଲକାର ହଲବା । ଧୀର — ଧୈର୍ଯ୍ୟ ବା ଦମ୍ଭ ।

୧୪ । ତାଟଙ୍କ — କାନର କାପ । ମନସିଜଚକ୍ର — କନ୍ଦର୍ପର ଚକ୍ର ବା ଧାରୁଆ ଅସ୍ତ୍ର । ବକ୍ର — ବଙ୍କା । ପଞ୍ଚଶର — କାମ । ପୀଠ — ଆସନ । ଶକ୍ରପଦ — ଇନ୍ଦ୍ରପଦ ।

୧୫ । ତିଳକୁସୁମ — ଖସାଫୁଲ । ତୂଣୀର — ଶରମୁଣା । ନାକଚଣା — ନାକର ଅଳଙ୍କାର ବିଶେଷ । ପୁଟକେ — ନାକପୁଡ଼ାରେ ।

୧୬ । ଚନ୍ଦ୍ରଖଣ୍ଡ — ଅର୍ଦ୍ଧଚନ୍ଦ୍ର । ଗଣ୍ଡମଣ୍ଡଳ ଜ୍ୟୋତି — ଗାଲର ଶୋଭା । ମଧୂକ — ଜାଠିମଧୁ । ତା ଗାଲର ଶୋଭା ସହିତ ଅର୍ଦ୍ଧଚନ୍ଦ୍ର ଏବଂ ଜାଠିମଧୁ ଫୁଲକୁ ତୁଳନା କରିବା ଠିକ୍ ନୁହେଁ । କାରଣ ଚନ୍ଦ୍ରର କ୍ଷୟ ବୃଦ୍ଧି ଅଛି ଏବଂ ଜାଠିମଧୁ ଗଛ ବଣରେ ଥାଏ । ମକରିକା — ମକରାକୃତି ଚିତ୍ର, ଚନ୍ଦନପାନ୍ତି ।

୧୭ । ବିମ୍ବ — କଙ୍କିଣିକାକୁଡ଼ି । ବନ୍ଧୂକ — ବଧୂଲୀ ଫଳ । ଅଧରଚରିତା — ଶୋଭା । ଓଠକୁ ବିମ୍ବଫଳ ଏବଂ ବଧୁଲୀ ଫୁଲ ସଙ୍ଗେ ତୁଳନା କରାଯାଇ ନ ପାରେ, କାରଣ ସବୁଦିନେ ସେମାନଙ୍କର ଶୋଭା ରହେ ନାହିଁ । ସୁଧାରସ — ଅମୃତ

୧୮ । ଚିବୁକ — ତଳ ଓଠର ତଳ । କନକ ମୁକୁର — ସୁନା ଅରସି । ଭ୍ରମରିକା — ଭଅଁର ପରି ଚିହ୍ନ ।

୧୯ । ସରସିରୁହନାଡ଼ — ପଦ୍ମନାଡ଼ । ଦର — ଶଙ୍ଖ । ଦର — ଡର, ଭୟ । ଅପ — ପାଣି । ଆତପ — ଖରା, ଏଠାରେ ସୂର୍ଯ୍ୟ । ପଦ୍ମନାଡ଼ ଓ ଶଙ୍ଖକୁ ତା କଣ୍ଠ ସଙ୍ଗେ ତୁଳନା କରାଯାଇ ନ ପାରେ ।

କାରଣ ଫଙ୍କ ମେ କଣ୍ଠ ସଙ୍ଗେ ସମାନ ହେବାପାଇଁ ପ୍ରତିଦିନ ସକାଳ ସଞ୍ଜରେ ହେଉଁଳି ଭଳରେ ଠାକୁରଙ୍କ ସେବା କରୁଛି ଏବଂ ପଦ୍ମ ତା ସଙ୍ଗେ ସମାନ ହେବାପାଇଁ ପାଣି ଅଗ୍ରେ ଈଶ୍ୱର ସେବା କରୁଛି ।

୨୦ । ବୃଷସଭ—ବେକର ତାଢବ ଅଲଙ୍କାର । ସାରସ ଗତି—ହଂସଗତି । ରତି—ରମଣ, ପ୍ରୀତି । ପୁଣ୍ୟ ନର—ପୁଣ୍ୟବନ୍ତ ଲୋକ ।

୨୧ । ତାରତର—ଅତି ଉଜ୍ଜ୍ୱଳ । କମ୍ବୁ—ଶଙ୍ଖ । କୁଚଶମ୍ଭୁ—ସ୍ତନରୂପ ଶିବ ।

୨୨ । କନକ ମୃଣାଳ—ସୁନା ପଦ୍ମନାଡ଼ । ଚମ୍ପକ ଦାମ—ଚମ୍ପାହାର । ଏ ବସ… = ପଦ୍ମନାଡ଼ର ବିସ ନାମ ଥିବାରୁ ଏବଂ ଚମ୍ପାଫୁଲରେ ଭଅଁର ବସୁ ନ ଥିବାରୁ ସେ ଓ ଚମ୍ପାମାଳ ଏ ଦୁହେଁ ଏ ସ୍ତ୍ରୀର (ବଳନ) ବଳା ହେଲା ପରି ବର୍ତ୍ତୁଳ ବାହୁ ଦୁଇଟି ସଙ୍ଗେ ସମାନ ନହନ୍ତି ।

୨୩ । ତାହ ଅଗ୍ର ଅର୍ଥାତ୍ ସେହି ବାହୁର ଅଗ ବା ହାତର ଦୁଇଟି ପାପୁଲି ଦୁଇଟି (କୋକନଦ) ରକ୍ତପଦ୍ମ ପରି ହୋଇଛି ; ସେଥିରେ ପୁଣି ଅଙ୍ଗୁଳିଗୁଡ଼ିକ ରକ୍ତପଦ୍ମରେ (ଚମ୍ପକକଳି) ଚମ୍ପାକଢ଼ି (ଦୁଟି) ମଣ୍ଡା ହେଲାପରି ହୋଇଛି । ଫୁଲରୁ ଫୁଲ ଜାତ ହେବା ଅଦ୍ଭୁତ କଥା । ଏହା କେଉଁଠାରେ ଦେଖଯାଏ ନାହିଁ ।—ଇତ୍ୟାଦି ।

୨୪ । କଟକ—ହାତର ଖଡ଼ୁ । ଗୁଞ୍ଜିତ—ହାତର ଅଲଙ୍କାର ବିଶେଷ । କର-କମଳ—ହାତରୂପକ ପଦ୍ମ । ମରନ୍ଦ—ଫୁଲ ମହୁ । ମିଳିନ୍ଦ—ଭଅଁର ।

୨୫ । ଚଟକ—କସ୍ତୁରୀ ଚିତା । (ଭ୍ର) ପେଷିଥିଲି—ଘଷିଥିଲି ।

୬୬ । ଶ୍ରୀଫଳ—ବେଲ । ବର୍ତ୍ତୁଳ—ଗୋଲ । ଉରଜକୁ—କୁଚକୁ । ସେ କୁଚ ବେଲ ଓ ତାଳର ବର୍ତ୍ତୁଳତା ସଙ୍ଗେ ତୁଳନା କରାଯାଇ ନ ପାରେ, କାରଣ ଏ କୁଚ; ପୁରୁଷମାନଙ୍କ ଆଖି—ସେ ହେଲା ଖଞ୍ଜନ ପକ୍ଷୀ—ତାର ଫାଶ ପରି ହୋଇଅଛୁ ଏବଂ ଦେଖିଲା ଲୋକର ମନକୁ ବଶ କରୁଛୁ । କିନ୍ତୁ ବେଲ ଓ ତାଳ ଫଳ ଗୋଲ ହେଲେହେଁ ସେମାନଙ୍କଠାରେ ଏ ଗୁଣ ନାହିଁ । ପଦାବଳ—କସ୍ତୁରୀ ଛଡା ।

୬୭ । ଦେହରେ ଥିବା ରୋମାବଳୀ ଅର୍ଥାତ୍ ରୋମଗୁଡିକ (ଗୃରୁ) ସୁନ୍ଦର (ଲତା) ଲଟା ବା ଗଛ ପରି ହୋଇଥିବାରୁ କୁଚ ଦୁଇଟି ସେ ଗଛରେ (ବୃନ୍ତଫଳ) ଆମ୍ବ ପରି ଶୋଭା ପାଉଛୁ । ନାଭିଟି ଗଭୀର ହୋଇ ଥିବାରୁ ସେ ଗଛର (ଆଲବାଳ) ମୂଳରେ ପାଣି ଦେବାପାଇଁ ବନ୍ଧା ଯାଇଥିବା ମନ୍ଦା ପରି କମ୍ବା ରତ୍ନର (ଲୀଳା ମନ୍ଦିର) ଖେଳାଘର ପରି ଶୋଭା ପାଉଛୁ । (ତ୍ରିବଳୀ) ପେଟରେ ଥିବା ତିନୋଟି ଗାର ଠାରୁ ବଳି ସୁନ୍ଦର ଜିନଷ ଆଉ ନାହିଁ । ମନେ ହେଉଛୁ, (ବିଧି) ବିଧାତା ସବୁ ଯେପରି ତିନି ଲୋକରୁ (ରମ୍ୟ ପାଇ) ସୁନ୍ଦର ସୁନ୍ଦର ପଦାର୍ଥ ପାଇ, ସେ ଗୁଡ଼ିକୁ (ଆହୃତ) ସଂଗ୍ରହ କରି ଏଠାରେ ଅର୍ଥାତ୍ ଏହି ତିନୋଟି ଗାର ରୂପରେ ରଖିଅଛୁ ।

୬୮ । କେଶରୀ—ସିଂହ—ଏଠାରେ ସିଂହର ସରୁ ଅଣ୍ଟା । ମଧ୍ୟ—ଅଣ୍ଟା । ନିତମ୍ବ ଚକ୍ର—ପିଚ୍ଛ ରୂପକ ରଥଚକ । ମନମଥ ରଥ—କନ୍ଦର୍ପର ରଥ ।

୬୯ । ଯାବକ—ଅଳତା । ମାର ଗରବ—କାମର ଦମ୍ଭ । ରାଜିଲା—ଶୋଭା ପାଇଲା । ଧୈର୍ଯ୍ୟ-ତରବ—ମନର ଠାଣ ରୂପ ଗଛ । ସୁଷମା—ଶୋଭା ।

୩୦ । ବାମ—ଶତ୍ରୁ । ବିୟୋଗୀ—ବିରହୀ ପୁରୁଷ ।

୩୧ । ଦରଦମ୍ଭଦର—ମହାଦେବଙ୍କ ଗର୍ବନାଶ କରିବାପାଇଁ ।

୩୨ । ସୁହୀନ—ଅଛ ସରୁ । ଅବନୀ ମୋହନୀ—ଯେଉଁ ସ୍ତ୍ରୀ ଶୋଭାରେ ପୃଥିବୀକୁ ଅର୍ଥାତ୍ ପୃଥିବୀର ଲୋକଙ୍କୁ ମୋହି ପାରେ । ନବନୀତ ଦେହା—ଲହୁଣୀ ପରି କୋମଳ ଦେହ ଯେଉଁ ସ୍ତ୍ରୀର ।

୩୩ । ଉଚ୍ଛି—ଡିମ୍ବ । ଯୁବା······ପଦ୍ମ=ଯୁବାଲୋକଙ୍କ ମନ ହେଲା ପଦ୍ମ । ତା ପ୍ରତି ଏ ପିନ୍ଧା ଛଇ (ପଦ୍ମ) ବନ୍ଧ ପରି । ମୀଡ଼—ଖୋଷଣୀ । ସୁର ନର ନାଗେ—ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନପୁରରେ ।

୩୪ । ତାର ଗୋର୍ ଦେହ, କଳାମେଘୀ ଶାଢ଼ୀ ପିନ୍ଧିବାରୁ (କନକ ଲତାରେ) ସୁନା ଲତାରେ ନୀଳ ତମାଲ ଲତା ଗୁଡ଼େଇ (ବେଷ୍ଟନ) ହେଲାପରି ଶୋଭା ପାଉଛି । ଭୁଷ୍ଟୀ—ଭୁନ ହୋଇ ।

୩୫—ଦ୍ରବ୍ୟପଲଚ ନାଗବଲ୍ଲୀ ଦଳ—ଭଲ ପାଚିଲାପାନ । ଚନ୍ଦ୍ରକଳା—ଜଣେ ସଖୀର ନାମ । ଶଦ୍ରୁମ—ପୋହଳା । ଲମ୍ବାରସ ଅଳତା ।

୩୬—ଶନ୍ଧ୍ୟାକାଳରେ—ବିଜୁଳି କୋଳରେ । ନବୀନ ମେଘ ନୂଆମେଘ । କଳାମେଘୀ ଶାଢ଼ୀ ଉପରେ (କନକ) ସୁନାଜରି ଲଗିଥିବା ଓଢ଼ଣୀ ପକାଇବାରୁ ବିଜୁଳି କୋଳରେ ନୂଆମେଘପରି ଶୋଭା ଦଶିଲା । ଅର୍ଘ୍ୟ—ପୂଜାଦ୍ରବ୍ୟ । ତରଣିଙ୍କ—ସୂର୍ଯ୍ୟଙ୍କୁ । ତରୁଣୀମସ୍ତକମଣି—ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଥାତ୍ ଅତିସୁନ୍ଦରୀ ।

୩୭ । ଚିନ୍ଦୁଆ—ଏକରକମ ଶାଢ଼ୀ । ପ୍ରପଦତଳେ—ଗୋଡ଼ତଳେ । ପ୍ରମଦାବୃନ୍ଦକୁମୁଦ—ସଖୀମାନେ ହେଲେ କଇଁ ଫୁଲପରି,

ସେମାନଙ୍କୁ ସେ ଜଣାମଣି ଅର୍ଥାତ୍ ଚନ୍ଦ୍ରକଙ୍କପଣ (ମୁଦକଣ) ଅନନ୍ଦତ କର ଶଜେକଲ୍ଲ ।

୩୯ । ଶତାଙ୍ଗ—ରଥ । ମତ୍ଵକଣ୍ଠ—ମଭୁଥିଲ୍ଲ ଦାଗ ।

୪୧ । ଭ୍ରମଲ—ଭଅଁର ।

୪୩ । ସୁମନାବର୍ଗ—ଦେବତାମାନେ ।

୪୫ । ପଢଣୀ—ଲୁଗା । କଉଶଳ—ବନ୍ଧାପନା ।

୪୭ । ମଉଳରେ—ମୁଣ୍ଡରେ ।

---

## ନବମ ଛାନ୍ଦ

୧ । ଶଙ୍କରଦ୍ଵାରେ—ଶଙ୍କରଦ୍ଵାର୍ଶ୍ବ ।

୨ । ସୁଷମା—ଶୋଭା, ସୁନ୍ଦର ପଣିଆ ।

୩ । ଦାନେ...ବଳ—ଦାତାପଣଅରେ ବଳିରାଜାପର ।

୪ । ପ୍ରସନ୍ନ—ସନ୍ତୁଷ୍ଟ, ଖୁସି । ପ୍ରକଟେ—ପ୍ରକାଶ୍ୟ ଭାବରେ । ପଟେ—ଛଳରେ । କାଦୃଶ—କପରି ।

୫ । ଯିସ—ଯେ ପ୍ରକାର ।

୯ । ଧୀବନ୍ତ—ବୁଦ୍ଧିମାନ ।

୧୦ । ବଲୋକନ—ଦେଖିବା ।

୧୧ । ଅଳକା-ଅଳଙ୍କାର—କୁବେର ପୁରର ଭୂଷଣ ସ୍ଵରୂପ ଅର୍ଥାତ୍ କୁବେର ପୁରଠାରୁ ବଳି ସୁନ୍ଦର । ମଘବା—ଇନ୍ଦ୍ର ।

୧୨ । ନରେ—ମର୍ତ୍ତ୍ୟଭୁବନରେ । ନାଗନାକରେ—ପାତାଳ ଓ ସ୍ଵର୍ଗରେ ।

୧୩ । ଦାତୃତାପଣ—ଦାତା ପଣିଆ । ପଟେ—ଛଳରେ ।

୧୪ । ତୁରଙ୍ଗପର—ଘୋଡ଼ାପରି ଚଞ୍ଚଳ ।

୧୫ । ଅଙ୍ଗ—ଭାଗଲପୁର ଅଞ୍ଚଳ । କଳିଙ୍ଗ—ଗଞ୍ଜାମ ଏବଂ ଉତ୍ତର ସରକାର । ସୌରାଷ୍ଟ୍ର—ଆଧୁନିକ କାଥିଆବାଡ଼ । ବଙ୍ଗ—ଆଧୁନିକ ବଙ୍ଗଳାର ପୂର୍ବାଞ୍ଚଳ । ଓଡ୍ରଙ୍ଗ—କଟକ ପୁରୀ ପ୍ରଭୃତି ଅଞ୍ଚଳ । ମରହଟ୍ଟ—ମହାରାଷ୍ଟ୍ର ଦେଶ । ଦ୍ରାବିଡ଼—ଆଧୁନିକ ଗୋଦାବରୀ ଏବଂ କୃଷ୍ଣାଜିଲ୍ଲା । ଗୌଡ଼—ଉତ୍ତର ବଙ୍ଗ । ମଘ—ମଗଧଦେଶ । ମରୁ—ରାଜପୁତନା ଅଞ୍ଚଳ । ନେପାଳ—ହିମାଳୟର ପାଦଦେଶରେ ଥିବା ଏକ ଦେଶ । ଲାଟ—ନର୍ମଦା ନଦୀର ପଶ୍ଚିମାଞ୍ଚଳ, ବରୋଦା ଓ ଅହମଦାବାଦ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

୧୬ । ବିଦେହ—ମିଥିଳା ଦେଶ । ବିଦର୍ଭ ପ୍ରଭବ—ବିଦର୍ଭ ଦେଶ, ବେରାର । ପଞ୍ଚାଳ—ଦୋଆବ, ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ସ୍ଥାନ । କୁଶଳ—ଅଯୋଧ୍ୟା ଦେଶ । ଚେଦି—ନର୍ମଦା ନିକଟବର୍ତ୍ତୀ ଦେଶ ବିଶେଷ । ଶୈଳ—ମଣିପୁରର ଦକ୍ଷିଣାଞ୍ଚଳ । ଏଠାରେ ମାଞ୍ଜ ଓ ଲୁଗା ଜଳ ମିଳୁଥିବାରୁ କବି ନାଗଶୈଳ (ଧାଞ୍ଜୁ ବା ଲୁଗା) ଶୈଳ ବୋଲି କହି ଅଛନ୍ତି । ଭୋଟ—ଭୁଟାନ ଦେଶ । ଏଠାର ଲୋକେ ଲୋମଯୁକ୍ତ ବସ୍ତ୍ର ପରିଧାନ କରୁଥିବାରୁ କବି ଲୋମଶ (ଲୋମଯୁକ୍ତ) ଭୋଟ ବୋଲି କହି ଅଛନ୍ତି । ମତ୍ସ୍ୟ—ଜୟପୁର ଆଦି ଅଞ୍ଚଳ । ସିନ୍ଧୁ—ଆଧୁନିକ ସିନ୍ଧୁଦେଶ । କାନ୍ୟକୁବ୍ଜ—କନୌଜ । ବାହ୍ଲିକ—ବେଲୁଚି ସ୍ଥାନର ନିକଟରେ ଥିବା ବାକଟ୍ରିୟା ଦେଶ । କେରଳ—ଦାକ୍ଷିଣାତ୍ୟର କାନାରା ଅଞ୍ଚଳ । ଉତ୍କଳ—ଓଡ଼ିଶା । ଗୁର୍ଜ୍ଜର—ଆଧୁନିକ ଗୁଜୁରାଟ । କାମ୍ବୋଜ—ହିନ୍ଦୁକୁଶ ପର୍ବତ ନିକଟରେ ଥିବା ଦେଶ ।

୧୭ । କର୍ଣ୍ଣାଟରେ—କର୍ଣ୍ଣାଟ ଦେଶରେ । ନିଷେଧ—ଅଲକାନନ୍ଦା ନଦୀତୀରରେ ଥିବା ଦେଶ । ମାଗଧ—ମଗଧ ଦେଶ । କଲବରଗ—

କୁଳବର୍ଗ । ମୁଖ୍ୟଦେଶ—ପ୍ରଧାନ ଓ ପ୍ରସିଦ୍ଧ ରାଜ୍ୟ । ବିପକ୍ଷ ପକ୍ଷ ନରେଶ—ଶତ୍ରୁ ଓ ମିତ୍ରରାଜା ।

୨୧ । ମୃଦ—ଜଉମୃଦ ବା ଚଠେର ମୋହର ।

୨୨ । ମୃଦ-ବନ୍ଦକରି ।

---

## ଦଶମ ଛାନ୍ଦ

୧ । ଚନ୍ଦ୍ର ଚତ୍ୱରେ—ଚନ୍ଦ୍ର ଅଗଣାରେ । ଉଦ୍ଦୀପନ—ଉତ୍ତେଜକ । କାମ ଅନଳ—କାମାଗ୍ନି ।

୨ । ମନ୍ଦମଳୟ ମରୁତ—ଧୀର ମଳୟ ପବନ । କୋକିଳ ବଚନେ—କୋଇଲିର କୁହୁ କୁହୁ ଡାକରେ ।

୩ । ଚନ୍ଦ୍ରକର—ଜହ୍ନ ଅଲୁଅ । ରୁଚିର—ସୁନ୍ଦର ।

୭ । ପୁଂସବାଟେ ଅରଣୀ—ପୁରୁଷମାନେ ଦେଖିଲେ ଦାଗ । ତାର ସ୍ତ୍ରୀ ଚୋପ । ଅର୍ଥାତ୍ ଦାଗ ଯେପରି ଚୋପରେ ପଡ଼ିଲେ ଆଉ ଛୁଟି ଯାଏ ନାହିଁ, ପୁରୁଷମାନେ ସେହିପରି ତାକୁ ଥରେ ଦେଖିଲେ ଆଉ ସେମାନଙ୍କର ନିସ୍ତାର ନାହିଁ ।

୮ । ନାଗ ନାକରେ—ପାତାଳ ଓ ସ୍ୱର୍ଗ ପୁରରେ । ବ୍ରାତ—ସମୂହ । ରତି—କନ୍ଦର୍ପର ସ୍ତ୍ରୀ । ରତିକରେ—ଅଳ୍ପକରେ ।

୯ । ସୁଷମା—ଶୋଭା, ଏଠାରେ ସୁନ୍ଦର । କନକ ତନ—ସୁନାପରି ଝଟକୁ ଥିବା ଦେହ । ଲେଖନେ—ଦେଖିଲେଣି । କୁସୁମଧନ୍—କନ୍ଦର୍ପ ।

୧୦ । ପ୍ରଫୁଲ୍ଲ ସାରସ—ଫୁଟିଲା ପଦ୍ମଫୁଲ ।

୧୧ । ଶ୍ରବଣକୁ—ଶୁଣିବାକୁ । ଶ୍ରବଣ—କାନ । ସନ୍ତାପଅନଳ ଦୁଃଖରୂପ ନିଆଁ । ସନ୍ଦର୍ଭ—ବିଷୟ ।

୧୨ । ରସନା—ଜିଭ । ବନ୍ଧୁକ ଅଧର—ବନ୍ଧୁଲୀ ଫୁଲ ପରି ଲାଲ ଓଠ । ମଧୁକର—ଭ୍ରମର । ଅଳି ଅନୁଭବ—ଅନୁଭବ କରୁ ନ ଥିବାରୁ । ବଦନଶଶୀ—ମୁଖଚନ୍ଦ୍ର ।

୧୩ । ସୁକୃତ—ପୁଣ୍ୟ । ଅବନୀତଳକୁ—ପୃଥିବୀକୁ ।

୧୪ । ମହାମହୀନ୍ଦ୍ର ଦୋହିତ—ମହାରାଜାଙ୍କ ଝିଅ । ପଦକମଳେ—ଚରଣପଦ୍ମରେ ।

୧୫ । ଦ୍ରବେ—ତରଳଯାଏ । ଚନ୍ଦ୍ରକରେ—ଜହ୍ନ ଆଲୁଅରେ । ଚନ୍ଦ୍ରକାନ୍ତ—ନାଁ ଏକ ମଣି, ସେ ଜହ୍ନ ଆଲୁଅରେ ତରଳ ଯାଏ । କାନନରେ—ବନସ୍ତରେ ।

୧୬ । ସୁଧାକର—ଚନ୍ଦ୍ର । ପୁରନ୍ଦର—ଇନ୍ଦ୍ର । ମହେଶ—ମହାଦେବ । କାମ—କନ୍ଦର୍ପ । ସୁଷମା—ଶୋଭା । ସାତ୍ତ୍ୱିକ୍ୟ—ସାତ୍ତ୍ୱିକ ବିକାର, ଉତ୍ତେଜନା ଜନିତ ଚିହ୍ନ । ବିକାର—କାମ ଚେଷ୍ଟା ।

୧୯ । ଗୂଢ଼—ମନଘେନା କଥା । ଅଙ୍ଗୀକାର—ସ୍ୱୀକାର ।

୨୦ । ଅନଙ୍ଗ—କନ୍ଦର୍ପ । ବିଷାଇ—ବିଷଯୁକ୍ତ କରି । ହୃଦ—ହୃଦୟ ।

୨୧ । ଆରଦ୍ର ହୋଇ—ତରଳ ଯାଇ । ଆନନରେ—ମୁଖରେ ।

୨୪ । ମଦନ ଆରମ୍ଭେ—କାମଉତ୍ତେଜନରେ । ଗଣ୍ଡେ ଗଣ୍ଡକୁ—ଗାଲରେ ଗାଲକୁ । ଏଣୀନୟନୀ—ହରିଣନେତ୍ରୀ ସ୍ତ୍ରୀ ।

୨୫ । ଲଜ୍ଜାଘନ—ଲଜ୍ଜାରୂପ ମେଘ । ସ୍ନେହବାତରେ—ସ୍ନେହ ରୂପ ପବନରେ । ଅନୁରାଗ—ପ୍ରେମ ବା ସ୍ନେହ । ଭୁରୁଲତାକାମ-କମାଣ—ଉତ୍ପ୍ରେକ୍ଷା ସେ ସ୍ତ୍ରୀର ଭ୍ରୂଲତା କାମର କମାଣ ଅର୍ଥାତ୍ ଧନୁ ସଦୃଶ । ବାଳାମଣି ଶୃଙ୍ଗାର ରୂପକ ଶର ଯୋଖି ସେ ପୁରୁଷକୁ ବିନ୍ଧିଲା ।

୨୭ । ଉତ୍କଟ ଚୁମ୍ବକ—କ୍ରୂର ଗ୍ରହକ ଚୁମ୍ବକ ପଥର ! ଚୁମ୍ବକ ପଥର ଲୁହାର ଜିନଷକୁ ବା ଲୁହାକୁ ଟାଣି ଆଣେ ।

୨୮ । ଋତ—ଭ୍ରମଣ । ହତ ସ୍ୱଚ୍ଛ—ସ୍ୱଚ୍ଛ ପାହୁଗଲ୍ଲ ।

---

## ଏକାଦଶ ଛାନ୍ଦ

୩ । ସ୍ୱଧାର୍ଥୀ—ବ୍ୟୋକଲ୍ପ । କ୍ଷୂଳଣ—ବକ୍ର ।

୫ । ବମ୍ବୋଷ୍ଠୀ—ବମ୍ବ ଫଳପର ସ୍ୱନର ଓ ଲାଲ ଓଠ ଯେଉଁ ସ୍ତ୍ରୀର ।

୭ । ଲୋଚକ—ଲୁହ । ମୀନନୟ୍ନ ଦେଶେ—ମାଛ ଆଖିପର ଚଞ୍ଚଳ ଆଖିରେ

୭ । ବାସ—ପିନ୍ଧା ଲୁଗା । କୁନ୍ତଳ—ମୁଣ୍ଡର ବାଲ । କଲକଣ୍ଠୀ—କୋକିଲ କଣ୍ଠ ପରି ମଧୁର କଣ୍ଠ ଯେଉଁ ସ୍ତ୍ରୀର ।

୧୩ । ଅନ୍ତ୍ୟର କୂଳଣ—ବିରହ ବା ବିଚ୍ଛେଦ ରୂପକ ବକ୍ର ।

୧୫ । ପୀଯୂଷକର—ଚନ୍ଦ୍ର । ଶ ଛ ଚକୋର—ଜ୍ଞାନରୂପକ ଚକୋର ପକ୍ଷୀ । ଚକୋର ପକ୍ଷୀ ଚନ୍ଦ୍ର କିରଣ ପାନ କରିବା ପ୍ରସିଦ୍ଧି ଅଛି ।

୧୬ । ସୁଧା—ଅମୃତ । ଆଶାସ୍ମି ହୋଇ—ମନରେ ଆଶା ପୋଷି ।

୨୧ । ଅତନୁଶର—କାମ ବାଣ ।

୨୨ । ବାସର—ଦିନ ।

୨୪ । ବାଜୁଛି ବାଣୀ—କଥା ବାଜୁଛି ଅର୍ଥାତ୍ ଭୁଣ୍ଡ ଜାଡ଼ ବାଜୁଛି ।

୨୫ । ପକ୍ଷ—ନିହ ବା ସହାୟ ।

୨୬ । ମାରକାସ୍ତ୍ର ପତ୍ର—କନ୍ଦର୍ପର କଇଦଶୀନା ପତ୍ର ।

୨୯ । ଲପନ—ମୁଖ ।

୩୫ । ସ୍ୱେଦ—ସ୍ୱେଦ । କରୀଗଛ—ଗଜଗମନା ।

୩୮ । ପଦ୍ମଜନପ୍ରାଦ୍ୟେ—ଶୃକଚଞ୍ଚପଣ ।

୪୩ । ଅପ—ପାଣି, ଏଠାରେ ଲୁହ ।

---

## ଦ୍ୱାଦଶ ଛାନ୍ଦ

୧ । ସହକାରତରୁ—ଅମ୍ବଗଛ । ବସନ୍ତକାନ୍ତ—ବସନ୍ତ ଋତୁ ହେଲା ସ୍ୱାମୀ । ବନକାନ୍ତା—ବନସ୍ଥ ହେଲା ସ୍ତ୍ରୀ । ମଉଳ—ମୁଣ୍ଡ ।

୨ । ମଦନନୃପ—କନ୍ଦର୍ପ ହେଲେ ରଜା । ବଜସ୍ଥ ଅବସର—ବଳେ କରିବା ବେଳ । ପୁଷ୍ପ ସମସ୍ତ—ବସନ୍ତ କାଳ । ବସନ୍ତ କନ୍ଦର୍ପଚାକରାର (ସଖା) ବନ୍ଧୁ । ତେଣୁ କନ୍ଦର୍ପ ବଳେ କରିବାକୁ ସେ ସାଜୋଉଛ ବଧି ବାହାର କଲା । ଛୁଲୁଥିବା ଫୁଲ ଫୁଟୁବା ହେଲା ଛତା ଟେକା । କଅଁଳ (ପଲ୍ଲବ) ପତର ହେଲା ତୋରଣ ଏବଂ କୁରୁବେଲୀ ଫୁଲ ହେଲା ଚଅଁର ।

୩ । ସୁବାସେ—ଭଲବାସନାରେ, ଅନ୍ୟପକ୍ଷରେ ଭଲ ଲୁଗା ପିନ୍ଧି । ଉତ୍ଫୁଲ୍ଲ ଗଣିକା—ଫୁଟିଲା ଯୂଥି ଫୁଲ, ଅନ୍ୟ ପକ୍ଷରେ ହସହସ ହେଉଥିବା ବେଶ୍ୟା । କଳୁଷଅଙ୍ଗନା—ଦଶ ରୂପକ ସ୍ତ୍ରୀ । ପୂର୍ଣ୍ଣ ସୁଧାକର—ପୂର୍ଣ୍ଣଚନ୍ଦ୍ର । ରଜତ ଦର୍ପଣ—ରୂପା ଅର୍ଶି ।

୪ । ଭ୍ରମର ଝଙ୍କାର—ଭଅଁରମାନଙ୍କର ଗୁଣୁଗୁଣ ଶବ୍ଦ । ତା ଗୁଣ ଟଙ୍କାର—କନ୍ଦର୍ପର ଧନୁ ଗୁଣର ଶବ୍ଦ ।

୬ । ଗନ୍ଧବହ—ପବନ । ଗନ୍ଧ—ନାନାଜାତି ବାସନା । ଧୀର—ଦମ୍ଭ ବା ଧୈର୍ଯ୍ୟ । ଅନୁକମ୍ପା—ଦୟା । ଭଙ୍ଗପ୍ରୀତି ହୋଇଲେ=ପ୍ରୀତି ଭାଙ୍ଗିଦେଲେ । ଚମ୍ପାଫୁଲ ଭଅଁର ପ୍ରୀତିକୁ ଭାଙ୍ଗିଦେଲା । ଚମ୍ପା ଫୁଲରେ ଭଅଁର ବସେ ନାହିଁ ବୋଲି ପ୍ରସିଦ୍ଧି ଅଛି । ପ୍ରସୂନ—ଫୁଲ ।

୭ । ପୁଷ୍ପତରୁବନ—ଫୁଲଗଛମାନେ । ଭଜିଲେ ପଲ୍ଲବ ଭାବକୁ—ପଲ୍ଲବ ଉଠିଲେ ବା କଅଁଳ ଉଠିଲେ । ଅନୁରାଗ—ସ୍ନେହ । କଳରବ—ମଧୁର 'କୁହୁ' ଶବ୍ଦ ।

୮ । ମାର୍ଗ—ବାଟ । ଏଣୀଦୃଶୀ—ମୃଗନୟନା ରାଜକନ୍ୟା ।

୯ । ଘନସାର -କର୍ପୂର । ରଶ୍ମିକେଶୀ—ଯେଉଁ ସ୍ତ୍ରୀର ବାଳ କୁଞ୍ଚିକୁଞ୍ଚିଆ । ଜ୍ୟୋତ୍ସ୍ନା—ଜହ୍ନ । ଯତନରେ—ଯତ୍ନରେ । ବାସକୁ—ଲୁଗାକୁ । ସମ୍ଭାର-ଚନ୍ଦନ । ଚନ୍ଦ୍ରକଳାକୁ—ସେହି ନାମଧାରିଣୀ ଜଣେ ଦାସୀକୁ । ସୋଡ଼ଶବର୍ଷ—ଷୋଳ ବରଷରୁ ଚଉଦ ଜଣେ ଯେଉଁ ସ୍ତ୍ରୀ ପ୍ରଥମ ହେବ ଅର୍ଥାତ୍ ଅତି ସୁନ୍ଦରୀ ।

୧୦ । କୁନ୍ଦ-କୁମୁଦକୁ—କୁନ୍ଦଫୁ ହେଲା କଇଁଫୁଲ ।

୧୧ । ପାଦର ନେପୁର-ଗୋଡ଼ର ପ୍ରିୟ । କାନନ ଉଦର-ବନସ୍ତ ଭିତର ।

୧୨ । ରଜନୀକରମୁଖୀ—ଚନ୍ଦ୍ରମୁଖୀ । ମଙ୍ଗଳ ଶ୍ରବଣ—କୁଶଳ ବାର୍ତ୍ତା ବା ଭଲ ମନ୍ଦ କଥା ।

୧୩ । ଧବ ପାଶରେ—ଧଅ ଗଛ ପାଖରେ । ଏଠାରେ 'ସ୍ୱାମୀ ପାଖରେ' ଅର୍ଥ ମଧ୍ୟ ସୂଚିତ ହେଉଛି । ବହରେ—ଏକାନ୍ତରେ ।

୧୪—ଅଗ୍ରମ—ବର୍ଗିତ୍ । ଅବଳା—ସ୍ତ୍ରୀ । ଶ୍ରୀଫଳକୁଚ—ବେଲ ହେଲା ସ୍ତନ । ପଦାବଳରେ—କଅଁଳିଆ ପତରରେ । ସ୍ତ୍ରୀ

ପକ୍ଷରେ କସ୍ତୁରୀ ରହାରେ । ମନ୍ଦାର-ଅଧରେ—ମନ୍ଦାରଫୁଲ ରୂପକ ଓଠରେ । ତମାଳ ପ୍ରକର—ତମାଲ ଗଛମାନ । ଚକ୍ଷୁର–ବାଳ ।

୧୫ । ପ୍ରଫୁଲ୍ଲ ମଲ୍ଲିକା ବଲ୍ଲକା ସୁଷମ ଗୁଚ୍ଛମ—ମଲ୍ଲୀଗଛମାନଙ୍କରେ ଫୁଟିଥିବା ସୁନ୍ଦର ସୁନ୍ଦର ଫୁଲ । ସେ ହେଲେ ଦନ୍ତ, ତନ୍ଦ୍ରିରେ ଏ ବଗିଚ୍ଚ (ମଞ୍ଜୁଳ) ମନୋହର ହୋଇଅଛି । ଏଠାରେ ଫୁଟନ୍ତା ମଲ୍ଲୀଫଲଙ୍କୁ ସ୍ତ୍ରୀର ଦନ୍ତ ବୋଲି କୁହା ଯାଇଅଛି । କର କୋରକ–ହାତ ହେଲା ଫୁଲକଳି କୁନ୍ଦବୃନ୍ଦରଦ—କୁନ୍ଦଫୁଲ ଗୁଚ୍ଛକ ହେଲା ଦାନ୍ତ । ସ୍ମନସ୍ମନୀଳଉତ୍ପଳ—ଆଖି ହେଲା ନୀଳ କଇଁ । ପଲ୍ଲବ···ରୁଚିର=କଅଁଳ ପତରର ରକ୍ତଭଆ ବର୍ଣ୍ଣ ହେଲା ସ୍ତ୍ରୀର ହାତ ପାପୁଲି ପରି ସୁନ୍ଦର । ଅଙ୍କୁଳଚମ୍ପକକଳିକା—ଅଙ୍ଗୁଳି ହେଲା ଚମ୍ପା କଢ଼ । ସୁନବମାଳକାକରଜପ୍ରକର–ନଆଳ ଫୁଲ ହେଲା ନଖ ସବୁ ।

୧୬ । ଲଙ୍କା ପକ୍ଷରେ–କୁମ୍ଭ—ରାବଣ ଭାଇ କୁମ୍ଭକର୍ଣ୍ଣ । ଇନ୍ଦ୍ରଜିତ–ରାବଣ ପୁଅ । ବନ ପକ୍ଷରେ–କୁମ୍ଭ—ଗୁଗ୍ଗୁଳ ଗଛ । ଇନ୍ଦ୍ରଜିତ—ଦେବଦାରୁ । ବିରାଟ ପକ୍ଷରେ—କୀଚକଉଦ୍ଦାମ ନିସ୍ୱନ—ବିରାଟ ଶାଳକର ଗର୍ବୋଦ୍ଧତ ଭାଷା । ବନପକ୍ଷରେ—କୀଚକଉଦ୍ଦାମ ନିସ୍ୱନ—ବାଉଁଶ ଗଛର କେଁ କାଁ ଶବ୍ଦ । ବନପକ୍ଷରେ-କୁବେର—ପଦ୍ମ । ଅଲକା ପକ୍ଷରେ—କୁବେର–ଅଲକାର ଅଧିପତି । ମୁନି ଆଶ୍ରମ ପକ୍ଷରେ—ସୁରଭି—ସ୍ୱନାମପ୍ରସିଦ୍ଧ କାମଧେନୁ । ବନପକ୍ଷରେ—ସୁରଭି–ଚମ୍ପାଫୁଲ ବା ଜାଇଫଳ ଗଛ । ଆଶ୍ରମ ପକ୍ଷରେ—ରେଣୁକା–ଯମଦଗ୍ନିଙ୍କ ସ୍ତ୍ରୀ । ବନ ପକ୍ଷରେ ରେଣୁକା—ଔଷଧି ବିଶେଷ ।

୧୭ । ବନପକ୍ଷରେ—ଗୁରୁ–ଜାଫରାନ କେଶର ଗଛ । କବଖ୍ୱ—କାଳି ହଳଦିଆ । ନାଗସ୍ୱ ପକ୍ଷରେ—ଗୁରୁ ମନୋହର । କବସ୍ୱ—

ମୁଣ୍ଡର ଜୁଡ଼ା । ନବବଧୂ—ନୂଆ ବୋହୂ । ଅନ୍ୟ ପକ୍ଷରେ ନୂଆ ବଧୂଲି ଗଛ । ମାନେ—ବହୁବଚନ ବାଚକ ଚିହ୍ନ । ଅନ୍ୟ ପକ୍ଷରେ ଅଭିମାନରେ । ପଲ୍ଲବରାଗ—କଅଁଳିଆ ପତ୍ରର ନାଲି ରଙ୍ଗ । ରାଗ—ସ୍ନେହ । ନୂଆବୋହୂ ପକ୍ଷରେ—ତରୁଣ—ଯୁବକ । କରଜ—ନଖ । ବନ ପକ୍ଷରେ—ତରୁଣ—ଜଡ଼ା । କରଜ—କରଞ୍ଜ ଗଛ ।

୧୮ । ଆରାମ—ବଗିଚା । ରମ୍ୟବେଣୀ—ଗୁରୁନସ୍ତନା । ନବମାଳିକା—ନଅଳି ଲତା । ବିଟପେ ବେଷ୍ଟିତ—ଗଛରେ ଗୁଡ଼ାଇ ହୋଇଛି ବା ବେଢ଼ିଛି । ବନିକା ଅର୍ଥାତ୍ ଶ୍ରେଷ୍ଠ ବନ ବା ବଗିଚା ପକ୍ଷରେ ଏ ଅର୍ଥ । ବନିକା ବା ସ୍ତ୍ରୀ ପକ୍ଷରେ—ବିଟପେ—ଜାର ପୁରୁଷରେ ।

୧୯ । ରସାଳ—ଆମ୍ବ । ରସାଳ ପକ୍ୱକୋଷ—ପାଚିଲା ଆମ୍ବପର କୋଷ । ରସାଳସୀଶିରମଣ୍ଡନା—ରସିକା ସ୍ତ୍ରୀମାନଙ୍କର ମସ୍ତକ ଭୂଷଣ ସ୍ୱରୂପା । ଅର୍ଥାତ୍ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠା । ବସନ୍ତ କାନ୍ତ—ବସନ୍ତ ଋତୁ ରୂପକ ସ୍ୱାମୀ । କାନ୍ତ ପଲ୍ଲବଚୀର—ସୁନ୍ଦର କଅଁଳିଆ ପତ୍ର ରୂପକ ଲୁଗା । ଆଶାସ୍ୱିତାଭାବେ—ତାଠାରେ ଆଶାବନ୍ତ ହୋଇ । ଅନୁରାଗୀ—ସ୍ନେହୀ । ଜାର ଭ୍ରମର—ଜାର ପୁରୁଷ ତୁଲ୍ୟ ଭଅଁର ।

୨୦ । ବକୁଳ ମୁକୁଳ—ବଉଳ ଗଛର କଢ଼ି । କଳବତୀ—ମଧୁର ଭାଷିଣୀ । ଉଠୁଛି ବିକାଶଭାବକୁ—ଫୁଟି ଆସୁଛି । ମଧୁପ—ଭଅଁର । ସମୀପକୁ—ପାଖକୁ । କାନ୍ତାକୁ—ସ୍ତ୍ରୀକୁ । କାନ୍ତ—ସ୍ୱାମୀ ।

୨୧ । ତଗର—ତଗର ଫୁଲ । ଗର ପର—ବିଷ ପର । ଅସୁଖଦ—କଷ୍ଟ ଦିଏ । ବିରହିଜନଙ୍କୁ—ଯେଉଁମାନେ ନିଜ ସ୍ତ୍ରୀଠାରୁ ବିଚ୍ଛିନ୍ନ ହୋଇ ଦୂରରେ ଅଛନ୍ତି । ଅଶୋକ—ଅଶୋକ ଫୁଲରେ । ଲୋକରେ—ଦେଖିଲା ମାତ୍ରକେ ।

୨୨ । ନାରଙ୍ଗ ମୋହନୀ—ନାରଙ୍ଗ ଫଳର ରଙ୍ଗକୁ (ଈଷତ୍ ନୀଳବର୍ଣ୍ଣ) ଯେଉଁ ସ୍ତ୍ରୀ ମୋହିତ କରେ—ଏଠାରେ ରାଜକୁମାରୀ । ନାଗରଙ୍ଗ—ନାରଙ୍ଗୀ ଲେମ୍ବୁ । ନାଗରଙ୍ଗ ଗତି—ହାତୀ ପରି ରଙ୍ଗରେ ହଲି ହଲି ଯେଉଁ ସ୍ତ୍ରୀ ଗମନ କରେ—ରାଜକୁମାରୀ । ଅଳଙ୍କରୁ—ଶ୍ରେଷ୍ଠ ଗଛ । ଅନଳପ—ବଡ଼ ବା ବେଶି । ଅଲମ୍ବିତ—ନାରଙ୍ଗୀ ଲେମ୍ବୁ ଗଛ—ବଡ଼ହାତୀ (ଇନ୍ଦ୍ରଙ୍କର) । ଅଙ୍କାଶ—ଭଲରୂପେ ଜଣା । ପତିତ—ଅତିଶୟ ।

୨୩ । ଶର୍ମ୍ମାଗୋଷ୍ଠୀ—ବନ୍ଧୁଳପର ଶୋଭା । ଅନୁକମ୍ପା—ଦୟା । ବର୍ଣ୍ଣରେ—ରଙ୍ଗରେ । ଏଣୀଦୃଶୀ—ହରିଣନୟନା ।

୨୪ । ଅଳକା—ଭଅଁରମାନେ । ବସନ୍ତକୃତାନ୍ତ—ବସନ୍ତ ରୂପ ଯମ । ମାର—କନ୍ଦର୍ପ । ଅଜଳ—ନାଅଁ । ଲକ୍ଷ୍ମୀ ଭୃଙ୍ଗ—ଫୁଲ ମହୁ ଗ୍ରହଣ ବା ଫୁଲ ମଧ୍ୟରେ ଲୋଟି ଭଅଁର । ଗତାଗତ—ଯିବା ଆସିବା ।

୨୫ । ରାଗରେ—ପ୍ରୀତି ବଶରେ ବା ସ୍ନେହରେ । ପୁନ୍ନାଗ—ଜାଇଫଳ ଗଛ । ଅନ୍ୟ ପକ୍ଷରେ ରସିକ ପୁରୁଷ ।

୨୬ । କରୁଣାରେ—ଦୟାରେ । କରୁଣାକୁ—ଜାଇଫଳ ଲେମ୍ବୁ ଗଛ ପ୍ରତି । ଦୃଷ୍ଟି—ଆଖି ।

୨୯ । ରଥାଙ୍ଗ—ଚକ୍ରବାକ, ଅନ୍ୟପକ୍ଷରେ ସୁଦର୍ଶନ ଚକ୍ର । କମଳ—ପଦ୍ମଫୁଲ, ଅନ୍ୟପକ୍ଷରେ—ବିଷ୍ଣୁଙ୍କ ଆୟୁଧ ପଦ୍ମ । ପୋଖରୀରେ ଚକ୍ରବାକ ପକ୍ଷୀ ଓ ପଦ୍ମଫୁଲ ଅଛି । ତେଣୁ ତାହା (କମଳା କାନ୍ତ) ବିଷ୍ଣୁଙ୍କ ତୁଲ୍ୟ ହୋଇଅଛି । ହଂସ—ହଂସପକ୍ଷୀ ଅନ୍ୟ ପକ୍ଷରେ ସୂର୍ଯ୍ୟ । ପୋଖରୀରେ ହଂସ ଥିବାରୁ ତାହା ଆକାଶ ପରି ହୋଇଛି । ଅମୃତ—ପାଣି । ଅନ୍ୟ ପକ୍ଷରେ ଅମୃତ । ପୋଖରୀରେ ଅମୃତ ଥିବାରୁ ତାହା (ସୁରପୁର) ସ୍ୱର୍ଗ ପରି ହୋଇଛି । ସବଳ—ହଂସଜାତୀୟ ପକ୍ଷୀ ବିଶେଷ

ଅନ୍ୟପକ୍ଷରେ ଶରମାନ । ମୀନକେତନ — କନ୍ଦର୍ପ । ସେ ପୋଷକୀରୁ (ଅବଲୋକନର) ଶୃଙ୍ଗବାରେ (ରତି) ସ୍ନେହ ବଢିବାରୁ ତାହା (ରତି ସ୍ୱରୂପ ନକେତନ) କାମଦେବଙ୍କ ସ୍ତ୍ରୀ ରତି ଦେବୀଙ୍କ ସ୍ୱରୂପ ଗୃହ ପରି ହୋଇଛି

୩୦ । ଚଷରେ—କୌତୁକରେ । ରସରେ—ପାଣିରେ । ଅବଗାହ—ସ୍ନାନ । ରୁଚିର—ସୁନ୍ଦର । ଝୀନ ବସନରେ—ସରୁଲୁଗାରେ । ଲାଲ ପାଟ—ପାଟ ଲୁଗା । ମଦର ନେତ୍ରୀ—ଖଞ୍ଜନାକ୍ଷି ।

୩୩ । ଅମ୍ବରେ—ପାଣିରେ । ଶଶିଲପନା—ଚନ୍ଦ୍ରମୁଖୀ ।

୩୪ । ଚନ୍ଦ୍ରମଣି ଚଉକୁ—ଚନ୍ଦ୍ରକାନ୍ତ ମଣି ପରି ଚଉ । ସ୍ପୃ ବାଣୀଚନ୍ଦ୍ର—ଶିବ ବ୍ରହ୍ମଶୁଖଙ୍କର ସ୍ପୃ କଥା ଚନ୍ଦ୍ର ପରି । କୁଞ୍ଚ-କୁନ୍ତଳା—କୁଞ୍ଚୁକୁଞ୍ଚିଆ ବାଳ ଯେଉଁ ସ୍ତ୍ରୀର । ବଲ୍ଲଭ—ସ୍ୱାମୀ । କ୍ଷଣ—କ୍ଷୀଣ ବା ସରୁ ।

୩୭ । ବାରଣଗମନା—ଗଜଗମନା । ଅଶନ—ଖାଇବା । ବସନ—ଲୁଗା ପିନ୍ଧିବା । ବସନ···ପରକାର—ଲୁଗା ପଟାନ୍ତ ପରି ଭାସି ଯାଉଛି । କଲବଚନା — ମଧୁରଭାଷିଣୀ । ଅପ—ପାଣି, ଏଠାରେ ଲୁହ ।

୩୯ । ବିଭ୍ରା — ବିବାହ । ବିଭ୍ରା —ଅଙ୍ଗଲାବଣ୍ୟ ।

୪୦ । ପଟ—ଛବି । ସ୍ମିତ ବଦନରେ—ହସହସ ମୁହଁରେ ।

୪୧ । ପାଶରେ—ଫାଶରେ ବା ଜାଲରେ । ପୂର୍ଣ୍ଣ ସୁଧାକର—ପୂର୍ଣ୍ଣଚନ୍ଦ୍ର । ନୟନ ଚକୋର—ଆଖି ରୂପକ ଚକୋର ପକ୍ଷୀ । ଚକୋର ପକ୍ଷୀ ଚନ୍ଦ୍ର କିରଣ ପାନ କରେ ।

୪୨ । ଶମପି—ଶକ୍ତି ।

୪୩ । ଉଦନ୍ତ—ବାର୍ତ୍ତା ବା ସନ୍ଦେଶ ।

୪୪ । ବଟୁ—ବ୍ରହ୍ମଚାରୀ ।

# ତ୍ରୟୋଦଶ ଛାନ୍ଦ

୩ । ଉନ୍ନତ—ସ୍ତନକୁ । ନାଭତଳ—ଉଜ୍ଜ୍ୱଳ ବା ଝଟକୁଥିବା । ଅନଙ୍ଗରଙ୍ଗ—ବେଶ୍ୟାଙ୍କରେ । ବରନାଗରୀ—ସୁନ୍ଦରୀ । କନକ—ସୁନା ।

୫ । ଅନ୍ୱନୟ—ନମ୍ରବାଣୀ । ଅନୃଦଣ୍ଡ—କୃଷ୍ଣୋଦଣ୍ଡ ।

୬ । ଶିରୀଷ ଦେହା—ଶିରୀଷ ଫୁଲ ପରି କୋମଳ ଦେହା । ତର—ଶୀଘ୍ର ।

୭ । ଭ୍ରମର କେଶୀ—ଭଅଁର ପରି କଳା ବାଳ ଯେଉଁ ସ୍ତ୍ରୀର । ଅମର ପଦ—ଇନ୍ଦ୍ରପଦ ବା ଦେବତା ପଦ । ଅଧ—ତଳ ବା ଭୂମି ।

୯ । ନାଗରମୋହିନୀ—ରସିକ ଯୁବକମାନଙ୍କୁ ଯେଉଁ ସ୍ତ୍ରୀ ଭୁଲାଇ ପାରେ ।

୧୦ । ଯାବକ—ଅଲତା । ଲବକ—ହଠାତ୍ ଦେଖିଲେ ଅଳ୍ପକ୍ଷଣେ, । ଅନୁସରଣ—ପିଛା ଧରିବା ।

୧୧ । ରମଣୀୟ—ସୁନ୍ଦର । ଭ୍ରମଥଳୀ—ପୁନାଗୋଟା ।

୧୨ । ପୁରତେ—ଆଗରେ ।

୧୩ । ମୋଦରେ—ଆନନ୍ଦରେ ।

୧୮ । ଅରଣ୍ୟ ଦୋଳ—ଜଙ୍ଗଲପାଇ ।

୨୧ । ଲପନ—ମୁଖ । ଦରପ—ଗର୍ବ । ଦରପଣର—ଆଇଁନାର । ଅଧ—ତଳକୁ । ବଧ—ଚନ୍ଦ୍ର । ବଦ୍ୱରେ—ଢାଳର ତୁଲ୍ୟ ।

୨୨ । ଦର—ଶଙ୍ଖ । ଦରକୁ—ଉଚ୍ଚକୁ । ଶଙ୍ଖାସୁନ୍ଦଳ—ଶଙ୍ଖଳଣ୍ଠିକ ।

୨୩ । କୁଚଗଡ଼—କୁଚରୂପକ ଦୁର୍ଗ ।

---

# ଚତୁର୍ଦ୍ଦଶ ଛାନ୍ଦ

୧ । ଦ୍ୱିଦନ୍ତ ଗଡକ—ଗଜଗଦନାକୁ, ଏଠାରେ ସ୍ତନକୁମାନଙ୍କୁ ।

୨ । ଗଉରୀବର—ମହାଦେବ । ଗଉରୀବର – ଗୌରାଙ୍ଗୀ ସ୍ତ୍ରୀଙ୍କ ମଧ୍ୟରେ ପ୍ରଧାନ – ସ୍ତନକୁମ୍ଭ ।

୩ । ସରସିଜବଦନା – ପଦ୍ମମୁଖୀ ।

୪ । ଶଟିକରଦାସୀ—ଜଡଅଙ୍କୁଅ ପରି ନିର୍ମଳ ଯେଉଁ ସ୍ତ୍ରୀର ଦନ୍ତ । ଚଟିକବଶିକ–ରସିକମାନଙ୍କୁ ବଶ କରିବା । ଯଉଧୃଢ ଖଣ୍ଡିତା– ଯେଉଁ ସ୍ତ୍ରୀ ମୁନଙ୍କର ଠେକଲୁ ଚୂନା କରିପାରେ ।

୫ । କରକବଦନା—ଡାଳିମ୍ବମଞ୍ଜିପରି ଯେଉଁ ସ୍ତ୍ରୀର ଦନ୍ତ ।

୯ । ନିଦାଘେ –ଗ୍ରୀଷ୍ମକାଳରେ । ଲପନ – ମୁଖ ।

୧୧ । ଜୀବନଜଜଳମ୍ବୁହୀ – ଶୋଭାରେ ପଦ୍ମକୁ ଜିଣି ଯାଇଛି ଯେ ସ୍ତ୍ରୀର ମୁଖ ।

୨୧ । ଚାମ୍ପରସବାସୀ–ଚମ୍ପାର ବାସନା ପରି ବାସନା ଯେଉଁ ସ୍ତ୍ରୀର ଦେହରୁ ବାହାରେ । ଦୋଷଡ଼ା—ଶୂଦର । ପାହାଡ଼ା–ବଡ଼-ଲୋକମାନେ ବଜେ କଲାବେଳେ ଭୂଇଁରେ ଯେଉଁ ଲୁଗା ପଡ଼େ ଏବଂ ଯାହା ଉପରେ ସେମାନେ ଗମନକରି ଯାନ୍ତି ।

୨୪ । ମାରଦର–କାମଭୟ ।

୨୫ । ସରସିରୁହଲପନ–ପଦ୍ମମୁଖ ।

୨୬ । ଅଧିକଳୁ–ତଳକୁ କାଲୁ, ଉଚ୍ଚ କଲୁ । ଅତନୁ–କନ୍ଦର୍ପ ।

୨୭ । ଦହହେମଗୋରୀ–ଯେଉଁ ସ୍ତ୍ରୀର କାନ୍ତି ପୋଡ଼ା ସୁନାପରି ଦିଶୁଥାଏ ।

୨୮ । ଶିବା–ପାର୍ବତୀ ।

୨୯ । ଛନ୍ଦ — ବେଶ । ଛନ୍ଦ — କ୍ଷୀଣ । କୁସୁମଶରେ — ଫୁଲ ବାଣରେ ।

୩୨ । ପାଣି — ହାତ । ଅନଳ — ନିଆଁ ।

୩୩ । ଅନୁରାଗ — ସ୍ନେହ ।

୩୪ । ବାମ — ଶତ୍ରୁ ।

୩୫ । ବାରିଜନୟନା — ପଦ୍ମନୟନା ।

୩୬ । ଅବନ କର — ଶୋଷ କର ।

୩୮ । ପ୍ରଳମ୍ବକୁନ୍ତଳା — ଯେଉଁ ସ୍ତ୍ରୀ ମୁଣ୍ଡରେ ଖୁବ୍ ଲମ୍ବା ବାଳ ଥାଏ ।

୩୯ । ହେଳଣି — ରଙ୍ଗ ।

୪୦ । କାନ୍ତମୁଖୀ — ଯେଉଁ ସ୍ତ୍ରୀର ମୁହଁଟି ସୁନ୍ଦର ।

୪୧ । ପାଣିରେଣ — ହାତଦ୍ୱାରା । ମୋଦକୁ ଲଭ — ଆନନ୍ଦ ପାଇ । କୁମୁଦହାସୀ — କଇଁଫୁଲ ପରି ଯେଉଁ ସ୍ତ୍ରୀର ହସ ସୁନ୍ଦର । ମୁଦ — ଛଠିର ମୋହକ ।

୪୨ । ଅକ୍ଷି — ଆଖି ।

୪୪ । ହେମକୁମ୍ଭଉରଜା — ସୁନା କଳସ ପରି ଯେଉଁ ସ୍ତ୍ରୀର ସ୍ତନ ।

---

## ପଞ୍ଚଦଶ ଛାନ୍ଦ

୧ । ଗଉରୀ — ପାର୍ବତୀ ବା ଦୁର୍ଗା ।

୨ । କାମିନୀମଦନ — ସ୍ତ୍ରୀମାନଙ୍କ ଆଖିରେ ଯେ କନ୍ଦର୍ପପରି ସୁନ୍ଦର । ବଂଶଅବତଂସ — କୁଳଭୂଷଣ ।

୪ । ଛିଦ୍ର — ଶୂନ ।

୭। ସଫର୍ — ଦଣ୍ଡକର ମାଛ।

୭। ପଙ୍କଜ — ପଦ୍ମ। ଘନରସ — ମେଘପାଣି।

୧୦। ନୀରଜନେତ୍ରା — ପଦ୍ମନୟନା।

୧୨। କୃଶ — ସରୁ ବା କ୍ଷୀଣ।

୧୬। ବେଶ — ଦେହ ସଜାଇବା। ବସନ ଅଶନ — ଖାଇବା ପିନ୍ଧିବା। ପ୍ରସୂନଦ୍ଵାସୀ — ଫୁଲ ପରି ଯେଉଁ ସ୍ତ୍ରୀର ହସ। ଅହ୍ନିଦଦ୍ଭେ — ସାପ ଭୟରେ

୩୦। ସାରସଗତି — ହଂସଗମନା।

୩୩। ହରପରଦର — ମହାଦେବଙ୍କ ଶଙ୍ଖ କାମର ଭୟ।

୩୪। ନୀର — ହ୍ରଦ। ନିରବଧି — ସବୁବେଳେ। ତାର — ଭାଣ୍ଡର; ତାର — ଉଜ୍ଜ୍ୱଳ, ଘାପ୍ରେମ.ନ୍।

୩୫। ତରଙ୍ଗ — ଚଞ୍ଚଳତା।

୩୭। ପନୀରନୀର — ସୁବାସଜଳ।

୪୧। ଫୁଲକୋଦଣ୍ଡ — କନ୍ଦର୍ପ।

୪୨। କବମଦଶାରୁ — ମୂର୍ଚ୍ଛାରୁ। କାମପୀଡ଼ାରେ ଲୋକେ ଦଶୋକ୍ତ ଦଶା ବା ଅବସ୍ଥା ଭୋଗ କରନ୍ତି। ଯଥା — ନୟନପ୍ରୀତି, ଚିତ୍ତଭଙ୍ଗ, ସଂକଳ୍ପ, ଲଜ୍ଜାହାନତା, କୃଶତା, ବିଷୟ ନିବୃତ୍ତି, ଉନ୍ନିଦ୍ରଭାବ, ଉନ୍ମାଦ, ମୂର୍ଚ୍ଛା ଓ ମରଣ। ଜୀବନଜମୁଖୀ — ଚନ୍ଦ୍ରମୁଖୀ।

୪୩। ସେବନ — ସେବା। ଅବନ — ରକ୍ଷା। ଷ୍ଟେଲମ୍‌କେଶୀ — ଭଅଁର ପରି କଳାବାଲ ଯେଉଁ ସ୍ତ୍ରୀର।

୪୪। କବଳ କଲା — ଗ୍ରାସ କଲା।

୪୭ । ସୁହା ଛ ନ ଯାଇ – ସହ୍ୟ ହୁଏ ନାହିଁ । ଯୂଥବଣା ଏଣୀଦୃଣୀ – ଦଳଛଡ଼ା ହୋଇ ବୁଲୁଥିବା ହରିଣୀର ଆଖିପରି ଯେଉଁ ସ୍ତ୍ରୀର ଆଖି ଚଞ୍ଚଳ । ସ୍ଫୁରୁଣା – ଆନନ୍ଦ ବା ହର୍ଷ ।

୫୬ । ବଚୋତ୍ତର – ବଚନପ୍ରତ୍ୟୁତ୍ତର, ନମ୍ରଭାବରେ ଉତ୍ତର ଦେବା ।

---

## ଷୋଡଶ ଛାନ୍ଦ

୬ । ସମ୍ଭାବନା – ସତ୍କାର । ପ୍ରସ୍ଥାଣ – ଯାତ୍ରା କରିବା, ଯିବା ।

୩ । ଶିର ଶ୍ରବଣରେ – କଥାଶୁଣିକରି । ଅସ୍ତାଚଳ – ସୂର୍ଯ୍ୟ ଯେଉଁ ପର୍ବତ ଉହାଡ଼ରେ ଅସ୍ତ ହୁଅନ୍ତି । ଛାୟା ନାୟକ – ଛାୟାଦେବୀଙ୍କ ସ୍ୱାମୀ ସୂର୍ଯ୍ୟ ।

୪ । ସୁରଙ୍ଗ – ନାଲି । ହରିଅଙ୍ଗନା – ହରିରୂପକ ସ୍ତ୍ରୀ । କୋକ – ଚକ୍ରବାକ ।

୫ । ତରଣି କାନ୍ତ – ସୂର୍ଯ୍ୟରୂପ ସ୍ୱାମୀ । କାଳଧର୍ମ – ମୃତ୍ୟୁ । ପ୍ରିୟାଦିବସ – ଦିନ ରୂପକ ସ୍ତ୍ରୀ ।

୬ । ଲୀନ – ଲୁଚିଗଲା ବା ଶେଷ ହେଲା । ତମ – ଅନ୍ଧାର । ହରେ – ହରିମାନଙ୍କଠାରେ । ଉଡ଼ୁ – ନକ୍ଷତ୍ର । ଅଙ୍କେ – କୋଳରେ । ନ ଦିଶିଲା – ଦେଖାଗଲା ନାହିଁ ।

୯ । ସରକୂଳେ – ପୋଖରୀ କୂଳରେ । ପଙ୍କଜ—ପଦ୍ମଫୁଲ । କୁମୁଦ—କଇଁଫୁଲ ।

୧୪ । ପ୍ରାଚୀ ଅଗ—ପୂର୍ବ ଦିଗର ସମ୍ମୁଖ ଭାଗ । ଅଗ—ପର୍ବତରେ । ଅରୁଣ—ନାଲି ।

୧୫ । ବାଜିଗଜ—ଘୋଡ଼ାମାନେ । ଅମର—ସ୍ୱର୍ଗ, ଏଠାରେ ଆକାଶ । ( ପତ୍ତି ପଞ୍ଚ ପଦାତୟଃ ) ପତ୍ତି—ଜଣେ ଗଜାରୋହୀ, ଜଣେ ରଥାରୋହୀ, ୩ଜଣ ଅଶ୍ୱାରୋହୀ ଓ ପାଞ୍ଚୋଟି ପଦାତିକ ଯାହା ଅଧୀନରେ ସେ ପତ୍ତି । ଛବ ଅମାଗରେ—ଦାଃଖ ଦ୍ୱାରିଦା ଉପରେ ।

୧୬ । ଗାଗ—ଧୂଳି । ବାରଣ—ହାତୀ ।

୧୭ । ମଜାଙ୍ଗିଦବଦ—(ପାଠାନ୍ତରେ ସନ୍ଧାଉ—ସନାବ ଶବ୍ଦରୁ ଅପଭ୍ରଷ୍ଟ) ଯାହାକାଳୀନ ଶବ୍ଦ ।

୧୮ । ସ୍ୱେଦ—ଝାଳ । ଦବ ଭୁବନ—ଆକାଶ ଓ ପୃଥିବୀକୁ । ମହତ—ବଗାଲ । ମହୀତଳ—ପାତାଳ । ଅହୂତ—ଅମଙ୍ଗଳ ବା ଅସୁଖ । ଅହି—ସର୍ପ ।

୧୯ । ସୁରଗଗନ—ଆକାଶମାର୍ଗ । ରେଣୁରେ—ଧୂଳିରେ । ଭୂତଗଣ୍ଟାପୁ—ଘୋଡ଼ାଙ୍କପୁ । ଟଙ୍କ—ପଥରିଦଣା ଅସ୍ତ୍ର ।

୨୦ । ତରଣୀ—ସୂର୍ଯ୍ୟ । ବାରୁଣୀ-ବାମା ବଦନେ—ପଶ୍ଚିମ ଦଗ ହେଲା ସ୍ତ୍ରୀ, ତାର ମୁହଁରେ । ସରଣୀ—ବାଟ ।

୨୧ । ଇନ୍ଧନ—ଜାଳେଣି କାଠ । ଅଙ୍ଗରାଗେ—ସୁବାସିତ ଦ୍ରବ୍ୟରେ । ଅବଗାହ—ସ୍ନାନ । ଅପୂନଶ୍ରମରେ—ବାଟଚଲା ପରିଶ୍ରମରେ । ମହୀମହୀରୁହ—ବଡ଼ଗଛ ।

୨୨ । ଇଭ—ହାତୀ । ପ୍ରଭାତ—ସକାଳ । ପ୍ରଭାତ—ପ୍ରକଟ, ପ୍ରକାଶ ।

---

## ସପ୍ତଦଶ ଛାନ୍ଦ

୨ । ଶ୍ରବଣେ—କାନରେ । ସୁଆର—(ସବାର ଶବ୍ଦଜ) ଘୋଡ଼ାଚଢ଼ା ସୈନ୍ୟ ।

୩ । ତରକସ — ତୂଣୀର ।

୪ । ଶରଜାଳଗଣ—ବାଣଗୁଡ଼ିକ । ସରନ୍ଧ୍ରରେ— ସଉଣ୍ଡାମରେ, ସାଙ୍ଗସଙ୍ଗରେ ।

୫ । ନଳ—ବନ୍ଧୁକ । ପଦାତ୍ତ—ପାଦରେ ଚାଲିବା ସୈନ୍ୟ । ଫରକାନ୍ଦେମ୍ୱ – ଫରି (ଚମରେ ତିଆରି ଅଢ଼ଣୀ) ଧରିଥିବା ପାଇକମାନେ । ଫଳକ—ଢାଲ । ସ୍ୱର ଧୂପନ୍ତୁ—ସମାନ ଭାବରେ ଦଉଡ଼ନ୍ତି । ଅସି—ଖଣ୍ଡା ।

୬ । ମଲ୍ଲ — ମାଲ । ଧପଟେ — ଦଉଡ଼େ । ବଳୀ — ବୀର । ଶାବଳୀ — (ଶବ୍ଦଳ ଶବ୍ଦଜ) ଜାତିଏ ଅସ୍ତ୍ର । ଫଉଜ — ସୈନ୍ୟ ।

୮ । ଚପଳ — ଚଞ୍ଚଳ । କନକ — ସୁନା । ବାଖର — ଘୋଡ଼ାରେ ପକାଇବା ଆସନ । ବଭ୍ରାଜନ — ଶୋଭନ୍ତି ।

୯ । ତୁରଙ୍ଗେମ୍ୱ — ଘୋଡ଼ାମାନେ । ସଙ୍ଗରେ — ଲଢେଇରେ । ରଙ୍ଗରେ — ବର୍ଣ୍ଣରେ । ରଙ୍ଗରେ — ନାନାପ୍ରକାର ଅଙ୍ଗଭଙ୍ଗୀ କରି ।

୧୦ । ଚୂତ — ଆମ୍ବ । ଗୃରୁ — ମନୋହର । ଗୃରକୋଳ — ଗୃର ଗଛର କୋଳି ।

୧୧ । ବର — ଭଲ, ଶ୍ରେଷ୍ଠ । କରୁଣା — ଜାତିଏ ଲେମ୍ବୁଗଛ । ବଂଶ — ବାଉଁଶ । କୁଞ୍ଜରାଶନ — ଓସ୍ତ ଗଛ । କରକ — ଡାଳିମ୍ବ । କଚମର୍ଦ୍ଦକ — ଶିରିଷ । କମନ — ଅଶୋକ । ବନ୍ଧୁଜୀବକ — ବନ୍ଧୁଲୀ । ବେତସ — ବେତ ।

୧୨ । ନବୀନା — ଜାତିଏ ଫୁଲଗଛ । ନାରଙ୍ଗ — ଜାତିଏ ଲେମ୍ବୁଗଛ । ନାଗକେଶର — ନାଗେଶ୍ୱର । କଣ୍ଟକ — ବଣମଲ୍ଲୀ । କ୍ରମୁକ — ଗୁଆ । କୁଳକ — ମାକଡ଼ କେନ୍ଦୁ । ଜାତି — ଜାଇଫୁଲ । ଗାଲବ — ବେଲ ।

୧୩ । ଝଦର – ଖଇର । ଜମ୍ବୁକ – ଦବଡ଼ାଗଛ । ଜାମ୍ବବ – ଜାମୁ । ଶାଖୋଟ – ଶାହାଡ଼ା । ସରଳ ଶିଶୁ – ଦୁଇଟ ଭନ୍ନ ଭନ୍ନ କାଠଗଛ । ପାଶବଦ୍ରକ – ନମ୍ବ । ଖଖଡ଼ା – ଜାଢଏ ଫଳ । ଅନ୍ୟ ନାମ ଭୁରୁଡ଼ଙ୍ଗ । ଏହାର ଫଳ ମାଛଥିବା ଗଣ୍ଡରେ ଗଡ଼ଜାତ ଲୋକେ ପକାଇଲେ ମାଛମାନେ ତାକୁ ଖାଇ ମରଯାଇ ଭସନ୍ତି । ଲୋକେ ମାଛ ଧରବା ପାଇଁ ଏ ଫଳ ବ୍ୟବହାର କରନ୍ତି । ଖୀର – ଜାଢଏ ଗଛ । ଏ ଗଛରେ ଭଲ ବାଢ଼ ହୁଏ । ଜର – ଏକପ୍ରକାର ଗଛ ।

୧୪ । ଲୁଙ୍ଗଳ – ନଡ଼ଆ ଗଛ । ରଙ୍ଗଣୀ – ବଧୂଲି ଫୁଲ । ଭେରୁ – ଜାଢଏ ଗଛ, ଏହାର କାଠରେ ହାବଳ ବାଣ ପ୍ରସ୍ତୁତ ହୁଏ । ନବମାଲକା – ନଅଳ ଫୁଲ ।

୧୫ । କକୁଭ – ଅର୍ଜୁନ ଗଛ । ନଚୁଲ – ପାଣିବେତ । ପ୍ରିୟଙ୍ଗୁ – ଶ୍ୟାମା ଲତା ବା କଦମ୍ବ ଗଛ ବା କୁଙ୍କୁମ ଗଛ । କ୍ରମୀ – କଣ୍ଟଫଳ । କକ୍କୋଲ – ଏକ ପ୍ରକାର ଗୋଟଫଳ । ହାତୀରେ ଏହାକୁ ଶୀତଳ ଚନ୍ନ କହନ୍ତି । ପୁର ହରଡ଼ା – ବଡ଼ ହରଡ଼ା ଗଛ । ବରାହ ଦାଢ଼ – ବରାହଦା ଦାଢ଼ ଫଳ । ଏହ ଫଳର ପଖୁଡ଼ ଦେଖିବାକୁ ବାରହା ଦାନ୍ତପର, ବର୍ଣ୍ଣ ଧଳା । ଗୋରନ – କଳା ଶିମିଳ । ଯବ – ଯଅଗଛ । ଯମନ – ହଣ୍ଟବଲାହିନୀ ଗଛ, ଗନ୍ଧ ଦ୍ରବ୍ୟ ବଶେଷ ।

୧୬ । କୋଦାଲ (କୁଦାର ବା କୁଦାଲ ଶବ୍ଦଜ) – ରକ୍ତ କଞ୍ଚନ । ଚନ୍ଦ୍ରଅ (ଚନ୍ଦ୍ରକ ଶବ୍ଦଜ) – ଗୋଲମରଚ ଗଛ ବା ଚନ୍ଦ୍ରକା ଶବ୍ଦଜ ହେଲେ ମଲ୍ଲିକା ଲତା । ପୁନ – ପୋଲଗଛ । ଟିଉଙ୍ଗା – ଜାଢଏ କାଠ ଗଛ । ତାଲ୍ – ଜାଢଏ ଗଛ । ମଞ୍ଜାଶ୍ୱ –

ଜାଲେଣି କାଠର ଗଛ । ପିରକ—କଣ୍ଟାଗଛ ବିଶେଷ । ମାହାଳ—ଜାତିଏ ଗଛ । ଅଗସ୍ତି—ଏକପ୍ରକାର ଗଛ । ଶରତ୍ କାଳରେ ଏହି ଗଛରେ ଫୁଲ ଫୁଟେ ।

୧୮ । ତରୁ—ଗଛ । ନନ୍ଦନବନ—ଇନ୍ଦ୍ରଙ୍କ ଉଦ୍ୟାନ । ଗିରିବର—ବଡ଼ ପାହାଡ଼ ।

୧୯ । ଉତ୍ସର୍ଗ—ଉଚ୍ଚତା । ଦଦଶକୋଣ—କୋଡ଼ିଏ କୋଣ । ବିସ୍ତାର—ଲମ୍ବା । ଦିନକର—ସୂର୍ଯ୍ୟ ।

୨୦ । ଶାର୍ଦ୍ଦୂଳ—ବାଘ । ଶୂକର—ଘୁଷୁରି । ଦ୍ୱିପ—ହିଂସ୍ର । ଖୁରଙ୍ଗ—ଏକାର ପ୍ରକମୃଗ । ଶରଭ—ହାତୀଛୁଆ ।

୨୦ । ଭେରଣ୍ଡା—ଅଣ୍ଡିରା ବିଲୁଆ । ବଣଭୁଆ—କଟାଣ, ବଡ଼ାଲ ଜାତୀୟ ଏକପ୍ରକାର ଜନ୍ତୁ । ଗୁରାଣ୍ଡି ଚମରୀ—ଜାତିଏ ମୃଗ, ତାଙ୍କ ଲାଙ୍ଗୁଡ଼ ବାଳରେ ଚଅଁର ହୁଏ । ସାଳଅା—ସାଙ୍ଗଅାପତନୀ । ବଳଅା—ବଳଅା କୁକୁର ।

୨୨ । ଗିରିକୋଟ—ପର୍ବତ କୋରଡ଼ । ସଲିଳ—ପାଣି । କୁମୁଦ—କଇଁଫୁଲ । କମଳ—ପଦ୍ମଫୁଲ ।

୨୩ । କୋକମିଥୁନ—ଚକ୍ରବାକ ଓ ଚକ୍ରବାକୀ । କାରଣ୍ଡବ—ଜାତିଏ ହଂସ । ସାରସ—ହଂସ । ଜଳକୁକ୍କୁଟ—ପାଣିକୁଆ । କାମ—କାଇମ ଚଢ଼େଇ । କାଙ୍କ—ଜାତିଏ ବଗ ।

୨୪ । ଅଚଳ—ପର୍ବତ ।

୨୫ । ଡମରୁ—ବାଦ୍ୟ ବିଶେଷ । ନିଶାଣ—ନାଗରା ବାଜା । ଗିରି ଶିଖରେ—ପର୍ବତ ଶୃଙ୍ଗରେ । ଗଡ଼ିଲେ—ଚାଲିଲ ଓହ୍ଲାଇ ଅାସିଲେ । ଧାଇଁକାରେ—ବେଗରେ ।

୨୬ । ଘୋର — ଘୋଡ଼ା । ମୋର — ମୋଡ଼ା । ଘର ଠେସରେ — ଚମ ଅଗ୍ରଣୀରେ ଠେସି ଦେଇ । ବ୍ରଜ ଅଦ — ସୈନ୍ଦ ପ୍ରବୃଦ୍ଧ । କଙ୍କ — ହାଡ଼ ।

୨୭ । ଖଡ଼୍ଗରେ — ଖଣ୍ଡାରେ । ଖଡ଼୍ଗ — ଖଣ୍ଡା । ଭଲ୍ଲ — ଜାଠିଏ ଅସ୍ତ୍ର । ବଦ୍ଧ — ଜାଠିଏ ଅସ୍ତ୍ର ।

୨୮ । ଅତି ରହସ୍ୟ — ଅତି ଗୋପନରେ । କାଳଦୂତରେ — ଯମଦୂତରେ ।

୨୯ । ପାଶରେ — ଫାଶରେ । ଚନ୍ଦ୍ରହାସରେ — ଖଣ୍ଡାରେ । ହାସରେ — ଭଯୂରେ । ଶତଘ୍ନ — ହାଣ୍ଡୁଆ । ଭରବରେ — ଗଜ୍ଜରେ ।

୩୦ । ଭୂଦାତେ — ବାହ୍ୱାମାନେ ।

୩୧ । କମ୍ପର — ଅଣ୍ଟା । ଅମରଷେ — ରାଗରେ ବା କ୍ରୋଧରେ । ତୋମର — ଏକପ୍ରକାର ଅସ୍ତ୍ର ।

୩୨ । ଛୁଳ — କ୍ରୋଧକର । ସ୍ଥୂଳ ଶାବଳ — ଚକଚକିଆ ଶାବଳ ଅସ୍ତ୍ର । ରୋପ — ବାଣ । ଚାପ — ଧନୁ । ତରକ୍ଷୁ — ହେଣ୍ଡାବାଘ ।

୩୩ । ତୁରଙ୍ଗ — ଘୋଡ଼ା । କୁରଙ୍ଗ — ହରିଣ । ଖର୍ବ — ସଂଖ୍ୟା ବିଶେଷ ।

୩୪ । ଶ୍ୟେନ — ବାଜପକ୍ଷୀ ।

୩୬ । ବଳ — ସୈନ୍ୟ ।

୩୭ । ସଚିବ ନନ୍ଦନ — ମନ୍ତ୍ରୀ ପୁଅ । ମେଦ — ମାଂସ ।

୩୮ । ବାରଣ ଅନ୍ତର — ହାତୀର ଶତ୍ରୁ ସିଂହ । ବାରଣ ଅରିର ବର ବାହନୀ — ସିଂହବାହନୀ ଦୁର୍ଗା । ବକ୍ର ଦୁର୍ଗ — ବାଙ୍କି । ଅନନ୍ତ — ସବୁବେଳେ । ଅନୁକ୍ଷଣରେ — ଅତ୍ୟନ୍ତ ଦେଶରେ ।

---

## ଅଷ୍ଟାଦଶ ଛାନ୍ଦ

୧ । ମହା ମହୀନ୍ଦ୍ର କୁମର—ମହାରାଜାଙ୍କ ପୁଅ । ବଳ-ସୈନ୍ୟ ।

୪ । ଗୋଷ୍ଠ—ବଂଶ ।

୫ । କାଳକୂଟ—ବିଷ ।

୯ । ଶାଳ—ଶାଳଗଛ । ଶିଳ—ପଥର ।

୧୧ । ମହାବାଜୀ—ଖୁବ୍ ବଡ଼ ଘୋଡ଼ା ।

୧୨ । କରବାଳ—ଖଡ୍ଗ ।

୨୦ । କଉଣପ—ରାକ୍ଷସ ।

୨୧ । ନକ୍ର ମକର—କୁମ୍ଭୀର ଓ ମଗର ।

୨୩ । ଜଳବ୍ୟାଳ—ପାଣିସାପ ।

୨୪ । ଶିରୋରୁହ—ମୁଣ୍ଡବାଳ । ଶଇବାଳ—ଶିଉଳି ।

୨୫ । ପ୍ରେତଚର—ପ୍ରେତର ବା ରାକ୍ଷସର ଦୂତ ।

୪୨ । ଅଖଣ୍ଡମଣ୍ଡଳାଧିପ—ରାଜ ଚକ୍ରବର୍ତ୍ତୀ ।

୬୦ ସ୍ୟନ୍ଦନ—ରଥ ।

---

## ଊନବିଂଶ ଛାନ୍ଦ

୨ । କକ୍ଷ ଅସାର—ହାତୀ ହାଉଦା ।

୩ । ଅଶ୍ୱଅରେ—ଘୋଡ଼ା ଚଢ଼ାଳମାନେ

୪ । ପତ୍ତି ପତ୍ତି—ଧାଡ଼ି ଧାଡ଼ି । ପତ୍ତି—(ପଦାତି ଶବ୍ଦଜ) ସୈନ୍ୟ ।
ଫର—ଚମ ଅଢ଼ଣୀ । ଅରି-ନରବର—ଶତ୍ରୁ ରାଜା ।

୧୦ । ସମତ୍ତ କୁଞ୍ଜର—ମତୁଆଲା ହାତୀ ।

୧୫ । କାମ-ହୁତାଶ—କାମନିଆଁ ।

୩୫ । ସାରସ — ପଦ୍ମଫୁଲ ।

୪୫ । ଅଦରେ — ଦନରେ ।

୫୪ । କାଷ୍ଠା — ଦଗ । ଚର — ଶଲମ୍, ଉତ୍ତର ।

୫୬ । ରକ୍ତନେଦୀ — ଦ୍ୱରଣ ନୟନା ।

୬୨ । ସମ୍ଭାବନା — ସତ୍କାର ।

---

## ବିଂଶ ଛାନ୍ଦ

୧ । ଜୀବେଶ — ସ୍ୱାମୀ । କବଶ୍ୱ — ଜଡ଼ୁତା ।

୨ । କୁନ୍ଦନ-କେତକୀ-ନନ୍ଦନ-ଚନ୍ଦ୍ରରେ — କୁନ୍ଦଳ୍ପ ପରି ଗୋଲ ଏବଂ କେତକୀ ଫୁଲର ରଙ୍ଗକୁ ଜିଣି ଯାଉଥିବା ଗୋରା ଦେହରେ ।

୩ । ଅଲଙ୍କାର ଅଲଙ୍କାର — ଅଲଙ୍କାରମାନଙ୍କର ଭୂଷଣ ସ୍ୱରୂପ ।

୪ । ଉଞ୍ଛିଣ — ସିଞ୍ଚ । ଜରବାସ — ଜରପାଡ଼ ଲୁଗା ।

୫ । ଅଧୀରେକ୍ଷଣୀଙ୍କ — ଚଞ୍ଚଳନୟନା ରାଜକନ୍ୟାକୁ । ଅଲକ — କପାଳ ଉପରେ ଥିବା ଶ୍ରେଷ୍ଠ କୁଞ୍ଚ କୁଞ୍ଚିଅ ବାଳ ।

୧୨ । ବିଭବ — ଧନ ସମ୍ପଦ । ପ୍ରଭବ — ବଂଶ ମର୍ଯ୍ୟାଦା । ଅଶ୍ୱବଣ — ଘୋଡ଼ାମାନ । ଇଭ — ହାତୀ ।

୧୩ । ମହୁତ — ପଣ୍ଡିତ । ଅହୁତ ହୁତ — ଭଲ ମନ୍ଦ ।

୧୨ । ବିଧୁବଦନା — ଚନ୍ଦ୍ରମୁଖୀ ।

୧୫ । ସୁଗୁଣକନ୍ଦ — ଭଲଭଲ ଗୁଣର କୋରଡ଼ ସ୍ୱରୂପ । ଭୂବ ପୁରନ୍ଦର — ପୃଥିବୀର ଇନ୍ଦ୍ର ।

୧୬ । ଗଇରଙ୍କ ଗୋଷ୍ଠ — ଗେରୁମାଟି ପରି ଦେହର ବର୍ଣ୍ଣ ସେଉଁ ଷଣ୍ଢର ।

୧୭ । ହୁରେ — ଛଇରେ ।

୧୯ । ଘଞ୍ଚାଳ — ଜଞ୍ଜାଳ ।

୨୦ । କାଞ୍ଚୀଶୋଭନା — ଯେଉଁ ସ୍ତ୍ରୀର ଅଣ୍ଟାରେ ମେଖଳା ଶୋଭା ପାଉଥାଏ । ସାରସଗତି — ହଂସଗମନା, ହଂସ ପରି ଯେଉଁ ସ୍ତ୍ରୀ ଚାଲେ । ମାରସିନ୍ଧୁ — କାମସିନ୍ଧୁ ।

୨୧ । ହାଟକଗୋରୀ — ସୁନା ରଙ୍ଗପରି ଯେଉଁ ସ୍ତ୍ରୀର ଦେହ ଦେଖାଯାଏ । ସପୁଟକସ୍ତନା — ଫରୁଅ ପରି ଯେଉଁ ସ୍ତ୍ରୀର କୁଚ । ତ୍ରିବଳି ଶୋଭନା — ଯେଉଁ ସ୍ତ୍ରୀର ପେଟରେ ତିନୋଟି ମୋଡ଼ିଆ ଥାଏ ।

୨୨ । ଦୁଷ୍ଟ ନିଗ୍ରହଣେ — ଦୁଷ୍ଟଲୋକଙ୍କୁ ଦଣ୍ଡଦେବା ବିଷୟରେ । ଅଷ୍ଟବିଂଶ ସମ୍ବତ୍ସର — ଅଠାଇଶ ବର୍ଷ ।

୨୩ । କାମକାମ — କନ୍ଦର୍ପର କାମନା ବା ବାସନା ।

୨୪ । ଅରୁଣ — ସୂର୍ଯ୍ୟ । ପ୍ରତାପେ — ବଳ ବିକ୍ରମରେ । ତାପେ — ତାପଦିଏ ବା ତପ୍ତ ଉପୁଜାଏ । ଅରି — ଶତ୍ରୁ । ତରୁଣ — ଯୁବା ।

୨୫ । ଧରଣୀରେ — ପୃଥିବୀରେ ।

୨୬ । କେଶରୀକଟୀ — ସିଂହ ଅଣ୍ଟାପରି ଯେଉଁ ସ୍ତ୍ରୀର ଅଣ୍ଟା ସରୁ । ସୁଯୋଗ ହୁଅ — ଉତ୍ତମରୂପେ ମିଳିତ ହୁଅ ।

୨୭ । କୁଞ୍ଜର ଗତି — ଗଜଗମନା ।

୨୮ । ଅମ୍ବୁଦକେଶିନୀ — ମେଘପରି ଯେଉଁ ସ୍ତ୍ରୀର ବାଳ କଳା । କମ୍ବୁକଣ୍ଠୀ — ଯେଉଁ ସ୍ତ୍ରୀ କଣ୍ଠ ଶଙ୍ଖ ପରି । ଅରିନୃପ — ଶତ୍ରୁ ରାଜା । ଅମାପ — ଅପରିମିତ, ବହୁ ।

୩୦ । ବାମନେତ୍ରୀ — ଯେଉଁ ସ୍ତ୍ରୀର ଅକ୍ଷି ଦର୍ଶନ ସୁନ୍ଦର । ହେମଦାମ — ସୁନା (ପଦ୍ମର) ମାଳ ।

୩୧ । ଭୂପ — ରାଜା । ଖ୍ୟାତ — ପ୍ରସିଦ୍ଧ ।

୩୨ । ସୁରେଶ — ଇନ୍ଦ୍ର ।

୩୭ । ପ୍ରତାପତପନଅତପ—ବଳ ବିକ୍ରମ ହେଲା ସୂର୍ଯ୍ୟ ପରି, ତାହାର କିରଣ । ସଲିଳ—ପାଣି ।

୩୮ । ବିପକ୍ଷ—ଶତ୍ରୁ । ଲକ୍ଷ—ସଂଖ୍ୟା ବିଶେଷ । ପକ୍ଷ୍ମଳାକ୍ଷୀ—ଈକ୍ଷଣ—ଆଖି । ଅଞ୍ଜନାବିଳକମଳପ୍ରବାହ—କଳାରେ ଗୋଳିଆ, ହୋଇଥିବା ସୁନ୍ଦର ଧାର ବା ସ୍ରୋତ ।

୩୯ । ଭୂମିପାଳ—ରାଜା ।

୪୧ । ଚନ୍ଦ୍ରନିଭାସ୍ୟା—ଚନ୍ଦ୍ରପରି ଗୋଲ ମୁଖ ଯେଉଁ ସ୍ତ୍ରୀର—ଶକ୍ରପଦ—ଇନ୍ଦ୍ରପଦ ।

୪୩ । ରହରେ—ଏକାନ୍ତରେ ।

୪୪ । ସୁବେଶୀ—ସୁନ୍ଦର ବେଶ ଭୂଷଣରେ ସଜ୍ଜିତ ହୋଇଥିବା ସ୍ତ୍ରୀ । ଜୀବେଶୀ—ପ୍ରାଣପ୍ରିୟା । କଳିକାକମଳସ୍ତନା—ପଦ୍ମକଢ଼ ପରି ଯେଉଁ ସ୍ତ୍ରୀର ସ୍ତନ । କରମାଳିକା—ହାତରେ ଧରିଥିବା ସୁନା ପଦ୍ମଫୁଲର ହାର ।

୪୫ । ନୀରଦ—ଯେ ନୀର ଅର୍ଥାତ୍ ପାଣି ଦିଏ, ମେଘ ।

୪୬ । ଈକ୍ଷଣେଭୂଷ୍ମଜ୍ଞ—ଶୃବୋଦ୍ଦୀପକ ଅକ୍ଷି ।

୪୮ । ତୂର୍ଣ୍ଣ—ଶୀଘ୍ର ।

୪୯ । ଅଖିଳମୋହିନୀ—ଯେଉଁ ସ୍ତ୍ରୀ ନିଜର ରୂପମାଧୁରୀରେ ସାରା ଦୁନିଆକୁ ମୋହିପାରେ । ଶଶୀଉଦୟପ୍ରସାରସ—ଚନ୍ଦ୍ର ଉଇଁ ଆସିଲା ବେଳରେ ଫିକା ପଦ୍ମ ପରି ।

୫୦ । ଲାଜଜଳଧିରେ—ଲାଜ ହେଲା ସମୁଦ୍ର ତହିଁରେ ।

---

# ଏକବିଂଶ ଛାନ୍ଦ

୩ । ମାର୍ଗକୁ — ବାଟକୁ । ମହୀନାଗନାକରେ — ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ।

୫ । ରମ୍ଭାତରୁ — କଦଳୀଗଛ ।

୬ । ଗବେଷଣା ବିଧି — ବିବାହର ପୂର୍ବଦିନ ଯେଉଁ ବିଧିମାନ ପାଳନ କରାଯାଏ, ବା ଦଅଁମଙ୍ଗଳା ।

୭ । ନାଟିଙ୍ଗ — ଭଣ୍ଡାରୁଣୀ । ସୁପ — କୁଲା । ନାରକେଳ — ନଡ଼ିଆ । ଶର — କାଣ୍ଡସର । ବଦରୀ ପତ୍ର — ବରକୋଳି ପତ୍ର । ଦୂର୍ବାଦଳ — ଦୂବ ।

୧୫ । ମଦନ — କନ୍ଦର୍ପ । ଈଶାନ — ମହାଦେବ ।

୧୭ । କେହ୍ନ — କପୂର ।

୨୧ । ଯୋଷା — ସ୍ତ୍ରୀ ।

୨୪ । ଶୋଭା — ସୁନ୍ଦର । ଅନଙ୍ଗକୁ — କନ୍ଦର୍ପକୁ ।

୨୭ । କୋକିଳସ୍ୱନ — କୋଇଲିକିଡ଼ି ।

୨୮ । ଭକ୍ତ — ଭାତ ।

୩୭ । ତାରା — ନକ୍ଷତ୍ର ।

୩୮ । ସ୍ୱରଗୁରୁ — ବୃହସ୍ପତି ।

୩୯ । କେନ୍ଦ୍ରରେ — ଚତୁର୍ଥ ସ୍ଥାନରେ ।

୪୬ । କର୍ଣ୍ଣାଳ — ଭେରୀ ଜାତୀୟ, ଏକପ୍ରକାର ବାଦ୍ୟ । ବଜଘୋଷ — (ବଜ୍ରପ୍ରାୟ ଘୋର ଶବ୍ଦକାରୀ ଏକପ୍ରକାର ବାଦ୍ୟ । ସାଧାରଣତଃ ରାଜାମହାରାଜାମାନେ ବିଜେକଲାବେଳେ ତାହା ବାଜେ ।

୫୪ । ବନ୍ଦୀ — ଭାଟ ।

୫୬ । ଯାଂଗ୍ରହଣକୁ — ହାତଗଣ୍ଠି ଧକାଇବାକୁ ।

୫୮ । ଫୁଲଗୃପେ — କନ୍ଦର୍ପ ପୀଡ଼ାରେ ।

୬୩ । କମ୍ବୁନୀର — ଶଙ୍ଖରେ ପାଣି ପୂରାଇ ।

୬୬ । କାମକୃଷ୍ଣମଣ୍ଡଳେ — କନ୍ଦର୍ପର ଫୁଲ ବାଣରେ ।

୭୦ । ଯାଚନ୍ତି — ମାଗନ୍ତି । ଉପାଧି — ବର ।

---

## ଦ୍ୱାବିଂଶ ଛାନ୍ଦ

୨ । ଦବସ ନାଶକୁ — ଦିନ ସରିଯିବାକୁ ଅର୍ଥାତ୍ ସନ୍ଧ୍ୟା ହେବାକୁ । ଦନକର ପୁରତରେ — ସୂର୍ଯ୍ୟ ଦେବତାଙ୍କ ଆଗରେ ।

୩ । ତରଣି — ସୂର୍ଯ୍ୟ । ଯରଣୀ — ବାଟ । ଅଚରେ — ଶୀଘ୍ର ।

୪ । ଭୁଚଗଡ଼ — ସ୍ତନରୂପକ ଦୁର୍ଗ ।

୫ । ଚରମଗିରିକ — ଅସ୍ତ ପର୍ବତକୁ । ସରେ — ପୋଖରୀରେ ସରସିଜେ — ପଦ୍ମମାନ ।

୭ । ରୁଚର — ମନୋହର ।

୯ । ସୁହୀନ — ଅତି ପତଳା । ଦୂଷଣ — ବିଷଣ୍ଣ ।

୧୦ । ସୁମନସ — ଫୁଲ । ବାସ — ଲୁଗା ।

୧୨ । ଚନ୍ଦ୍ରକର — ଜହ୍ନ ଆଲୁଅ । ଗବାକ୍ଷରେ — ଝରକାରେ ।

୧୩ । ବାମନଯୂନା ଅଭାବେ — ସ୍ତନଯୂନା ସ୍ତ୍ରୀଜନେମା ଅଭାବରେ । ତାକ୍ଷଣ — (ତୀକ୍ଷ୍ଣ) ମୁନିଆ । ଲକ୍ଷ — ସଂଖ୍ୟା ବିଶେଷ ।

୧୫ । ଚନ୍ଦ୍ରଶିଳ — ଚନ୍ଦ୍ରକାନ୍ତମଣି ।

୧୬ । ମଦନଦହନ — କାମନାଥ ।

୧୭ । ଅଳକ — କପାଳ । ରସନା — ଜିଭ ।

୨୪ । ହିଶୁଭଙ୍ଗ — ଭଅଁରଛୁଆ ।

୨୫ । ମଦନ — ମାର । ମାରମୁଖରେ — କନ୍ଦର୍ପର ଦର୍ପଣରେ ।

୨୬ । ସ୍ମରକ ଚାଟଙ୍କ — ସ୍ମରର ଚାପ । ଭ୍ରୂଭପାଶେ — ପାଶ ତୁଲ୍ୟ କାନରେ । ଦୁଇ କାନରେ ଦୁଇଟି ଚାପ ଯେନାଇ ଦେବାର ଦେଖି କବି ତର୍କଣା କରୁଅଛନ୍ତି ଯେ ମୁଖଟି ଦେହଳି ଉଦ୍ଗମାପଟ । ତାର ଦୁଇ ପାଖରେ (ଗୁରୁ) ବୃହସ୍ପତି ଏବଂ (କବି) ଶୁକ୍ରଗ୍ରହ ରହିଅଛି କି ?

୨୭ । ପଲକ — ଅକ୍ଷିର ପିଞ୍ଜରା ।

୨୯ । ହେମକଣି — ସୁନାକଣି ।

୩୧ । ପ୍ରପଦେ — ପାଦରେ ।

୩୫ । କେଳିମନ୍ଦିରେ — ମନ୍ମଥଶଯ୍ୟା ଘରେ ।

୩୮ । ରୋଲମ୍ବ — ଭ୍ରମର ।

୪୦ । ମନ୍ଦ — ଧୀର, ମନ୍ଥର ।

୪୫ । ଦେହଳୀ — ଦୁଆରବନ୍ଧ ।

୪୬ । ପଦ୍ମିନୀ — ପଦ୍ମଫୁଲ ।

---

## ତ୍ରୟୋବିଂଶ ଛାନ୍ଦ

୧ । ଇତର — ସାମାନ୍ୟ, ତୁଚ୍ଛ ।

୨ । ବିଧୁର କରେ — ଚନ୍ଦ୍ର କିରଣରେ । କୁମୁଦ — କଇଁଫୁଲ । ବିଧୁର — ଚଞ୍ଚଳ । ସଙ୍ଗମ — ମିଳନ ।

୩ । ଶିଖରଦନ୍ତୀ — ତୀକ୍ଷ୍ଣଦଶନା । ମୁଖତ କାମଙ୍କରୁ — ଦୁଷ୍ଟ କନ୍ଦର୍ପର ବାଣ ମୂନ୍ଦିରୁ ।

୪ । ଫୁଲଧନୁ—କନ୍ଦର୍ପ । ସାୟକ—ଧନୁ । ଦୃଢ଼—ଦମ୍ଭ ।

୫ । ମାର—କନ୍ଦର୍ପ । ଚମ୍ପାଚନୁ—ଚମ୍ପା ଫୁଲ ପରି ଗୋରା ଦେହ । କଳ—ଦୂରରୁ ଶୁଭି ଅସୁଥିବା ଅସ୍ପଷ୍ଟ ମଧୁର ଶବ୍ଦକୁ କଳ କୁହାଯାଏ । କୋହ—କୋପ ବା କ୍ରୋଧ । ଧରସ୍ତନ—ଯେଉଁ ସ୍ତ୍ରୀର କୁଚ ପର୍ବତ ପରି ଉଚ୍ଚ ବା ବଡ଼ ।

୬ । ସୁକୃତ—ପୁଣ୍ୟ । କନକତନୁ—ସୁନାପରି ଗୋରା । ଛନ୍ନ—ଲୁଚ ।

୭ । ମୁଖପିତକର—ମୁଖଚନ୍ଦ୍ର । ଅଧ—ତଳ । ମକରକେତୁ —କନ୍ଦର୍ପ । ନାକରାଜା ପଦ—ସ୍ୱର୍ଗର ଇନ୍ଦ୍ର ପଦ ।

୮ । ଶମ୍ବରଅରି—କନ୍ଦର୍ପ । ଅବନ କର—ରକ୍ଷାକର । ବନଜାକ୍ଷୀ—ପଦ୍ମନୟନା । ଯାବକରୁରୁଚରଣା—ଅଳତାରେ ଯେଉଁ ସ୍ତ୍ରୀର ପାଦ ସୁନ୍ଦର ଦେଖା ଯାଉଛି । ନବକାଶହାସୀ—ନୂଆ କାଶ ଫୁଲପରି ଯେଉଁ ସ୍ତ୍ରୀର ହସ ।

୯ । ବକ୍ଷଭୁ—ସ୍ତ୍ରୀ । ନବ୍ଯୁଳାବୟସୀ—ନବଯୁବତୀ ବା ନବ-ଯୌବନା । ଉରଜ—ସ୍ତନରୁ ।

୧୦ । ସଦନ—ଘର । ରଦନ—ଦାନ୍ତ । ତରଙ୍ଗନୟନା—ଚଞ୍ଚଳନୟନା ।

୧୨ । ଚେଷ୍ଟେ—ଇଙ୍ଗିତ ବା ଲକ୍ଷଣ ।

୧୪ । କଟକ—ବଳୟ । ଗୀବା—କଣ୍ଠ । ହାଟକ—ସୁନା । କଟକ-କରଭୁ—ବଳୟ ପିନ୍ଧିଥିବା ହାତକୁ । ନଠକଲ୍—ନଟେଇଲା ।

୧୫ । ଅରୁଣଅଧର—ଯେଉଁ ସ୍ତ୍ରୀର ଓଠ ନାଲ ।

୧୬ । ପ୍ରଲମ୍ବକେଶୀ—ଯେଉଁ ସ୍ତ୍ରୀର ମୁଣ୍ଡରେ ଲମ୍ବ ଲମ୍ବ ବାଳ ଥାଏ । କଳକଣ୍ଠଭାଷୀ—ଯେଉଁ ସ୍ତ୍ରୀର କଥା କୋଇଲିର କୁହୁରବ ପରି

ମଧ୍ୟରେ । କଲମ୍—ବାଣ । ସବୁଅସ୍ତ୍ର—ଲକ୍ଷ କରି ମାରୁଛୁ । ଭଣ୍ଡପଣ—କନ୍ଦର୍ପ । ମ୍ଲେଲମ୍‌ନେତୀ—ଯେଉଁ ସ୍ତ୍ରୀର ଆଖି ଡୋଳା ଧଳାଅଂଶ ଅତି ଧଳା ଓ ସୁନ୍ଦର । ଅଲମ୍‌ନ—ଅଶ୍ରୁ ।

୧୮ । ନଦରେ ଉନ୍ମୀଳ୍ପ—ନର୍ଦ୍ଦମୃତରେ ଉନ୍ମାନ କଲ୍ପ ।

୧୯ । କନଜ—ନଖ । ଇକ୍ଷଣ—ଆଖି । ସାଦ୍ଧଣ କଲେ—ଅନାଇଲେ ।

୨୧ । ଅଙ୍ଗି କରୁ—ଅଙ୍ଗଭଙ୍ଗୀ କରୁ । ରସପୂର୍ଣ୍ଣ—ଜଳଭର ।

୨୨ । କାମସଦନ—ସ୍ତ୍ରୀମାନଙ୍କର ଜନନେନ୍ଦ୍ରିୟ । ଚଳଦଳ—ଓସ୍ତପତ୍ର ।

୨୪ । ଧୀର—ଧୈର୍ଯ୍ୟ ବା ଦମ୍ଭ ।

୨୫ । ପରରମ୍ଭ—ଆଲିଙ୍ଗନ ।

୨୭ । ଚନ୍ଦ୍ରସ୍ଥାନ—ଭିନ୍ନ ଭିନ୍ନ ତିଥିରେ ଶରୀରର ଭିନ୍ନ ଭିନ୍ନ ସ୍ଥାନରେ ଚନ୍ଦ୍ରଥାଏ । ସେହି ଚନ୍ଦ୍ରଥିବା ସ୍ଥାନକୁ ଚନ୍ଦ୍ରସ୍ଥାନ କହନ୍ତି ।

୨୮ । ପଞ୍ଚବିଶିଖ—କନ୍ଦର୍ପ ।

୨୯ । ଫାଡ଼ିଲ୍ଲ ତମ—ଅନ୍ଧାର ପଳାଇଲା । ଦିନେଶ—ସୂର୍ଯ୍ୟ । ସାରସ—ପଦ୍ମ ।

---

## ଚତୁର୍ବିଂଶ ଛାନ୍ଦ

୩ । କନକକନ୍ଦାନୋଳା—ସୁନାର ଦାନୋଳା ।

୪ । ସଚିବସୁତ—ମନ୍ତ୍ରୀପୁଅ ।

୬ । ଅବରୋଧ—ରାଜାଙ୍କର ଅନ୍ତଃପୁର ବା ମାଇପି ମହଲ ।

୭ । ତାତଦେୟ—ବାପାଙ୍କ ଆସନ ଅର୍ଥାତ୍ ସିଂହାସନ ।

୮ । ସିତପକ୍ଷ—ଶୁକ୍ଳପକ୍ଷ ।

୯ । ଅମରପଦ—ଇନ୍ଦ୍ରପଦ । ଅମନ୍ଦ—ଉତ୍ତମ ।

୧୦ । ସୁଧାରୁ—ଅମୃତରୁ ।

୧୧ । ବର—ଅଭୀଷ୍ଟ ଫଳ । ଲେଶେ—ଟିକଏ । ସୁରଭେ—ରମଣରେ । ସୁର ଭେଦଣକୋଟି—୩୩ କୋଟି ଦେବତା ।

୧୨ । କଶି ଚନ୍ଦ୍ରକରେ—ରାତ୍ରିରେ ଜହ୍ନ ଅଲୁଅରେ । ମଦନ—କନ୍ଦର୍ପ । ମଦ—ଗର୍ବ ।

୧୩ । ହିମକାଶାରେ—ହେମନ୍ତ କାଳର ରାତିରେ । ନଶାରେ—ଭେଳେଇରେ । ଷଣଦା—ରାତି ।

୧୪ । ଅଗୁରୁ···ତୋଷି—ସ୍ତ୍ରୀ ଅଗୁରୁଧୂଆଁରେ ମୁଣ୍ଡର ବାଳକୁ ସୁବାସିତ କରି ସ୍ୱାମୀର ମନକୁ ତୁଷ୍ଟ କରେ । ଅଗୁରୁ ଧୂଆଁରେ ବାଳକୁ ସୁବାସିତ କରିବାର ବର୍ଣ୍ଣନା କାଳିଦାସଙ୍କ ମେଘଦୂତରେ ଦେଖାଯାଏ । ଯଥା—'ଜାଲୋଦ୍ଗୀର୍ଣ୍ଣୈରୁପଚିତବପୁଃ କେଶସଂସ୍କାର ଧୂପୈଃ ।" ବାତ୍ସ୍ୟାୟନଙ୍କ କାମ ସୂତ୍ରରେ କେଶକୁ ଅଗୁରୁ ଧୂପିତ କରିବାର ଉଲ୍ଲେଖ ମଧ୍ୟ ଅଛି ।

୧୫ । ବସନ୍ତବସନେ—ହଳଦିଆ ଲୁଗାରେ । ରଙ୍ଗ—ଦୋଳଯାତ୍ରା କାଳରେ ଫଗୁଖେଳ ।

୧୬ । ପମାର—ସୁବାସ ଜଳ ।

୧୭ । ମାଚେଦ କାଳରେ—ବର୍ଷା କାଳରେ । ଦ୍ୱିରଦ ଚଳନ—ଗଜଗମନାକୁ ।

୨୪ । କେତୁ—କପଟ ।

୨୭ । ସଳୀଳ ବଶରେ—ଅଙ୍ଗଭଙ୍ଗୀ କରି । ସଲିଳରେ—ପାଣିରେ ।

୩୨ । ଅଜାଗେ—ଶୋଇବାବେଳେ ।

୩୭ । ନୀରବଧି—ସର୍ବଦା ।

୩୪ । ସାରସଲୋଚନା—ପଦ୍ମାକ୍ଷୀ । ରଦନ—ଦାନ୍ତ ।

୩୮ । କରକ—ଡାଳିମ୍ବ ।

---

## ପଞ୍ଚବିଂଶ ଛାନ୍ଦ

୨ । ଖରକରେ—କ୍ଷଣକରେ ।

୫ । ନଳିନାକ୍ଷୀ—ପଦ୍ମନୟନା ।

୭ । ପଞ୍ଚାଳ—କଙ୍କାଳ । ଅତନୁ—କନ୍ଦର୍ପ । ଅଞ୍ଚଳ—ପଣନ୍ତକାନି । ଭ୍ରମରାକୁନ୍ତଳା—ଭ୍ରମରଗୋଛପରି ଯେଉଁ ସ୍ତ୍ରୀର କେଶ ।

୯ । ଖଞ୍ଜନେକ୍ଷୀ—ନୀଳନୟନା । ସୁରଦନା—ସୁଦନ୍ତୀ । ଝଷକେତୁ—କନ୍ଦର୍ପ । ଉରଜ—ସ୍ତନ । କରଜ—ନଖ । ଝଗଡ଼ କଥାରେ—ସାମାନ୍ୟ କଥାରେ ବା ବୃଥା କଥାରେ ।

୧୧ । ଟଙ୍କଧର—ମହାଦେବ ।

୧୨ । ଠକାର ଆକାର—ଠ ଅକ୍ଷର ପରି ଗୋଲ ।

୧୩ । ଡୋଳା ପ୍ରତିମା—ନେତ୍ର ପିତୁଳି । ସୁଖଧାମ—ସବୁ ସୁଖର ସ୍ଥାନ । ଡମ୍ବରୁମଧ୍ୟମା—ଯେଉଁ ସ୍ତ୍ରୀର ଅଣ୍ଟା ଡମ୍ବରୁ ମଝି ପରି ସରୁଥାଏ । ଶ୍ରଧ—ଶ୍ରଦ୍ଧା । ଡିଙ୍ଗର—ଦୁଷ୍ଟ ।

୧୪ । ଅମ୍ବୁ—ପାଣି, ଏଠାରେ ଅକ୍ଷିରୁ ଲୁହ । ଉରଗଭୂଷଣ ହେଲେ ମହାଦେବ । ଛଦ୍ମ—ଗୁପତ କଥା ।

୧୫ । ଅଣିମାଦ—ଅଣିମାକୁ ଆଦି କରି ଆଠପ୍ରକାର ଐଶ୍ୱର୍ଯ୍ୟ । ଅଣକ—କ୍ଷଣକ, ଅଳ୍ପସମୟ ।

୧୮ । ଦ୍ୱିରଦ—ହାତୀ  ଦ୍ୱିରଦବରଗମନା—ଗଜଗାମିନୀ । ଦରପକ—କନ୍ଦର୍ପ । ବାମ—ଶତ୍ରୁ ବା ବଙ୍କ ।

୨୧ । ପରପର—ଶତ୍ରୁପର । ପରମଦା—ସ୍ତ୍ରୀ । ପଙ୍କଜନୟନା—ପଦ୍ମନେତ୍ରା ।

୨୨ । ଫୁରୁଣା—ହସ ହସ ବା ଖୁସି । ଫଳକନତମ୍ବା—ଯେଉଁ ସ୍ତ୍ରୀର ପିଚ୍ଛ ଢାଲପରି ଗୋଲ ।

୨୩ । ଅଶନ—ଖାଇବା । ବେଶନ—ଭୂଷଣ ।

୨୪ । ଭ୍ରୁଶୋଭାବନୀ—ଯେଉଁସ୍ତ୍ରୀର ଭ୍ରୂଲତା ଦେଖିବାକୁ ସୁନ୍ଦର ।

୨୫ । ମହୀମଣ୍ଡନା—ପୃଥିବୀର ଭୂଷଣକାରିଣୀ । ମଦଳନୟନା—ଯେଉଁ ସ୍ତ୍ରୀର ଆଖି ମନକୁ ହରଣ କରିପାରେ ବା ଭୁଲାଇପାରେ ।

୨୬ । ଯାମିନୀ—ରାତ୍ରି । ଯାବକମଣ୍ଡନା—ଯେଉଁ ସ୍ତ୍ରୀର ଚରଣରେ ଅଳତା ଶୋଭାପାଉଥାଏ । ଜବାଧର—ଜବାଫୁଲ ପରି ଯେଉଁସ୍ତ୍ରୀର ଓଠ ।

୨୭ । ରତ୍ନନାୟକ—କନ୍ଦର୍ପ । ସାୟକ—ଧନୁ । କାମୁକ—ଚେଦନ । ଲସାଉଛୁ—ଉପରେ ଚଳାଉଛୁ ।

୨୯ । ସୁଖ ଜନତା—ସୁଖଉତ୍ପାଦକାରିଣୀ ।

୩୧ । ସରାଗ—ସ୍ନେହ ବା ପ୍ରେମ ।

୩୨ । ସାରସଗମନା—ହଂସଗମନା ।

୩୩ । ହରବଇରୀ—ମହାଦେବଙ୍କ ଶତ୍ରୁ କନ୍ଦର୍ପ ।

---

## ଷଷ୍ଟବିଂଶ ଛାନ୍ଦ

୩୦ । ଗଉରୀନାଥ—ମହାଦେବ ।

୩୬ । ଦେବାର୍ଚ୍ଚନ—ଦେବପୂଜା ।

୪୧ । ବାସର ଶଙ୍କାଷ୍ଣ—ଦନ ସ୍ପଷ୍ଠ ।

୪୨ । ଭୃଙ୍ଗ—ଭଅଁର ।

୪୩ । ମଧୁପ—ଭଅଁର ।

୪୪ । ଚୂତ ମୁକୁଳ—ଅମ୍ବବଉଳ । ଅଦନ—ଭକ୍ଷଣ ।

୪୬ । ଘନ—ମେଘ ।

୪୭ । ବନ—ପାଣି । ନଘନ—ଗାଢ଼ । ଜମଳ—ପାଣି । ଜୀବନ—ପ୍ରାଣ ।

୫୫ । ପଉଜନ—ଶୂକର ।

୫୯ । ତ୍ରିଶୂଳୀ—ମହାଦେବ ।

୬୪ । ଦ୍ଵିରଦଗାମିନୀ—ଗଜଗମନା ।

୬୫ । ସ୍ପନ୍ଦାଭ୍ରୁଷ୍ଟ—ସନ୍ଧ୍ୟ କରିଉଛ୍ଛ ।

୬୧ । ରେଣୁ—ଧୂଳ ।

୮୩ । କେତ୍ତୁ—ଛପର ।

୯୦ । ନୀରଦକୁନ୍ତଳା—ଘନକେଶୀ, ଯେଉଁ ସ୍ତ୍ରୀର ମୁଣ୍ଡବାଳ ମେଘପରି କଳା । ହେମଗୋଷ୍ଣ—ସୁନା ରଙ୍ଗପରି ଗୋର୍ ଦେହ ଯେଉଁ ସ୍ତ୍ରୀର ।

୯୨ । ନଉଷ୍ଟଳ କଳ୍ପ—ଦଣ୍ଡବତ କଲ୍ପ ।

---

## ସପ୍ତବିଂଶ ଛାନ୍ଦ

୪ । କନ୍ଦମଶର—କନ୍ଦର୍ପ ।

୭ । ବନ—ପାଣି, ଏଠାରେ ଲୁହ ।

୧୦ । ପରଗୃହ—ଦାସୀ ।

୧୩ । ଦରପକ—କନ୍ଦର୍ପ । ବିଷାଇ—ବିଷଯୁକ୍ତ କରି । ବିଷମଶର—କନ୍ଦର୍ପ ।

୧୭ । ମଦନାନଳେ—କାମ ନିଆଁରେ ।

୨୦ । ଜଳଧର—ମେଘ ।

୨୩ । ସିତାଂଶୁକର—ଜହ୍ନଆଲୁଅ ।

୨୪ । କଡ଼କା—ସନ୍ତାପିତ ।

୨୮ । ସୁହାଇଲ—ସହ୍ୟ କରିଥିଲା ।

୩୦ । କଲୁଷ—ପାପ । ମନକୁମୁଦ—ମନରୂପକ କଇଁ । ପ୍ରଫୁଲ୍ଲହୋଇ—ଫୁଟି ।

୩୧ । ରତିନାୟକ—କନ୍ଦର୍ପ । ସାୟକ—ଧନୁ । ଅରୁଣ—ସୂର୍ଯ୍ୟ, ଲାଲ ।

୩୪ । ମୀନକେତନ—କନ୍ଦର୍ପ ।

୩୬ । ଶମ୍ବରଅରି—କନ୍ଦର୍ପ ।

୪୦ । ପଦ୍ମାଳୟା—ଲକ୍ଷ୍ମୀ । ପଦ୍ମବାସୀ—ପଦ୍ମଫୁଲର ବନରେ ଯେ ବାସକରନ୍ତି । ପଦ୍ମାସନା—ପଦ୍ମ ଯାହାଙ୍କର ଆସନ ବା ପଦ୍ମରେ ଯେ ବସନ୍ତି । ପଦ୍ମବାସୀ—ଯାହାଙ୍କ ଦେହରୁ ପଦ୍ମଫୁଲର ବାସନା ବାହାରୁଥାଏ । ପଦ୍ମେ ପଦ୍ମ—ପଦ୍ମ ସଂଖ୍ୟକ ପଦ୍ମଫୁଲ ।

୪୨ । ପଞ୍ଚମୁଖ—ମହାଦେବ । ହର—ମହାଦେବଙ୍କର ଅନ୍ୟନାମ । ସ୍ମରଶର—କନ୍ଦର୍ପବାଣ । ଭବ—ମହାଦେବ ।

୪୩ । ଶିବ—ମଙ୍ଗଳପ୍ରଦ । ଶିବ—ମଙ୍ଗଳ ।

---

## ଅଷ୍ଟାବିଂଶ ଛାନ୍ଦ

୧ । ସୁମନଶରେ—କାମପୀଡ଼ାରେ । ଶୀର୍ଣ୍ଣ—କ୍ଷୀଣ, ଦୁର୍ବଳ ।

୨ । ଶୋକ-ସନ୍ନଦ୍ଧେ—ଶୋକ ରୂପକ ନଈରେ । ବିବେକ—ଭଲମନ୍ଦ ବିଚାର କରିବା ଶକ୍ତି । ଧୈର୍ଯ୍ୟସେତୁ—ଧୈର୍ଯ୍ୟ ରୂପକ ପୋଲ ।

୩ । ଅପାର—ଯାହାର ଶେଷ ହୁଏ ନାହିଁ । ବାସରରଜନୀ—ବିବାହ ରାତ୍ରି । ଅଙ୍କେ—କୋଳରେ ।

୪ । ପିତା ସଦନରେ—ବାପଘରେ । ବଲ୍ଲଭ—ସ୍ୱାମୀ ।

୬ । ଗୋପୁରେ—ବାହାରପଟେ ଥିବା ଘରେ କମ୍ବା ଚନ୍ଦ୍ରଶାଳା ପୁରରେ ।

୭ । ଆଭରଣ—ଅଳଙ୍କାର ।

୯ । କମଳ—ପଦ୍ମ । ମଧୁ—ଫୁଲରସ । ମଧୁକରବୃନ୍ଦ—ଭଅଁରଯାକ ।

୧୦ । ବସନେ—ଶୀତଳୁଗାରେ । ଚରଣିକରନ୍ତୁ—ଝାମ୍ପିଲୁ ।

୧୧ । କୁନ୍ଦ କୋରକ—କୁନ୍ଦ ଫୁଲର କଢ଼ି । ଷଟ୍‌ପଦ—ସେ'ଭମର ।

୧୨ । ହେମନ୍ତଚନ୍ଦ୍ର—ପୂନାଗୋଷ୍ଠ । ହେମନ୍ତ—ସାହାନ ।

୧୪ । କ୍ଷୀଣବଦନ—ଶ୍ରେଷ୍ଠବଦନ । କ୍ଷଣଦା—ରାତ୍ରି । କ୍ଷଣଦାନ୍ଦିନୀ—ସୁଖଦାୟିନୀ ।

୧୫ । ସାରସ—ପଦ୍ମ ।

୧୬ । ଚରଣିଚାପନ୍ତୁ—ଝାମ୍ପିଲୁ ।

୧୭ । କନ୍ଦରେ—କର୍ପୂରରେ ।

୧୮ । ବଢଶାର୍ଦ୍ଧବର୍ଷୀ—ଷୋଡ଼ଶୀ, ଷୋଳବର୍ଷୀ ।

୧୯ । କୁହୁକ—ବାଳକ ।

୨୦ । ଅଶନ—ଭୋଜନ । ବେଶନ—ବେଶହେବା । ହିଷମ-ଶର—କାମ ବା କନ୍ଦର୍ପ ।

୨୪ । ଦରପ—ଦମ୍ଭ ବା ଝେକ । ଦରପକ—କନ୍ଦର୍ପ । ସାରସଗମନା—ହଂସଗମନା ।

୨୫ । ଲଳଢଲପନା—ଯେଉଁ ସ୍ତ୍ରୀର ମୁହଁ ଅତି କୋମଳ ଓ ସୁନ୍ଦର । ଦଳଢ—ପୀଡ଼ା ।

୨୬ । ଲପନ—ମୁହଁ ।

୨୯ । ବନ୍ଧୁଜୀବ—ବନ୍ଧୂଳୀ । କାଳପଗ—ଯମପଘ ।

୩୦ । ସଦନ—ଘର । ମଦନ କଦନରୁ—କାମ ଯନ୍ତ୍ରଣାରୁ । କାମେ—କନ୍ଦର୍ପରେ । କାମେ—ଅତିଶଯ୍ୟରେ, ପୂର୍ଣ୍ଣ ଭାବରେ ।

୩୧ । ମାର—କନ୍ଦର୍ପ । ଅନ୍ତରେ—ହିରହ ବା ବିଚ୍ଛେଦରେ । ଅନ୍ତରେ—ମରମରେ ।

୩୪ । ପରିଗ୍ରହ—ଦାସ । ଗ୍ରହ—ଦୂତ । ପ୍ରଗ୍ରହ—ପଠେଇବା । ବାଳୀଶ—ଯୁବତୀଶ୍ରେଷ୍ଠ । ବାଳିଶ—ମୂର୍ଖ । କୁଳିଶ—ବଜ୍ର ।

୩୫ । ତଥ୍ୟନେ—ସ୍ଥିରଭାବରେ (ହୃଦଗତ) । ଅଥ୍ୟନେ—ଯଥରେ ।

୩୬ । କାମ—ପର୍ଯ୍ୟାପ୍ତ, ବହୁତ । କାମଶରେ—କନ୍ଦର୍ପ ବାଣରେ ପ୍ରତୀକଶୋଭନୀ—ଶୋଭନାଙ୍ଗୀ, ଯେଉଁ ସ୍ତ୍ରୀର ଅଙ୍ଗମାନ ଅତି ସୁନ୍ଦର । ତୋ ଅନ—ତୋ ଛଡ଼ା ।

୩୭ । ଭଚମ—ନୂଆ ।

୩୮ । ଭାବ—ପ୍ରୀତି । କରଗତି—ଗଜଗମନା ।

୩୯ । ପୀରତି ରତି ଭାବ—ପ୍ରେମରେ ମିଳନ୍ତ ହେବାର ସୁଖ ବା ରମଣ ସୁଖ । ରତି—କନ୍ଦର୍ପର ସ୍ତ୍ରୀ । ରତି—ରତିଏ ବା ରତିଏ ପରିମାଣ ।

୪୦ । ବୃଷମଅଙ୍ଗୀ—ଶୋଭାଙ୍ଗୀ ବା ସୁନ୍ଦରୀ । କୁସୁମବନ୍ତୀ—ଋତୁବନ୍ତୀ ।

୪୧ । କେଶସୁମନସ—ମୁଣ୍ଡବାଳରେ ଖୋସା ହୋଇଥିବା ଫୁଲ ।

୪୨ । ରତି—ରମଣ । ରତି—ରତିଏ ପରିମାଣ ।

୫୧ । ପ୍ରସନ୍ନ—ଖୁସି । ଅଶନ—ଖାଇବା । ଜୀବେଶ—ପ୍ରାଣନାଥ ।

୫୨ । ଅପୃନକୁ—ବାହିଲୁ । ଚପୃନ—ସ୍ତ୍ରିଲା (ଚପୃନ, ଚଇନ୍, ଚପ୍ନିନ୍—ହରିଣୀ) । ପୟ—ଜଳ ।

୫୪ । ରୁଚିର—ମନୋହର ।

୫୭ । ଉର—ଛାତି ।

୫୮ । ମକରକେତୁ—କନ୍ଦର୍ପ ।

୬୨ । ଅବଧି—କଣ୍ଠ ସମୟ ।

୭୫ । କଳାପକୁନ୍ତଳା—ଯେଉଁ ସ୍ତ୍ରୀର କେଶ ମୟୂର ପୁଚ୍ଛପରି ମନୋହର ।

---

## ଊନତ୍ରିଂଶ ଛାନ୍ଦ

କୁଜ୍ଝଟୀ—କୁହୁଡ଼ି । ଉଦ୍ଘଟଗଲା—ପ୍ରକାଶ ପାଇଲା । କ୍ଷୀଣ—ଛୋଟ । ଦିବସନାୟକ—ସୂର୍ଯ୍ୟ ।

୨ । ତୁଷାର ପତନେ—ବାକର ପଡ଼ିବାରୁ । କମଳକାନନ—ପଦ୍ମବନ । ତପତ ସଲିଳ—ଗରମପାଣି । ଦ୍ୱିରଜ—ଭ୍ରମର ।

୩ । ସଂଜ୍ୱର—ସନ୍ତାପ ।

୪ । ବଦସ୍ୱ—ବରକୋଳ । ଲୋଧ୍ର—ଲାଉ୍ଘ ଫୁଲଗଛ । ଶିବାଧ୍ୱନ—ବିଲୁଆଡାକ ।

୫ । ପଲ୍ଲଶରେ—କାମପୀଡ଼ାରେ ।

୬ । ଷଣଦା—ରାତ୍ର ।

୮ । ମକର—ମାଘମାସ । ମକର—ମଗର । ଉଦଣ୍ଡ—ପ୍ରବଳ ଭାବରେ ।

୯ । ଶଧ—ଶ୍ରଦ୍ଧା ।

୧୦ । ଶୋକସଙ୍ଗତେ—ଦୁଃଖଜନିତରେ ।

୧୨ । ବରହକୁନ୍ତଳା—ଯେଉଁ ସ୍ତ୍ରୀର କେଶ ମୟୂର ପୁଚ୍ଛ ଭଳି ସୁନ୍ଦର । ମହାରଜତ—ସୁନା ।

୧୩ । ଉଦନ୍ତ—ଭୁଣ୍ଡଖବର ।

୧୪ । ଚନ୍ଦ୍ରମୁଖୀ—ଚନ୍ଦ୍ରମୁଖୀ । ନବନାଧବନେ—ପ୍ରଥମରମଣ କାଳରେ । ଅମରମୋହିନୀ—ଯେଉଁ ସ୍ତ୍ରୀ ନିଜରୂପରେ ଦେବତାମାନଙ୍କୁ ମଧ୍ୟ ଭୁଲାଇପାରେ ।

୧୫ । ବନଜବଦନା—ପଦ୍ମମୁଖୀ ।

୧୬ । କବଳ—ଗ୍ରାସ ।

୧୯ । କାମ—କନ୍ଦର୍ପ । ବାମ—ଶତ୍ରୁ ।

୨୦ । ଲଟ—ଛଳନା ବା ବାହାନା ।

୨୧ । ନବମଦଶା—ଦଶଦଶା ମଧ୍ୟରୁ ନବମ ଦଶା ଅର୍ଥାତ୍ ମୂର୍ଚ୍ଛା ।

---

## ତ୍ରିଂଶ ଛାନ୍ଦ

୧ । ମନ୍ଦ-ଧୀର । ଚୂତ-ଅମ୍ବ ।

୩ । ନବମାଳିକା-ନଅଳି ଫୁଲ । ପ୍ରକର-ସମୂହ ।

୪ । ଝଙ୍କାର-ଝାମରେଣ୍ଟା । ଲପ୍ତ—ସମାପ୍ତ ।

୫ । ଶ୍ୱସନ — ପବନ । ସଖା — ବନ୍ଧୁ ।

୬ । ମରୁତ-ପବନ ।

୭ । ନିଶାଣ-ଜାତିଏ ବାଜା, ନାଗରା ।

୧୦ । ଉଶୀର-ବେଣାମୂଳ ।

୧୩ । ହେମଦେହା-ଯେଉଁ ସ୍ତ୍ରୀର ଦେହ ସୁନାପରି ଗୋରା ।

୧୫ । ବିଶିଖ-ବାଣ ।

୨୧ । ଉରଜ-କୁଚ ।

୨୨ । ରଦବାସେ-ଓଠରେ । ରଦନ-ଦାନ୍ତ ।

୨୭ । ଅମରପଦ-ସ୍ୱର୍ଗପଦ ।

୩୫ । ମନାକ୍ଷ—ଲକ୍ଷ ।

୪୮ । ଉର-ବକ୍ଷ ।

---

## ଏକତ୍ରିଂଶ ଛାନ୍ଦ

୧ । ଗନ୍ଧବହ-ପବନ । ଦଶଦିଶ-ଦଶଦିଗ ।

୨ । ଆସାର-ମେଘ ଅସରା । କାସାର-ପୋଖରୀ ।
ମରନ୍ଦ-ଫୁଲମହୁ । ମଧୁକର-ଭଅଁର ।

୩ । ଚଣ୍ଡକର—ସୂର୍ଯ୍ୟ । ଜଳଯନ୍ତ୍ରପୁର-ପାଣିକଳ ଥିବା ଘର ।

୪ । ମଦନ ସାପ୍ଟକେ—କନ୍ଦର୍ପ ବାଣରେ ।

୫ । ମେଣୀମସ୍ତକମଣି—ନାଗମାନଙ୍କ ମୁଣ୍ଡର ମଣି ଅର୍ଥାତ୍ ଅତି ସୁନ୍ଦର । ପକ୍ଷ୍ମଲାକ୍ଷୀ–ଯେଉଁ ସ୍ତ୍ରୀର ଆଖିପତା ଉପର ସୁନ୍ଦର ଲମ୍ବ ଲମ୍ବ ବାଳ ଥାଏ । କୁସୁମଶରେ—କାମ ପୀଡ଼ାରେ । ଧାରପଦ୍ମବାସୀ—ଯେଉଁ ସ୍ତ୍ରୀର ଦେହରୁ ପଦ୍ମଗନ୍ଧ ବାହାରୁଥାଏ, ପଦ୍ମିନୀ ସ୍ତ୍ରୀ ।

୭ । ଚମରଚମରକେଶୀ—ଯେଉଁ ସ୍ତ୍ରୀର ମୁଣ୍ଡବାଳ ଚମରୀ ମୃଗର ଲଙ୍ଗୁଡ଼ରେ ଥିବା ବାଳରେ ତିଆରି ହୋଇଥିବା ଚାମର ପରି କଳା ଓ ସୁନ୍ଦର ।

୭ । ଭରମ–ସ୍ତନ । ପରମଦା—ସ୍ତ୍ରୀ । ପ୍ରପଦରେ—ପାଦରେ ।

୯ । ଶରଦଶଶାଙ୍କମୁଖୀ—ଶରତ କାଳର ଚନ୍ଦ୍ରପରି ଯେଉଁ ସ୍ତ୍ରୀର ମୁଖ । ବନଜ—ପଦ୍ମ ।

୧୩ । ଉରମଶୋଭନୀ–ଯେଉଁ ସ୍ତ୍ରୀର ବେଣୀ ପିଠିରେ ଶୋଭା ପାଉଥାଏ ।

୧୫ । ମାର–କନ୍ଦର୍ପ ।

୧୬ । ପୃଥୁଳ ପୀବର—ଅତ୍ୟନ୍ତ ସ୍ଥୂଳ । ତାମରସନେତ୍ରୀ—ପଦ୍ମନୟନା ।

୧୭ । କାନ୍ତ—ସ୍ୱାମୀ । କାନ୍ତ—ସୁନ୍ଦର ।

୧୮ । ବନ୍ଧୁକଅଧରୁ—ବନ୍ଧୁଲୀ ଫୁଲପରି ଲାଲ ଓଠରୁ । ଅମିୟ–ଅମୃତ ।

୨୦ । ଅବଧିକ—ଫେରିବା କଣ୍ଠକୁ । ଅବଧର—ଆଶାକର । ଅବରୋଧେ—ବନ୍ଧନ ଶାଳାରେ । ଅବରୋଧ—ବନ୍ଧନ ବା ଅଟକ ।

୨୨ । ଦରଦ—ପରଶ । ବନପ୍ରିୟବଚନା–କୋକିଳବଚନା । ଜଦାନ—ନଷ୍ଟପ୍ର ।

୨୫ । ଦୀନ—ଦୁଃଖୀ । ବଧ୍ୟ—ବଧାଗ୍ୟ ।

୨୬ । ଅନଙ୍ଗ—କନ୍ଦର୍ପ ।

୨୭ । ପର—ଶତ୍ରୁ । ମାର—କନ୍ଦର୍ପ ।

୨୯ । ପରବଶ—ଅନ୍ୟଲୋକର ଅଧୀନ ।

୩୦ । ନୀରଦକାଳେ—ବର୍ଷାକାଳରେ । ଦ୍ୱିରଦରଦ—ହାତୀଦାନ୍ତ । ନାଭବଧ୍ୟ—ସବୁବେଳେ ।

୩୬ । ନଦାଘ ସମୟ—ଗ୍ରୀଷ୍ମକାଳ । ପ୍ରାନ୍ତକଳ୍ପ—ଶେଷକଳ୍ପ ।

---

## ଦ୍ୱାତ୍ରିଂଶ ଛାନ୍ଦ

୧ । କାଦମ୍ବିନୀ—କଳାମେଘମାଳା । ନଭେ—ଆକାଶରେ । ସୁନାସୀର ଚାପ—ଇନ୍ଦ୍ରଧନୁ । ଚଞ୍ଚଳା—ବିଜୁଳି । ଘନ—ଗମ୍ଭୀର ।

୨ । କରକାପ୍ରକର—କୁଆପଥରମାନ । କୁଳିଶ ଘାତେ—ବଜ୍ର ଘାତରେ । ଆସାର—ପାଣି ଅସର । ବଳାକାବାହାର—ବଗମାନଙ୍କର ଉଡ଼ିବା । ଜୟଚମ୍ବଳ—ଜୟପତାକା ।

୩ । ଶିଖରଶେଖେ—ପର୍ବତ ଉପରେ । ଶିଖୀ—ମୟୂର । ଭେକ—ବେଙ୍ଗ । ଶାଲୁର—ଏକପ୍ରକାର ବେଙ୍ଗ । ହଲୀପ୍ରିୟ—କଦମ୍ବ । ତରୁମଣ୍ଡଳ—ଗଛଥଗ ।

୪ । କନ୍ଦଳୀ—ପାଣିକେନ୍ଦୂଳ । କନ୍ଦରୁ—ମୂଳରୁ । ଗନ୍ଧବହ—ପବନ ।

୫ । କୁଟଜ—କୁରେଇ ଗଛ । ବନ—ପାଣି । ବନ—ଜଙ୍ଗଲ ।

୬ । ଘନ—ମେଘ । ବହନ—ଶୀଘ୍ର । ତଟପ୍ରକଟତରୁ—କୂଳରେ ଥିବା ଗଛ ।

୭ । ବେତସ—ବେତଗଛ । ନିଶ୍ଚୋଳ—ହିଲ୍ଲୋଳ ଗଛ । ଅମ୍ବରକୁ—ଆକାଶକୁ । ଅଭ୍ର—ମେଘ । ନିଶି ଦିବସ—ରାତି ଦିନ । ବାରି—ପାଣି । ରେଣୁ—ଧୂଳି । କମ୍ପାଳ—ପଙ୍କ ।

୮ । ମରାଳ—ହଂସ । ଚପଳ—ଚଞ୍ଚଳ । କୋକ—ଚକ୍ରବାକ । ରାମଚନ୍ଦ୍ରଙ୍କ ଅଭିଶାପରୁ ଚକ୍ରବାକମାନଙ୍କର ମିଳନ ରାତିରେ ନ ହୋଇ ଦିନରେ ହୁଏ । ବର୍ଷାରେ ଅନ୍ଧାର ଘୋରଅଟେ଼ ଘୋଟିବାରୁ ରାତି ବୋଲି ସନ୍ଦେହ କରି ସେମାନେ ଶୋକରେ ଭାସିଲେ ।

୯ । ସରଣୀ—ଯିବା ଆସିବା ବାଟ । ରସରେ—ପାଣିରେ । ତରଣୀ—ଡଙ୍ଗା । ସାବିକ ଅତର—ଦୂରରୁ ବାଢି ଥିବା ନୌକା ଭଡ଼ା ।

୧୦ । କୃଷିକ—ଚାଷୀ । ଛତ୍ରରେ—ଛତାରେ ।

୧୧ । ସଦନ—ଘର । ମଦନକାନ୍ତ—କନ୍ଦର୍ପର କଉଦଘର ।

୧୪ । ମାରଶର—କନ୍ଦର୍ପବାଣ ।

୧୬ । କୁସୁମଧନୁ—କନ୍ଦର୍ପ ।

୧୭ । ଲପନ—ମୁହଁ । ଦରେ—ଭୟରେ ।

୧୯ । ଯୋଗଭଙ୍ଗିନୀ—ଯେଉଁ ସ୍ତ୍ରୀ ନିଜର ରୂପରେ ମୁନି-ମାନଙ୍କ ଯୋଗକୁ ଭାଙ୍ଗିଦେଇ ପାରେ ।

୨୦ । ଯାବକଚରଣା—ଯେଉଁ ସ୍ତ୍ରୀର ପାଦତଳ ଅଳତା ଲଗାଇଲା ପରି ଦେଖିବାକୁ ନାଲି । ଯାବକ—ଅଳତା ।

୨୨ । ଘନସାର ନୀର—ସୁବାସ ପାଣି ।

୨୫ । କାଳ—ସମୟ । କାଳ—ଯମ ।

୨୯ । କେଳିଶାଳାଧ୍ୱା—କନ୍ଦର୍ପ ।

୩୦ । ଦର—ଭୟ । ଦରଦ—ପର୍ଯ୍ୟନ୍ତ । ଦରଶ—ଅମାବାସ୍ୟା । ଦ୍ବିଜ୍ରୂପ—ଚନ୍ଦ୍ର ।

୩୧ । ଦରପରଦର—ମହାଦେବଙ୍କ ଶତ୍ରୁ ଯେ କନ୍ଦର୍ପ, ତାହାର ଭୟ ।

୩୩ । ଅବଧି—ଲକ୍ଷ । ନିରବଧି—ସବୁବେଳେ । ମଦନ-କଦନ—କାମ କ୍ଳେଶ ବା କନ୍ଦର୍ପ ଯନ୍ତ୍ରଣା ।

୩୪ । ଅଜନ—ମୂର୍ଖ । ଜାନ—ଜୀବନ । ଧବ—ସ୍ୱାମୀ ।

---

## ତ୍ରୟସ୍ତ୍ରିଂଶ ଛାନ୍ଦ

୧ । ନୀରଦ—ମେଘ ।

୨ । ସାନ୍ଦ୍ର—ଗାଢ଼ (ଉଜ୍ଜ୍ୱଳ) ।

୩ । ରସେ—ପାଣିରେ । କୁମୁଦକମଳ—କଇଁ ଓ ପଦ୍ମଫୁଲ ।

୫ । ବନ୍ଧୁକ—ବନ୍ଧୁଲୀ ଫୁଲ । ମଧୁପ—ଭଅଁର ।

୬ । ମାନସରୋବର—ମାନସ ହ୍ରଦ । ଏହା ତିବ୍ବତ ଦେଶରେ ଅବସ୍ଥିତ । ମହୀସରେ—ପୃଥିବୀର ପୁଷ୍କରଣୀରେ ।

୭ । ଖଞ୍ଜନ—କାଉଁଏ ପକ୍ଷୀ । ସରେ—ପୋଖରୀସବୁ । ସରୋଜରେ—ପଦ୍ମମାନଙ୍କରେ । ରଞ୍ଜନ—ମଣ୍ଡିତ ବା ଶୋଭିତ ।

ମୋଦ—ମନର ଆନନ୍ଦ ।

୧୮ । ମୋହ········ଖେଳୁଥାଏ—ମୋର ମନଟି ହେଲା ମାନସହ୍ରଦରେ ଖେଳୁଥିବା ହଂସ । ତୋର ଲାବଣ୍ୟ ବା ଶୋଭା ହେଲା ପାଣି । ମୋ ମନହଂସ ସେହି ପାଣିରେ ସବୁବେଳେ ଖେଳୁଥାଏ । ଅର୍ଥାତ୍ ସବୁବେଳେ ମୁଁ ତୋ ରୂପଶୋଭାରେ ବିଭୋର ହୋଇ ରହୁଥାଏ ।

୭ । ବେତସ—ବେତଗଛ । ନିଚୋଳ—ହିଞ୍ଜଳ ଗଛ । ଅମ୍ବରକୁ—ଆକାଶକୁ । ଅଭ୍ର—ମେଘ । ନିଶି ଦିବସ—ରାତି ଦିନ । ବାରି—ପାଣି । ରେଣୁ—ଧୂଳି । ଜମ୍ବାଲ—ପଙ୍କ ।

୮ । ମରାଳ—ହଂସ । ଚପଳ—ଚଞ୍ଚଳ । କୋକ—ଚକ୍ରବାକ । ରାମଚନ୍ଦ୍ରଙ୍କ ଅଭିଶାପରୁ ଚକ୍ରବାକମାନଙ୍କର ମିଳନ ରାତିରେ ନ ହୋଇ ଦିନରେ ହୁଏ । ବର୍ଷାରେ ଅନ୍ଧାର ଚାରିଆଡ଼େ ଘୋଟିବାରୁ ରାତି ବୋଲି ସନ୍ଦେହ କରି ସେମାନେ ଶୋକରେ ଘାରିଲେ ।

୯ । ସରଣୀ—ଯିବା ଆସିବା ବାଟ । ରସରେ—ପାଣିରେ । ତରଣୀ—ଡଙ୍ଗା । ପାବକ ଅନ୍ତର—ଦୂର୍ବରୁ ବାଢ଼ ଥିବା ନୌକା ଉଡ଼ା ।

୧୦ । କୃଷିକ—ଚାଷୀ । ଛତ୍ରରେ—ଛତାରେ ।

୧୨ । ସଦନ—ଘର । ମଦନାଗାର—କନ୍ଦର୍ପର କଉଦଘର ।

୧୪ । ମାରଶର—କନ୍ଦର୍ପବାଣ ।

୧୬ । କୁସୁମଧନୁ—କନ୍ଦର୍ପ ।

୧୭ । ଲପନ—ମୁହଁ । ଦରେ—ଭୟରେ ।

୧୯ । ଯୋଗଭଙ୍ଗିନୀ—ଯେଉଁ ସ୍ତ୍ରୀ ନିଜର ରୂପରେ ମୁନି-ମାନଙ୍କ ଯୋଗକୁ ଭାଙ୍ଗିଦେଇ ପାରେ ।

୨୦ । ଯାବକଚରଣା—ଯେଉଁ ସ୍ତ୍ରୀର ପାଦତଳ ଅଳତା ଲଗାଇଲା ପରି ଦେଖିବାକୁ ଲାଲ । ଯାବକ—ଅଳତା ।

୨୨ । ସମୀର ନୀର—ସୁବାସ ପାଣି ।

୨୫ । ବ୍ୟାଳ—ସର୍ପ । କାଳ—ଯମ ।

୨୯ । କେଳିଶନାଦ୍ଧା—କନ୍ଦର୍ପ ।

୩୦ । ଦର—ଭୟ । ଦରଦ—ପର୍ବତ । ଦରଣ—ଅମାବାସ୍ୟା । ଦ୍ବିଜ୍ନୃପ—ଚନ୍ଦ୍ର ।

୩୧ । ହରପରଦର—ମହାଦେବଙ୍କ ଶତ୍ରୁ ଯେ କନ୍ଦର୍ପ, ତାହାର ଭୟ ।

୩୩ । ଅବଧି—କଣ୍ଠ । ନିରବଧି—ସବୁବେଳେ । ମଦନ-କଦନ—କାମ କ୍ଲେଶ ବା କନ୍ଦର୍ପ ଯନ୍ତ୍ରଣା ।

୩୪ । ଅନନ—ମୁହଁ । ଜୀନ—ଜୀବନ । ଧବ—ସ୍ୱାମୀ ।

---

## ତ୍ରୟୋବିଂଶ ଛାନ୍ଦ

୧ । ନୀରଦ—ମେଘ ।

୨ । ସାନ୍ଦ୍ର—ଗାଢ଼ (ଉଜ୍ଜ୍ୱଳ) ।

୩ । ଉପେ—ପାଣିରେ । କୁମୁଦକମଳ—କଇଁ ଓ ପଦ୍ମଫୁଲ ।

୫ । ବନ୍ଧୁକ—ବଧୁଲୀ ଫୁଲ । ମଧୁପ—ଭଅଁର ।

୬ । ମାନସରୋବର—ମାନସ ହ୍ରଦ । ଏହା ତିବ୍ବତ ଦେଶରେ ଅବସ୍ଥିତ । ମହୀସରେ—ପୃଥିବୀର ପୁଷ୍କରଣୀରେ ।

୭ । ଖଞ୍ଜନ—ଜାତିଏ ପକ୍ଷୀ । ସରେ—ଯୋଖସ୍ୱାସରୁ । ସରୋଜରେ—ପଦ୍ମମାନଙ୍କରେ । ରଞ୍ଜନ—ମଣ୍ଡିତ ବା ଶୋଭିତ ।

ମୋଦ—ମନର ଆନନ୍ଦ ।

୧୮ । ମୋହ·········ଖେଳୁଥାଏ—ମୋର ମନଟି ତୋହର ମାନସହ୍ରଦରେ ଖେଳୁଥିବା ହଂସ । ତୋହର ଲାବଣ୍ୟ ବା ଶୋଭା ତୋହର ପାଣି । ମୋ ମନହଂସ ସେହି ପାଣିରେ ସବୁବେଳେ ଖେଳୁଥାଏ । ଅର୍ଥାତ୍ ସବୁବେଳେ ମୁଁ ତୋ ରୂପଶୋଭାରେ ବଶୋର ହୋଇ ରହୁଥାଏ ।

୨୨ । ୨୩ । ମୋହ...ନ ପାଶବ—ତୋର ମନ ହେଲା ଭଅଁର, ତୋର ସ୍ତନ ହେଲା ପଦ୍ମ । ଭଅଁର ଯେପରି ମଧୁଲୋଭରେ ପଦ୍ମ ଭିତରେ ପଶିଥାଏ, ରାତିରେ ପଦ୍ମ ବୁଜି ହୋଇ ଯିବାରୁ ଆଉ ବାହାରକୁ ଆସିପାରେ ନାହିଁ ତେଣୁ ପରଦିନ ସକାଳେ ପଦ୍ମ ନ ଫୁଟିବା ପର୍ଯ୍ୟନ୍ତ ତା ଭିତରେ ରହେ, ସେହିପରି ମୋର ମନ ତୋ କୁଚ ଭିତରେ ବନ୍ଦୀ ହୋଇ ରହିଛି । ତୋ କୁଚପଦ୍ମ କେବେ ହେଲେ ଫୁଟିବ ନାହିଁ । ତେଣୁ ମନରୂପକ ଭଅଁର ତା ଭିତରୁ ପଳାଇ ଆସିବା ସମ୍ଭବ ନୁହେଁ । ଏହା ଦ୍ୱାରା କବି ଏତିକି ମାତ୍ର କହୁଅଛନ୍ତି ଯେ, ନାୟକର ମନ ସବୁବେଳେ ନାୟିକାର କୁଚଶୋଭାରେ ମୁଗ୍ଧ ।

୪୪ । ନବମଦଶା—ମୂର୍ଚ୍ଛା । ଉପାରେ—ପୃଥିବୀରେ ।

୫୦ । ଦଶ—ଦଶା ।

୫୫ । ନେତ୍ର ଅପ—ଆଖିର ଲୁହ । ଆକ୍ଷେପ—ଘୋଡ଼ାଇ ରଖାଇବା ।

୬୩ । ଜୀବନ—ପାଣି । ଏଠାରେ ଲୁହ ।

୭୨ । ଅପ—ଲୁହ ।

---

## ଚତୁଃତ୍ରିଂଶ ଛାନ୍ଦ

୧ । କାକତ—କାଗଜ । ମସୀ—ଲେଖିବାର କାଳି ।

୪ । ଦର୍ପକ-ଦରପଣ-ଲପନା- ଯେଉଁ ସ୍ତ୍ରୀର ମୁଖଟି କନ୍ଦର୍ପର ଅର୍ଶି ପରି ସୁନ୍ଦର, ନିର୍ମଳ ଓ ସ୍ୱଚ୍ଛ । ସୁସ୍ମିତକ-କରକ-ରଦନା— ଯେଉଁ ସ୍ତ୍ରୀର ଦାନ୍ତଗୁଡ଼ିକ ଭଲ ଗ୍ରାବ ଏବଂ ଡାଳିମ୍ବ ବୀଜ ପରି ସୁନ୍ଦର ।

୫ । ମଞ୍ଜୁମୃଦୁଳମଧୁରଭାଷୀ—ଯେଉଁ ସ୍ତ୍ରୀର କଥାଗୁଡ଼ିକ ଧୀର, ମନୋହର ଏବଂ ଆନନ୍ଦଦାୟକ । କୁନ୍ଦଚନ୍ଦ୍ରଚନ୍ଦ୍ରମନ୍ଦହାସୀ—

ଯେଉଁ ସ୍ତ୍ରୀର ମୁରୁକ ହସ କୁନ୍ଦଫୁଲ, ଜହ୍ନ ଓ କର୍ପୂର ପରି ମନୋହର ଏବଂ ଆନନ୍ଦଦାୟକ ।

୬ । ପୀନ କଠିନ ଶ୍ରୀଫଳସ୍ତନା—ଯେଉଁ ସ୍ତ୍ରୀର କୁଚ ଦୁଇଟି ସ୍ଥୂଳ, ଟାଣ ଓ ବେଲପରି ଗୋଲ । ବରକନକମ୍ବଳା—ଯେଉଁ ସ୍ତ୍ରୀର ପିଣ୍ଡ ଦୁଇଟି ସୁନ୍ଦର ।

୭ । କରିକରଭୂଜା—ଯେଉଁ ସ୍ତ୍ରୀର ହାତଦୁଇଟି ହାତୀର କର ଅର୍ଥାତ୍ ଶୁଣ୍ଢପରି ଲମ୍ବ । କୁରଦଦରକଣ୍ଠୀ—ଯେଉଁ ସ୍ତ୍ରୀର ଗଳା କନ୍ଦର୍ପର ଶଙ୍ଖ ପରି ସୁନ୍ଦର ଓ କ୍ରମେ ସରୁ ।

୮ । ଝଲଦନନକହେମବରନା—ଯେଉଁ ସ୍ତ୍ରୀର ଦେହର ବର୍ଣ୍ଣ ପୋଡ଼ାସୁନା ପରି ଦକଦକ । ନବନୀତ ପ୍ରତିମା—ଯେଉଁ ସ୍ତ୍ରୀର ଦେହ ଲହୁଣୀରେ ଗଢ଼ାଥିବା ପିତୁଳା ପରି କଅଁଳ । ଲଳନା—ସ୍ତ୍ରୀ ।

୯ । ସ୍ୱରୁଡମ୍ବୁରୁମଧ୍ୟମା—ଯେଉଁ ସ୍ତ୍ରୀର ଅଣ୍ଟା ଡମ୍ବରୁ ମଝି ପରି ସରୁ ଓ ସୁନ୍ଦର ।

୧୦ । ହରପରିହସ—ଶିବଙ୍କ ଶତ୍ରୁ ଯେ କନ୍ଦର୍ପ ତାର ଉତ୍କୃଷ୍ଟ ହସ ।

୨୨ । ନଧୁବନ—ରତିକ୍ରୀଡ଼ା ।

୨୭ । ଲକ୍ଷଣ—ଆଖି ।

୨୮ । ଶ୍ରବଣ—କାନ ।

୩୪ । କରପଙ୍କଜ—କରପଦ୍ମ । ମୁଖନଶାକର—ମୁଖଚନ୍ଦ୍ର ।

୩୫ । ନୀବ—ଖୋସଣି । ନବାଉଥିଲୁ—ଦୃଢକରି ମାରୁଥିଲୁ ।

୪୦ । ଉପବନରେ—ବଗିଚାରେ । ଭୃଙ୍ଗ—ଭଅଁର ।

ପ୍ରସୂନରେ—ଫୁଲରେ ।

୪୬ । ସରସୀ ତଟରେ—ପୋଖରୀ କୂଳରେ । ସୋପାନ—ପାହାଚ ।

୫୨ । ଜାଧ୍ୱନ—ଉତ୍ତବେଳ । ବନ—ପାଣି ।

୫୫ । ମାରମନ୍ଦରେ—କନ୍ଦର୍ପ ସ୍ଥାନରେ । ମୁଖସୁଧାକର—ମୁଖଚନ୍ଦ୍ର

୫୬ । ହ୍ରିତ—ଯେଉଁ ଦଶରେ ଅକ୍ଷି ନାଚ ଉଠେ ଓ ଓଠ ଫୁଟିଏ ଥର ଉଠେ ତାହାକୁ ହ୍ରିତଦଶ କହନ୍ତି ।

୬୧ । ବିପରୀତ ରମ୍ଭା—ଓଲଟ କଦଳୀ ।

୬୩ । ଅଳକ—ଚୂର୍ଣ୍ଣକୁନ୍ତଳ ବାଳ ।

୬୮ । ଅଦନ—ଭକ୍ଷଣ ।

୮୦ । ତରଳନୟନ—ଚଞ୍ଚଳଅକ୍ଷି ।

୮୩ । ଅଶନ—ଭୋଜନ ବା ଖାଇବା ଦରବ ।

୮୪ । ମନ୍ଦ ମରୁତ—ଧୀର ପବନ । ବଦ୍ୱନ (ବଦ୍ଧି)—ଜାଣି । ଅଦ୍ୱନ—ଏକବଦନ ।

୮୬ । ମୁଖରାଜୀବ—ମୁଖପଦ୍ମ ।

---

## ପଞ୍ଚତ୍ରିଂଶ ଛାନ୍ଦ

୫ । ଗାତ୍ର—ଦେହ ।

୬ । ଅଶିବ—ଅମଙ୍ଗଳ ।

୧୩ । ଅନ୍ତରଗତରେ—ମନଭିତରେ ।

୧୮ । ହେମହାଦୋଲା—ସୁନା ସବାର ।

୧୯ । ଅବରୋଧ—ନଅର ଭିତର, ଅନ୍ତଃପୁର ।

୨୨ । ସୁଧାସ୍ମୀ—ସ୍ନେହଶୀଳ । ଅଳି—ଭଅଁର । ଅରବିନ୍ଦ—ପଦ୍ମ ମରନ୍ଦ—ଫୁଲରସ, ମହୁ ।

୨୪ । କାମଦ୍ରୁତାଣ—କନ୍ଦର୍ପନର୍ଥ ।

---